# ଶ୍ରୀ ପୁରୁଷୋତ୍ତମ ମାହାତ୍ମ୍ୟମ୍

## ଦ୍ୱିତୀୟ ଭାଗ



ବାବା ଚୈତନ୍ୟ ଚରଣ ଦାସ

ଭଗବାନ୍ ବେଦବ୍ୟାସଙ୍କ କୃତ

ସ୍କନ୍ଦ-ପୁରାଣୋକ୍ତ

ଉତ୍କଳଖଣ୍ଡଂ ବା ବସ୍ତୁଖଣ୍ଡମ୍

# ଶ୍ରୀ ପୁରୁଷୋତ୍ତମ-ମାହାତ୍ମ୍ୟମ୍

ଦ୍ୱିତୀୟଭାଗ

**ବାବା ଚୈତନ୍ୟ ଚରଣ ଦାସଙ୍କ** ଦ୍ୱାରା
ସଂକଳିତ ଓ ପ୍ରକାଶିତ

ପ୍ରଥମ ସଂସ୍କରଣ—ଦେବସ୍ନାନ ପୂର୍ଣ୍ଣିମା ୧୯୮୨
ଦ୍ୱିତୀୟ ସଂସ୍କରଣ—ପୌଷ ପୂର୍ଣ୍ଣିମା ୧୯୯୩



ମୂଲ୍ୟ : ଟ ୨୦-୦୦ (କୋଡ଼ିଏ ଟଙ୍କା)

# SRIPURUSOTTAMA-MAHATMYAM

## PART II

Edited and Published by :
**Baba Chaitanya Charan Das**

1st Edition – Devasnana Purnima, 1982
2nd Edition – Pausha Purnima, 1993



Printed at :
**Takat Publication**
Surya Vihar, Link Road, Cuttack-12

Price—Rs. 20.00 (Rupees Twenty only)

# ମୁଖବନ୍ଧ

ଔଦାର୍ଯ୍ୟବିଗ୍ରହ ଶ୍ରୀ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥଙ୍କ ଅଶେଷ କୃପାରୁ ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ବର୍ଣ୍ଣିତ ଶ୍ରୀ ପୁରୁଷୋତ୍ତମ ମାହାତ୍ମ୍ୟର ପ୍ରଥମଭାଗ ପ୍ରକାଶିତ ହେବା ପରେ ଭକ୍ତିପିପାସୁ ପାଠକବୃନ୍ଦଙ୍କର ଆଗ୍ରହ ଯୋଗୁଁ ତାହାର ଦ୍ୱିତୀୟ ଭାଗର ପାଣ୍ଡୁଲିପି ପ୍ରସ୍ତୁତ କରିବାର ପ୍ରେରଣା ପାଇଲି । ଶ୍ରୀକ୍ଷେତ୍ରରେ ଦାରୁବ୍ରହ୍ମ ଜଗନ୍ନାଥଙ୍କର ଆବିର୍ଭାବ, ବିଶ୍ୱାବସୁ ଶବରଙ୍କ ଦ୍ୱାରା ନୀଳମଣି ବିଗ୍ରହ ପୂଜା ପ୍ରଭୃତି ପୌରାଣିକ ବିଷୟବସ୍ତୁକୁ ଅବଲମ୍ବନ କରି ଓଡ଼ିଆ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ବହୁ ଗ୍ରନ୍ଥ, କାବ୍ୟ ଓ ନାଟକାଦି ରଚିତ ହୋଇଛି । କିନ୍ତୁ କ୍ଷେତ୍ର ବିଶେଷରେ ସେହି ସମସ୍ତ କାହାଣୀରେ କବିକଳ୍ପନା ପ୍ରସୂତ ଅନେକ ପ୍ରସଙ୍ଗ ସଂଯୁକ୍ତ ହୋଇଥିବାରୁ ଜିଜ୍ଞାସୁ ପାଠକ ଓ ଆଲୋଚକ ଅନେକ ସମୟରେ ପ୍ରକୃତ ମୌଳିକ ତଥ୍ୟ ଓ ତତ୍ତ୍ୱ ବିଷୟରେ ସ୍ଥିର ସିଦ୍ଧାନ୍ତ କରିବାକୁ ସନ୍ଦିହାନ ହୁଅନ୍ତି । ତଦୁପରି ସେହି ସମସ୍ତ କାଳ୍ପନିକ ପ୍ରସଙ୍ଗରେ ତତ୍ତ୍ୱବିରୋଧ ଓ ସିଦ୍ଧାନ୍ତ ବିରୁଦ୍ଧ କାହାଣୀ ଦେଖିବାକୁ ମିଳେ । ଏ ସମସ୍ତ ଦୃଷ୍ଟିରୁ ଶ୍ରୀଜଗନ୍ନାଥଙ୍କର ମୌଳିକ ପୌରାଣିକ ତଥ୍ୟ ଅଗଣିତ ପାଠକମାନଙ୍କ ନିକଟରେ ଉପସ୍ଥାପିତ କରିବାର ଆବଶ୍ୟକତା ଉପଲବ୍ଧି କରି କ୍ରମାନ୍ୱୟରେ ସମଗ୍ର ଉତ୍କଳ ଖଣ୍ଡର ଓଡ଼ିଆ ଅନୁବାଦ ସହ ମୂଳ ସଂସ୍କୃତକୁ ଓଡ଼ିଆ ଲିପିରେ ପ୍ରକାଶ କରାଗଲା ।

ସର୍ବଶେଷରେ ଏ ଗ୍ରନ୍ଥର ପ୍ରକାଶନରେ ଉତ୍ସାହ ଦାନକାରୀ, ସାହାଯ୍ୟକାରୀ, ଅନୁମୋଦକ ଓ ଅଗଣିତ ପାଠକମାନଙ୍କ ନିମିତ୍ତ ପତିତପାବନ ଶ୍ରୀଜଗନ୍ନାଥଙ୍କ ନିକଟରେ କୃପାଭିକ୍ଷା କରୁଛି ।

ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ ।

●

ପୌଷ ପୂର୍ଣ୍ଣିମା
୧୯୯୩

କୃପାଭିକ୍ଷୁ
**ଚୈତନ୍ୟ ଚରଣ ଦାସ**

# ଶ୍ରୀ ପୁରୁଷୋତ୍ତମ-ମାହାତ୍ମ୍ୟମ୍

## ବିଷୟ-ସୂଚୀ



—ଃ୦ଃ—

# ଉତ୍କଳଖଣ୍ଡମ୍

## ଶ୍ରୀପୁରୁଷୋତ୍ତମ-ମାହାତ୍ମ୍ୟମ୍

### ଦ୍ୱାଦଶୋଽଧ୍ୟାୟଃ

ଜୈମିନିରୁବାଚ

ଉକ୍ତେ ବ୍ରହ୍ମସୁତେନେତ୍ଥମିନ୍ଦ୍ରଦ୍ୟୁମ୍ନୋ ମହୀପତିଃ ।
ମୁନେସ୍ତୁ ବଚନଂ ଶ୍ରୁତ୍ୱା ପ୍ରହୃଷ୍ଟେନାନ୍ତରାତ୍ମନା । ୧ ।
ବିଚାର୍ଯ୍ୟ ପରୟା ବୁଦ୍ଧ୍ୟା ଶ୍ରମଂ ମେନେ ଫଲାବହମ୍ ।
ଅହୋ ମେ ପରମଂ ଭାଗ୍ୟଂ ବହୁଜନ୍ମାନ୍ତରାର୍ଜିତମ୍ । ୨ ।
ବ୍ୟବସାୟେ ମମୋଦ୍ୟୁକ୍ତଃ ସର୍ବଲୋକପିତାମହଃ ।
ଜୀବନ୍ମୁକ୍ତଂ ସ୍ୱଂ ତନୁଜଂ ମତ୍ସହାୟମକାରୟତ୍ । ୩ ।
ସହାୟୋ ଯାଦୃଶଃ ପୁଂସାଂ ଭବେତ୍ କାର୍ଯ୍ୟଂହି ତାଦୃଶମ୍ ।
ଶ୍ରୁତଂ ସଭାସୁ ସର୍ବାସୁ ଇତି ବୃଦ୍ଧାନୁଶାସନମ୍ । ୪ ।
ସ ଇତ୍ଥଂ ଚିନ୍ତୟନ୍ ରାଜା ବିସୃଜ୍ୟ ଚ ସଭାସଦଃ ।
ତତୋ ମୁନିଂ କରେ ଧୃତ୍ୱା ବିବେଶାନ୍ତଃପୁରେ ଦ୍ୱିଜାଃ । ୫ ।

---

## ଦ୍ୱାଦଶ ଅଧ୍ୟାୟ

ଶ୍ରୀ ଜୈମିନି କହିଲେ—"ବ୍ରହ୍ମାନନ୍ଦନ ନାରଦ ଏହିକଥା କହିବା ପରେ ମହୀପତି ଇନ୍ଦ୍ରଦ୍ୟୁମ୍ନ ତାହା ଶ୍ରବଣ କରି ଅତ୍ୟନ୍ତ ଆହ୍ଲାଦିତ ହେଲେ ଏବଂ ବିଶିଷ୍ଟବୁଦ୍ଧି ସହକାରେ ବିଚାର କରି ପରିଶ୍ରମ ସଫଳ ହେବା ମନେ କଲେ । ଭାବିଲେ, 'ଆହା, ମୋର କି ସୌଭାଗ୍ୟ ! ଜନ୍ମ ଜନ୍ମାନ୍ତରେ ନ ଜାଣି କେତେ ପୁଣ୍ୟ କରିଛି, ସର୍ବଲୋକ ପିତାମହ ବ୍ରହ୍ମା ଆଜି ମୋ କାର୍ଯ୍ୟରେ ସାହାଯ୍ୟ କରିଅଛନ୍ତି । ନିଜର ଜୀବନ୍ମୁକ୍ତ ପୁତ୍ର ନାରଦଙ୍କୁ ସାହାଯ୍ୟାର୍ଥେ ପ୍ରେରଣ କରି-ଅଛନ୍ତି । ମୁଁ ଅନେକ ସଭାରେ ବୃଦ୍ଧବ୍ୟକ୍ତିଙ୍କ ଉପଦେଶ ଶୁଣିଛି ଯେ ପୁରୁଷର ସହାୟ ଯେପରି ହେବ, କାର୍ଯ୍ୟ ମଧ୍ୟ ସେପରି ହେବ । ହେ ଦ୍ୱିଜଗଣ ! ରାଜା ଏହିପରି ଚିନ୍ତା କରି ସଭାସଦ୍ ଗଣଙ୍କୁ ବିଦାୟ ଦେଇ ମୁନିବରଙ୍କ ହସ୍ତ ଧାରଣ ପୂର୍ବକ ଅନ୍ତଃ-ପୁରରେ ପ୍ରବେଶ କଲେ । ୫ । ଯଥା ବିଧାନରେ ତାଙ୍କୁ ଅର୍ଚ୍ଚନା

ତମର୍ଚ୍ଚୟିତ୍ୱା ବିଧିବତ୍ ପର୍ଯ୍ୟଙ୍କେ ସହ ତେନ ବୈ ।
କ୍ଷଣାବଶେଷଂ ନୃପତିର୍ନିନାୟ ସଂଲପନ୍ନିଥଃ । ୭ ।
ତତଃ ପ୍ରଭାତେ ବିମଲେ ନିତ୍ୟଂ କର୍ମ ସମାପ୍ୟ ବୈ ।
ପୂଜୟିତ୍ୱା ଜଗନ୍ନାଥଂ ସ ତତାର ମହାନଦୀମ୍ । ୭ ।
ଓଡ୍ରଦେଶାଧିପେନାଗ୍ରେ ଗଚ୍ଛତାଦିଷ୍ଟପଦ୍ଧତିଃ ।
ଏକାମ୍ରକାନନଂ କ୍ଷେତ୍ରମଭ୍ୟାଗତୋ ବଳାନ୍ୱିତଃ । ୮ ।
ସ ଗତ୍ୱା କିଞ୍ଚିଦଧ୍ୱାନଂ ପ୍ରାପ୍ୟ ଗନ୍ଧବହାଭିଧାମ୍ ।
ନଦୀଂ ବେଗବତୀଂ ଶୀତତୋୟାମୁତ୍ତୀର୍ୟ ବେଗବାନ୍ । ୯ ।
ପୂର୍ବାହ୍ନପୂଜାସମୟେ କୋଟିଲିଙ୍ଗେଶ୍ୱରସ୍ୟ ବୈ ।
ଚର୍ଚ୍ଚରୀଶଙ୍ଖକାହାଳମୃଦଙ୍ଗମୁରଜଧ୍ୱନମ୍ । ୧୦ ।
ବ୍ୟାପ୍ନୁବାନଂ ମହାରଣ୍ୟଂ ଦୂରତଃ ଶୁଶ୍ରାବ ଭୂପତିଃ ।
ମନ୍ୟମାନଂ ଭଗବତୋ ନୀଳାଚଳନିବାସିନଃ । ୧୧ ।
ଉବାଚ ନାରଦଂ ପ୍ରୀତୋ ଧ୍ୱନିର୍ହୃଦ୍ୟୋ ମହାମୁନେ ।

---

କରି ତାଙ୍କ ସହିତ ଏକ ପଲ୍ୟଙ୍କରେ ଶୟନ କରି ସେ ରାତ୍ରି ଯାପନ କଲେ । ତଦନନ୍ତର ପରଦିନ ପ୍ରଭାତକାଳରେ ନିତ୍ୟକର୍ମ ସମାପନ କରି ଶ୍ରୀ ଜଗନ୍ନାଥଙ୍କୁ ଅର୍ଚ୍ଚନ କରି ମହାନଦୀ ପାରି ହେଲେ । ଓଡ୍ରଦେଶାଧିପତି ଆଗେ ଆଗେ ପଥ ପ୍ରଦର୍ଶନ କରାଇ ଯାତ୍ରା କରିବାକୁ ଲାଗିଲେ । କ୍ରମେ କ୍ରମେ ଏକାମ୍ର କାନନ (ଭୁବନେଶ୍ୱର) ନାମକ କ୍ଷେତ୍ରରେ ସୈନ୍ୟ ସାମନ୍ତଙ୍କ ସହିତ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଉପସ୍ଥିତ ହେଲେ । ସେଠାରେ କିଛିଦୂର ଯିବା ପରେ ଶୀତତୋୟା ବେଗବତୀ ଗନ୍ଧବହା ନଦୀ ପାର ହୋଇ ଦ୍ରୁତଗତିରେ ଗମନ-କଲେ । ସେଠାରେ ଶୁଣିବାକୁ ପାଇଲେ ଯେ କୋଟିଲିଙ୍ଗେଶ୍ୱରଙ୍କ ପୂର୍ବାହ୍ନ ପୂଜା ସମୟରେ ଶଙ୍ଖ, ଚର୍ଚ୍ଚରୀ, ମୃଦଙ୍ଗ, ମୁରଜ ଓ କାହାଳ ପ୍ରଭୃତି ବାଦ୍ୟଯନ୍ତ୍ର ଧ୍ୱନିରେ ସେହି ମହାରଣ୍ୟ ଧ୍ୱନିତ ହେଉଅଛି । ତହିଁରେ ପ୍ରୀତ ହୋଇ ମହାରାଜ ନାରଦଙ୍କୁ କହିଲେ —"ହେ ମହାମୁନି ! ଏହି ଧ୍ୱନିଟି ଅତ୍ୟନ୍ତ ସନ୍ତୋଷ ଜନ୍ମାଉଅଛି । ଅତଏବ ସେହି ନୀଳଗିରିଶିଖରବାସୀ ପରମେଶ୍ୱରଙ୍କୁ ପ୍ରାପ୍ତ ହେଲେ

ନୀଳାଦ୍ରି ଶିଖରାବାସଃ ପ୍ରାପ୍ତଃ କଂ ପରମେଶ୍ୱରଃ ।
ଯଦର୍ଚ୍ଚାସମୟୋତ୍ଥ ହ୍ୟେଷ ଶ୍ରୂୟତେ ସକଳଧ୍ୱନିଃ । ୧୨ ।
ଉତାହୋ ଅନ୍ୟଦେବୋ ବା ବର୍ତ୍ତିତେ ନିକଟେ ମୁନେ ।
ଇତି ପୃଷ୍ଟସ୍ତଦା ରାଜ୍ଞା ପ୍ରୋବାଚ ମୁନିପୁଙ୍ଗବଃ । ୧୩ ।
ରାଜନ୍ ସୁଦୁର୍ଲଭଂ କ୍ଷେତ୍ରଂ ଗୋପିତଂ ବୈ ମୁରାରିଣା ।
ନ ତସ୍ମାତ୍ପ୍ରୀତି ଭଗବାନ୍ କୈରପି ଜ୍ଞାୟତେ ନୃଭିଃ । ୧୪ ।
ତ୍ୱଂ ହି ଭାଗ୍ୟବତାଂ ଶ୍ରେଷ୍ଠସ୍ତ୍ୱଦ୍ଭାଗ୍ୟାଚ୍ଚ ପୁରୋଧସା ।
ଦୃଷ୍ଟଃ କଥଞ୍ଚିଦ୍ ଭଗବାନ ସଂଯତେନ୍ଦ୍ରିୟବର୍ତ୍ମନା । ୧୫ ।
ତ୍ୱମେତାବଦ୍ ବଳୈର୍ୟୁକ୍ତଃ ଷଡ଼ଙ୍ଗୈର୍ନୃପସତ୍ତମ ।
ସାହସେଽତ ପବୃତ୍ତୋଽସି ସଂଶୟୋ ମେ ମହୀପତେ । ୧୬ ।
ସ ବର୍ତ୍ତତେ ନୀଳଗିରୌଯୋଜନେଽନ ତୃଣସ୍ଥଳେ ।
ଇଦଂ ତ୍ୱେକାମ୍ରକବନଂ କ୍ଷେତ୍ରଂ ଗୌରୀପତେର୍ବିଦୁଃ ।
ନାତିଦୂରେ ମହୀପାଳ ଖ୍ୟାତସ୍ୟ ଶରଣାର୍ଥିନଃ । ୧୭ ।

---

କି ? କାରଣ ପୂଜା-ସମୟୋଚିତ ଏହି ସକଳ ବାଦ୍ୟଧ୍ୱନି ଶ୍ରୁତିଗୋଚର ହେଉଅଛି, ଅଥବା କୌଣସି ଦେବତା ନିକଟରେ ବିଦ୍ୟମାନ ଅଛନ୍ତି ।" ରାଜାଙ୍କର ଏହିପରି ବାକ୍ୟ ଶ୍ରବଣ କରି ମୁନିବର କହିଲେ-"ହେ ରାଜନ୍ ! ସେହି ଦୁର୍ଲଭ କ୍ଷେତ୍ରଟିକୁ ଭଗବାନ୍ ଗୋପନ ଭାବରେ ରଖିଅଛନ୍ତି । ସେହି ସ୍ଥଳରେ ଭଗବାନ୍ ମୁରାରି ବିଦ୍ୟମାନ ଅଛନ୍ତି, ଏହା କେହିହେଲେ ଜାଣିପାରନ୍ତି ନାହିଁ । ତୁମ୍ଭେ ଭାଗ୍ୟବାନ୍ ପୁରୁଷମାନଙ୍କ ମଧ୍ୟରେ ପ୍ରଧାନ । ଏହି କାରଣରୁ ତୁମ୍ଭର ସୌଭାଗ୍ୟ କ୍ରମେ ହିଁ ସଂଯତେନ୍ଦ୍ରିୟ ଆପଣଙ୍କର ଯେ ପୁରୋହିତ (ବିଦ୍ୟାପତି) ସ୍ୱଳ୍ପସମୟ ପାଇଁ ଦର୍ଶନ କରି ଅଛନ୍ତି । ୧୫ । ହେ ନୃପସତ୍ତମ ! ଆପଣ ଏହି ସମସ୍ତ ଷଡ଼ଙ୍ଗବଳ ଆଡ଼ମ୍ବର ସହିତ ଅସମ୍ଭବ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛନ୍ତି, ଏଥିରେ ମୋର ସଂଶୟ ହେଉଅଛି । ହେ ମହୀପାଳ ! ସେହି ନୀଳକନ୍ଦର ବର୍ତ୍ତମାନ ମଧ୍ୟ ତିନିଯୋଜନ ଦୂରରେ ରହିଅଛି । ଯେଉଁ ବାଦ୍ୟଧ୍ୱନି ଶୁଣୁଅଛନ୍ତି, ଏହାର ଅନତିଦୂରରେ ଖ୍ୟାତ ଓ ଶରଣାକାଂକ୍ଷୀ ଭବାନୀପତିଙ୍କର ଏକାମ୍ର

### ଇନ୍ଦ୍ରଦ୍ୟୁମ୍ନ ଉବାଚ

କଥଂ ସ ସ୍ଥିତୋ ଗିରଶଃ କଂ ବା ଶରଣମାଗତଃ ।
ଦଦାହ ତ୍ରିପୁରଂ ଘୋରଂ ଶରେଣୈକେନ ଯଃ ପୁରା । ୧୮ ।
ଅତ୍ର ମେ ବିସ୍ମୟୋ ଜାତଃ ଶ୍ରୋତୁମିଚ୍ଛାମି ତତ୍ତ୍ୱତଃ ।
ରକ୍ଷିତା ଭବଭୀତାନାଂ ଭବଃ ପରମପାବନଃ ।
କିମର୍ଥଂ ଭବଭୀତୋଽସୌ କଃ ସମର୍ଥୋଽସ୍ୟ ବୈ ଜୟେ । ୧୯ ।

### ନାରଦ ଉବାଚ

ଅତ୍ର ତେ କଥୟିଷ୍ୟାମି ପୂର୍ବବୃତ୍ତଂ ମହୀପତେ ।
ଉପୟେମେ ପୁରା ଗୌରୀଂ ତପସା ବଶମାଗତଃ । ୨୦ ।
ବ୍ରହ୍ମବେଶୀ ହିମଗିରୌ ଭଗବାନ୍ନୀଳଲୋହିତଃ ।
ଉତ୍ସୃଜ୍ୟ ବ୍ରହ୍ମଚର୍ଯ୍ୟନ୍ତୁ ସୋଽନଙ୍ଗଶରପୀଡ଼ିତଃ । ୨୧ ।

---

କାନନ (ଭୁବନେଶ୍ୱର) ନାମକ କ୍ଷେତ୍ର । ଇନ୍ଦ୍ରଦ୍ୟୁମ୍ନ କହିଲେ— ଯେ ପୂର୍ବକାଳରେ ଏକମାତ୍ର ଶରଦ୍ୱାରା ଦୁର୍ଦ୍ଦାନ୍ତ ତ୍ରିପୁରାସୁରକୁ ଦଗ୍ଧ କରିଥିଲେ, ସେ କି ନିମିତ୍ତ ଭୀତ ଓ କେଉଁ ବ୍ୟକ୍ତିଙ୍କ ନିକଟରେ ଶରଣାଗତ ହେଲେ ? ଉକ୍ତ ବିଷୟରେ ମୋର ବିସ୍ମୟ ଜନ୍ମିଅଛି, ଅତଏବ ମୁଁ ତାହା ଯଥାର୍ଥ ରୂପେ ଶୁଣିବାକୁ ଇଚ୍ଛା କରୁଅଛି । ଯେଉଁ ଭବନାଥ, ଭବସଂସାରରେ ଭୟଭୀତ ବ୍ୟକ୍ତିଙ୍କ ରକ୍ଷାକର୍ତ୍ତା, ସେହି ପରମ ପବିତ୍ର ଗିରିଜାପତି ଏହି ଭବ ମଧ୍ୟରେ କେଉଁ କାରଣରୁ ଭୟପ୍ରାପ୍ତ ହୋଇ ଅଛନ୍ତି ? ଏହାଙ୍କୁ (ଶିବଙ୍କୁ) ପରାଜିତ କରିବାକୁ କେଉଁବ୍ୟକ୍ତି ବା ସମର୍ଥ ? ଶ୍ରୀ ନାରଦ କହିଲେ—ହେ ମହୀପତେ ! ଏ ବିଷୟରେ ଆପଣଙ୍କୁ ପୂର୍ବକାଳର ଗୋଟିଏ ବୃତ୍ତାନ୍ତ କହୁଅଛି, ତାହା ଶ୍ରବଣ କରନ୍ତୁ । ୧୯ । ପୂର୍ବ କାଳରେ ଭଗବାନ୍ ନୀଳକଣ୍ଠ ତପସ୍ୟା କରିବା ନିମନ୍ତେ ବ୍ରହ୍ମଚାରୀ ବେଶ ଗ୍ରହଣ କରି ହିମଗିରି ଶିଖରରେ ଅବସ୍ଥାନ କରୁଥିଲେ ।

ତସ୍ମା ରେମେ ରୁଚରସ୍ଥା ଯୌବନୋନ୍ମତ୍ତସ୍ଥା ନୃପ ।
ତତ୍ର ପିତୃର୍ବିପଦ୍ୟୋ ଭୋଗାନ୍ ବୁଭୁଜେ ଦେବକାଙ୍କ୍ଷିତାନ୍ । ୧୨ ।
କଦାଚଦଥ ନିର୍ଯ୍ୟାନ୍ତୀ ସ୍ୱବାସଭବନାତ୍ତ୍ ସତୀ ।
ସାମପୂର୍ବଂ କୁଳସ୍ତ୍ରୀଭି ର୍ମାତୋକ୍ତା ସସ୍ମିତଂ ବଚଃ । ୧୩ ।
ଆର୍ଯ୍ୟେ ମହତ୍ତପସ୍ତପ୍ତଂ ବର୍ଷାର୍ଥଂ ଗହନେ ବନେ ।
ନିର୍ଦ୍ଧନୋ ନିଷ୍କୁଳୋ ବୃଦ୍ଧୋ ବରଂ ପାପ୍ତୋ ବରାନନେ । ୧୪ ।
ସନ୍ନିଧିଂ ନ ତ୍ୟଜସି ତ୍ୱଂ ହି ସନ୍ନିଧିଂ ତାଦୃଶସ୍ୟ ବୈ ।
କୋ ଗୁଣଃ କଥ୍ୟତାଂ ବତ୍ସେ କିଂ ବା ପତ୍ୟୁଃ ପ୍ରସାଦଜମ୍ । ୧୫ ।
ଭୂଷଣାଚ୍ଛାଦନଂ ପ୍ରାପ୍ତଂ ମନ୍ମୈବ ଗୃହବାସିନଃ ।
ଚରଂ ତିଷ୍ଠତ ଭଦ୍ରେ ତ୍ୱଂ ପିତୃଭୋଗୋପଲାଳତା । ୧୬ ।

---

ସେହି ସମୟରେ ସେ କାମବାଣ ପ୍ରପୀଡିତ ହୋଇ ବ୍ରହ୍ମଚର୍ଯ୍ୟ ପରିତ୍ୟାଗ ପୂର୍ବକ, ଯୌବନମଦମତ୍ତ ସୁରୁଚର ଗିରିସୁତା ଗୌରୀଙ୍କୁ ବିବାହ କରି ଦେବବାଞ୍ଛିତ ଭୋଗ ସମୂହ ଉପଭୋଗ ପୂର୍ବକ ତାଙ୍କ ସହିତ ରମଣ କରୁଥିଲେ । ଏକ ସମୟରେ ସତୀଦେବୀ ନିଜର ବାସ ଭବନରୁ ଗମନ କରୁଅଛନ୍ତି, ଏପରି ସମୟରେ ତାଙ୍କର ମାତା, କୁଳସ୍ତ୍ରୀଗଣ ସମବେତ ହୋଇ ଅତ୍ୟନ୍ତ ଆଦର ପୂର୍ବକ ସସ୍ମିତ ବଚନରେ ତାଙ୍କୁ କହିଲେ, ହେ ଆର୍ଯ୍ୟେ ! ତୁମ୍ଭେ ଉତ୍ତମ ପତିଲାଭ କରିବ ବୋଲି ଗହନକାନନରେ ପ୍ରବେଶ ପୂର୍ବକ ମହତୀ ତପସ୍ୟା କରିଥିଲ । ଅୟି ବରାନନେ ! ତହିଁରେ କଅଣ ଏହି ଫଳ ଲାଭ ହେଲା ଯେ, ଧନହୀନ, କୁଳହୀନ ଏକ ବୃଦ୍ଧବର ପ୍ରାପ୍ତହେଲ ? ତୁମେ ଏତାଦୃଶ ସ୍ୱାମୀଙ୍କର ସାନ୍ନିଧ୍ୟ କୌଣସି କାଳରେ ମଧ୍ୟ ପରିତ୍ୟାଗ କରୁନାହଁ । ଅତଏବ ହେ ବତ୍ସେ ! ତୁମ୍ଭ ସେହି ପତିଙ୍କର କି ଗୁଣ ଅଛି ଏବଂ ତୁମେ ତାହାଙ୍କର ପ୍ରସାଦଲବ୍ଧ କେଉଁ କେଉଁ ବସ୍ତ୍ର ଓ ଅଳଙ୍କାର ପ୍ରାପ୍ତ ହୋଇଅଛ ? ସେ ଆମ୍ଭ ଗୃହରେ ଚିରକାଳ ବାସ କରିଅଛନ୍ତି । ହେ ଭଦ୍ରେ, ତୁମ୍ଭେ ମଧ୍ୟ ଚିରଦିନ ପିତୃପାଳିତ ହୋଇ ରହିଥିଲ । ଆମ୍ଭେମାନେ

ତୈଲୋକ୍ୟେ ଯା ତୁ କନ୍ୟା ବୈ ପରଣୀତା ପିତୁର୍ଗୃହାତ୍ ।
ପ୍ରସ୍ଥାତ୍ୟଳଙ୍କୃତା ଭର୍ତ୍ତୁ ପରବେଶ୍ମେତି ଶୁଶ୍ରୁମଃ । ୨୭ ।
ଅହନ୍ତୁ ମାନସୀ କନ୍ୟା ପିତୃଣାଂ ପିତୃଲୋକତଃ ।
ଆଗତେଽନ ମହାଭାଗେ ପରଣୀତା ହିମାଦ୍ରିଣା । ୨୮ ।
ଇତ୍ତ୍ୟମୁକ୍ତା ମୟା ହାସ୍ୟାନ୍ନ କ୍ରୋଧାନ୍ନ ଚ ଲୋଭତଃ ।
ଜାମାତୁରଗ୍ରେ ନୋ ବାଚ୍ୟଂ ସ ହି ବସ୍ତୁସମୋ ମତଃ । ୨୯ ।

ନାରଦ ଉବାଚ

ମାତୁରତ୍ତ୍ୟଂ ବଚଃ ଶ୍ରୁତ୍ୱା ଭର୍ତ୍ତୃନିନ୍ଦାପ୍ରପୀଡ଼ିତା ।
କୋପପ୍ରସ୍ଫୁରଦୋଷ୍ଠୀ ସା ବାଚଂ ନୋଚେ ମନାଗପି । ୩୦ ।
ପ୍ରଯଯାବନ୍ତିକେ ଭର୍ତ୍ତୁର୍ନକ୍ରୁ ବାଣାମ୍ଭି କାବଚଃ ।
ଜଗାଦ ପୁରୁଷଂ ବାକ୍ୟଂ ସ୍ନେହଗର୍ଭମିତାକ୍ଷରମ୍ । ୩୧ ।

ଉମୋବାଚ ।

ସ୍ୱାମିନ୍ନ ସାମ୍ପ୍ରତମେତତ୍ ତ୍ୱଦ୍ବାସଃ ଶ୍ୱଶୁରାଲୟେ ।
କ୍ରୋଧାଦ୍ୟସାମପି ଗୁର୍ବୋଃ ତୈଲୋକ୍ୟସ୍ୟ କଥଂ ନୁ ତେ । ୩୨ ।

---

ଶୁଣିଅଛୁ ଯେ, ଏହି ତିନଲୋକ ମଧ୍ୟରେ ପରିଣୀତା କନ୍ୟା ପିତା ପ୍ରଦତ୍ତ ଅଳଙ୍କାରାଦି ଦ୍ୱାରା ଭୂଷିତା ହୋଇ ପିତାଙ୍କ ଗୃହରୁ ଭର୍ତ୍ତାଙ୍କ ଭବନକୁ ଗତ ହୋଇଥାନ୍ତି । ମୁଁ ମଧ୍ୟ ପିତୃମାନଙ୍କର ମାନସୀ କନ୍ୟା । ହିମାଳୟ ମୋତେ ବିବାହ କରି ପିତୃଲୋକରୁ ନିଜ ଗୃହକୁ ଆଣିଥିଲେ । ୨୮ । ଯାହାହେଉ, ହେ ସଖି ! ମୁଁ ଏ ସମସ୍ତ କଥା ପରିହାସ ଛଳରେ କହୁଅଛି; କୌଣସି ପ୍ରକାର ଲୋଭ ବା କ୍ରୋଧର ବଶୀଭୂତ ହୋଇ କହୁନାହିଁ । ଅତଏବ ମୋର ସେହି ବସ୍ତୁ ସଦୃଶ ଜାମାତା (ଜ୍ୱାଇଁ) ଙ୍କ ସମକ୍ଷରେ ଏକଥାକୁ କହିବ ନାହିଁ । ଶ୍ରୀ ନାରଦ କହିଲେ, ଗୌରୀ ମାତାଙ୍କର ଏହି ପ୍ରକାର ବାକ୍ୟ ଶ୍ରବଣ କରି ଭର୍ତ୍ତୃ ନିନ୍ଦାରେ ଅତ୍ୟନ୍ତ ଦୁଃଖିତ, ମର୍ମାହତ ଓ କୋପକମ୍ପିତା ହୋଇ କିଛିହେଲେ ନ କହି ଭର୍ତ୍ତାଙ୍କ ନିକଟକୁ ଗମନ କଲେ । ଜନନୀ ଯେସମସ୍ତ ନିନ୍ଦାବାଦ କରିଥିଲେ, ତାହା ଗୋପନ କରି ସ୍ନେହ ଗର୍ଭିତ ଭାଷାରେ କାଞ୍ଚିତ୍ ନିଷ୍ଠୁର ବାକ୍ୟ କହିବାକୁ ଲାଗିଲେ—ହେ ସ୍ୱାମିନ୍ ! ବର୍ତ୍ତମାନ ଆପଣ ଏହି

ତଦାବସ୍ତୋର୍ନାନ ଯୋଗ୍ୟା ବସତି ର୍ମେ ପ୍ରିୟା ବିଭୋ ।
ନ ସନ୍ତି ତବ ବାସାୟ ଯୋଗ୍ୟା ବୈ ଭୂମୟଃ ପ୍ରଭୋ । ୩୩ ।
ଇତ୍ୟୁକ୍ତଃ ଶିବୟା ସୋଽଥ ଭଗବାନ୍ ବୃଷଭଧ୍ୱଜଃ ।
ତୟା ସାର୍ଦ୍ଧଂ ବୃଷାରୂଢ଼ୋ ମଧ୍ୟଦେଶଂ ଯଯୌ ତ୍ୱରନ୍ । ୩୪ ।
ବିଲଙ୍ଘ୍ୟ ସର୍ବତୀର୍ଥଂ ବୈ ପ୍ରୟାଗଂ ପାବନଂ ମହତ୍ ।
ଦକ୍ଷିଣୋଦଧିଗାମିନ୍ୟା ଗଙ୍ଗାୟା ଉତ୍ତରେ ତଟେ ।
ବାରାଣସୀଂ ନାମ ପୁରୀଂ ଗୌର୍ଯ୍ୟା ବାସାୟ ନିର୍ମମେ । ୩୫ ।
ପଞ୍ଚକ୍ରୋଶମିତାଂ ରମ୍ୟାଂ ବରପ୍ରାସାଦଶୋଭିତାମ୍ ।
ଅଟ୍ଟାଳକଶତୈର୍ଯୁକ୍ତାମସଂଖ୍ୟୋପବନୈର୍ବୃତାମ୍ ।
ନାନାତୀର୍ଥସମାଯୁକ୍ତାଂ ନାନାଜନସମାକୁଳାମ୍ । ୩୬ ।
ଆଜ୍ଞୟା ଧୂର୍ଜଟେଃ ଶୁଭ୍ରାଂ ରଚିତାଂ ବିଶ୍ୱକର୍ମଣା ।
ପାବନୈଃ ଶୀତଳୈର୍ଗାଙ୍ଗସଲିଳୈଃ କ୍ଷପିତାଂହସାମ୍ । ୩୭ ।

---

ଶ୍ୱଶୁରାଳୟରେ ବାସ କରିବା ଉଚିତ ନୁହେଁ । ଆପଣ ଯେତେବେଳେ ତ୍ରୈଲୋକ୍ୟବାସୀ, ସୃଷ୍ଟ୍ୟାଶୟ ବ୍ୟକ୍ତି ମାନଙ୍କର ଗୁରୁ, ସେତେବେଳେ ଆପଣଙ୍କ ନିନ୍ଦା ଶୁଣିବା ବଡ଼ ଦୁଃଖର ବିଷୟ ନୁହେଁ କି ? ଅତଏବ ହେ ବିଭୋ ! ଆମ୍ଭେ ଉଭୟେ (ଶିବ ଓ ପାର୍ବତୀ) ଏପରି ସ୍ଥାନରେ ବାସ କରିବା କର୍ତ୍ତବ୍ୟ ନୁହେଁ । ହେ ପ୍ରଭୋ ! ଆପଣଙ୍କର ବାସଯୋଗ୍ୟ ଭୂମି ଏହି ଭୂମଣ୍ଡଳରେ କଅଣ ଅଭାବ ଅଛି ? ଭଗବାନ ବୃଷଧ୍ୱଜ ଉମା ଦେବୀଙ୍କର ଏହି କଥା ଶ୍ରବଣ କରି ତାଙ୍କ ସହିତ ବୃଷାରୂଢ଼ ହୋଇ ଯଥାଶୀଘ୍ର ମଧ୍ୟ ଦେଶକୁ ଗମନ କଲେ । କ୍ରମଶଃ ପବିତ୍ରତାଜନକ ସର୍ବତୀର୍ଥମୟ ଅତ୍ୟନ୍ତ ଶ୍ରେଷ୍ଠ ପ୍ରୟାଗ ତୀର୍ଥକୁ ଲଙ୍ଘନ କରି ଗୌରୀ ଦେବୀଙ୍କ ବାସ ନିମନ୍ତେ ଦକ୍ଷିଣ ସମୁଦ୍ର ଗମନଶୀଳା ଗଙ୍ଗାର ଉତ୍ତର ତଟରେ ବାରାଣସୀ ନାମକ ପୁରୀ ନିର୍ମାଣ କଲେ । ଏହି ପୁରୀଟି ପଞ୍ଚ କ୍ରୋଶ ପରିମିତ । ରମଣୀୟ ଓ ଉତ୍ତର ପ୍ରାସାଦ, ଶତଶତ ଅଟ୍ଟାଳିକା ଓ ଅସଂଖ୍ୟ ଉପବନ, ବହୁବିଧ ତୀର୍ଥ ଓ ମନୁଷ୍ୟଦ୍ୱାରା ପରିପୂର୍ଣ୍ଣ ହୋଇ ଉକ୍ତ ପୁରୀଟି ଶୋଭିତ ହେଲା । ବିଶ୍ୱକର୍ମା ଶ୍ରୀ ମହାଦେବଙ୍କ ଆଜ୍ଞା ଅନୁସାରେ ଏହି ପୁରୀକୁ ଶୁଭ୍ର ବର୍ଣ୍ଣ କରି ରଚନା କଲେ ଏବଂ

ତତ୍ର ମଧ୍ୟେ ପୁରେ ସ୍ୱର୍ଣ୍ଣ-ପ୍ରାକାରାଟ୍ଟାଳଶୋଭିତେ ।
ରତ୍ନସ୍ତମ୍ଭୈଃ ସୁଘଟିତୈଃ ସର୍ବାଶାପରିପୂରକେ ।
ତସ୍ୟା ରେମେ ପଶୁପତିଃ ଶ୍ରିୟେବ ମଧୁସୂଦନଃ । ୩୮ ।

ସା ପୁରୀ ବିଶ୍ୱନାଥେନ କଦାଚିନ୍ନ ବିମୁଚ୍ୟତେ ।
ଅବିମୁକ୍ତେତି ବିଖ୍ୟାତା ନୃଣାଂ ମୁକ୍ତିପ୍ରଦାୟିନୀ ।
ପୁରାପି ମନୁଜାଧୀଶୈଃ ସେବିତା ଭବଖିନ୍ନକୈଃ । ୩୯ ।

ତତ୍ରୋଷିତା ତଦା ଗୌରୀ ତେନ ଭର୍ତ୍ତ୍ରା ସ୍ୱଲଙ୍କୃତା ।
ମାତରଂ ପିତରଂ ଚାପି ନ ସସ୍ମାର ମହୀପତେ । ୪୦ ।

ଏବଂ ବହୁଯୁଗେଽତୀତେ କୈଲାସାଦ୍ରିଂ ସ ଜଗ୍ମିବାନ୍ ।
ଆତ୍ମନଃ କୋଟିଲିଙ୍ଗାନି ତତ୍ର ସଂସ୍ଥାପ୍ୟ ବୈ ପ୍ରଭୁଃ । ୪୧ ।
ରାଜାନଃ ପାଳୟାମାସୁସ୍ତାଂ ପୁରୀଂ ବହୁଶୋ ନୃପ ।
ତତ୍ରାସୀତ୍ କାଶିରାଜାଖ୍ୟଃ ପୁରା ଦ୍ୱାପରକେ ଯୁଗେ । ୪୨ ।

---

ପବିତ୍ର ସୁଶୀତଳ ଗଙ୍ଗାଜଳ ଦ୍ୱାରା ଧୌତ କରାଇ ଦେଲେ । ପଶୁପତି ଭଗବାନ୍ ଶଙ୍କର ଭଗବତୀଙ୍କ ସହିତ ଲକ୍ଷ୍ମୀ ଓ ଲକ୍ଷ୍ମୀକାନ୍ତଙ୍କ ପରି ସେହି ବାରାଣସୀ ଧାମରେ ସ୍ୱର୍ଣ୍ଣ ନିର୍ମିତ ପ୍ରାଚୀର ତଥା ଅଟ୍ଟାଳିକା ଦ୍ୱାରା ସୁଶୋଭିତ ଓ ସୁନିର୍ମିତ ରତ୍ନ ସ୍ତମ୍ଭରେ ଚତୁର୍ଦ୍ଦିଗ ପୂର୍ଣ୍ଣ ପୁରୀ ମଧ୍ୟରେ ରମଣ କରିବାକୁ ଲାଗିଲେ । ସେହି ବାରାଣସୀ କ୍ଷେତ୍ରକୁ ମହାଦେବ କୌଣସି କାଳରେ ମଧ୍ୟ ତ୍ୟାଗ କରନ୍ତି ନାହିଁ । ତାହା ଅତ୍ୟାଜ୍ୟ ଓ ମୋକ୍ଷଦାୟିନୀ ବୋଲି ପ୍ରସିଦ୍ଧି ଅଛି । ହେ ରାଜନ୍ ! ପୂର୍ବକାଳରୁ ଭବସଂସାର ଖିନ୍ନ ମନୁଷ୍ୟମାନେ ତାହାଙ୍କୁ ଆରାଧନା କରି ଥାଆନ୍ତି । ଜଗଜ୍ଜନନୀ ଗୌରୀଦେବୀ ପତିଙ୍କ ଦ୍ୱାରା ଅଳଙ୍କୃତା ହୋଇ ତାଙ୍କ ସହିତ ସେଠାରେ ବାସ କଲେ । ହେ ନରପତେ ! ସେ ମାତା ଓ ପିତାଙ୍କୁ ଆଉ ସ୍ମରଣ କଲେ ନାହିଁ । ଏହି ପ୍ରକାରେ ବହୁକାଳ ଅତୀତ ହୁଅନ୍ତେ ଗୌରୀଦେବୀ ସେହି ସ୍ଥାନରେ (ବାରାଣସୀରେ) ସ୍ୱକୀୟ କୋଟିଲିଙ୍ଗ ସ୍ଥାପନ ପୂର୍ବକ କୈଳାସ ପର୍ବତକୁ ଗମନ କଲେ । ପରବର୍ତ୍ତୀ କାଳରେ ଏକାଧିକ ନରପତି ସେହି ପୁରୀକୁ ପରିପାଳନ କଲେ । ଇତିପୂର୍ବେ ଦ୍ୱାପର ଯୁଗରେ କାଶୀରାଜ ନାମକ ଏକ ନରପତି ସେଠାରେ ବାସ କରୁଥିଲେ ।

ଶମ୍ଭୁଂ ସନ୍ତୋଷୟାମାସ ତପସୋଗ୍ରେଣ ବୈ ପ୍ରଭୁମ୍ ।
ଜରାସନ୍ଧପୁରୋଗାଣାଂ ରାଜ୍ଞାଂ ଜେତାରମଚ୍ୟୁତମ୍ ।୪୩।

ସଂଗ୍ରାମେ ପ୍ରହରିଷ୍ୟାମୀତ୍ୟଭିସନ୍ଧାୟ ପାର୍ଥିବଃ ।
ପ୍ରାଦାତ୍ତସ୍ମୈ ବରଂ ସୋଽପି ପିନାକୀ ପରିତୋଷିତଃ । ୪୪ ।

ଜେତାସି କଂସହନ୍ତାରଂ ସଂଗ୍ରାମେ ତ୍ୱମରିନ୍ଦମ ।
ତବାର୍ଥେ ପ୍ରମଥୈଃ ସାର୍ଦ୍ଧମହଂ ଯୋତ୍ସ୍ୟେ ବୃଷସ୍ଥିତଃ । ୪୫ ।

ଶମ୍ଭୋରିତି ବରଂ ଲବ୍ଧ୍ୱା ପ୍ରମତ୍ତଃ ସ ନରାଧିପଃ ।
ଶଙ୍ଖଚକ୍ରଧରଂ ସଂଖ୍ୟେ ହରିମାହୂତ ବୀର୍ଯ୍ୟବାନ୍ । ୪୬ ।

ଅନ୍ତର୍ଯ୍ୟାମୀ ସ ଭଗବାନ୍ ଜ୍ଞାତ୍ୱା ବୃତ୍ତାନ୍ତମୀଦୃଶମ୍ ।
ଚକ୍ରଂ ପ୍ରସ୍ଥାପୟାମାସ କାଶୀରାଜସ୍ୟ ସୂଦନେ । ୪୭ ।

---

ସେ ଉଗ୍ର ତପସ୍ୟା ଦ୍ୱାରା ମହାଦେବଙ୍କୁ ସନ୍ତୁଷ୍ଟ କରି ଅଭିମନ୍ଧ ନିମେ ବର ପ୍ରାର୍ଥନା କଲେ ଯେ, ଯୁଦ୍ଧରେ ଜରାସନ୍ଧ ପ୍ରଭୃତି ରାଜାମାନଙ୍କ ହନନକାରୀ ନାରାୟଣଙ୍କୁ ଯେପରି ମୁଁ ଜୟ କରିପାରିବି । ପିନାକୀ ଅର୍ଥାତ୍ ମହାଦେବ କାଶୀରାଜାଙ୍କ ପ୍ରତି ସନ୍ତୁଷ୍ଟ ହୋଇ କହିଲେ— “ହେ ଅରିନ୍ଦମ ! ତୁମ୍ଭେ ରଣାଙ୍ଗନରେ ସେହି କଂସାରି ଶ୍ରୀକୃଷ୍ଣଙ୍କୁ ପରାଜୟ କରିପାରିବ । ମୁଁ ମଧ୍ୟ ତୁମ୍ଭର ସାହାଯ୍ୟାର୍ଥେ ବୃଷାରୂଢ଼ ହୋଇ ପ୍ରମଥଗଣଙ୍କ ସହିତ ଗମନ କରି ଯୁଦ୍ଧ କରିବି ।”୪୫ ସେହି ରାଜା ମହାଦେବଙ୍କ ନିକଟରୁ ଏହିପ୍ରକାର ବରଲାଭ ଦ୍ୱାରା ବୀର୍ଯ୍ୟଶାଳୀ ତଥା ପ୍ରମତ୍ତ ହୋଇ ଯୁଦ୍ଧଭୂମିରେ ଶଙ୍ଖଚକ୍ରଧାରୀ ଶ୍ରୀହରିଙ୍କୁ ଆହ୍ୱାନ କଲେ । ତଦନନ୍ତର ଅନ୍ତର୍ଯ୍ୟାମୀ ଭଗବାନ୍ ଈଦୃଶ ବୃତ୍ତାନ୍ତ ଜାଣିପାରି କାଶୀରାଜାର ବିନାଶ ନିମନ୍ତେ ଚକ୍ର ପ୍ରେରଣ କଲେ । ୪୭ । ହେ ରାଜନ୍ ! ସହସ୍ର ସୂର୍ଯ୍ୟ ସଦୃଶ ତେଜଃପୁଞ୍ଜ ଉଗ୍ରଦର୍ଶନ ସେହି ଚକ୍ର ଭଗବାନ୍ ବିଷ୍ଣୁଙ୍କ ଇଚ୍ଛାଯୁକ୍ତ

ତମୁଗ୍ରଦର୍ଶନଂ ଚକ୍ରଂ ସହସ୍ରାଦିତ୍ୟବର୍ଚ୍ଚସମ୍ ।
କାଶୀରାଜଶିରଶ୍ଛିତ୍ୱା ତଦ୍‌ବଳଂ ତାଂ ପୁରୀଂ ତତଃ ।
ଦଦାହ କୁପିତଂ ରାଜନ୍ ବିଷ୍ଣୋରାଶସ୍ତୁ ବୀର୍ଯ୍ୟବତ୍ । ୪୮ ।
ତଦ୍ଦୃଷ୍ଟ୍ୱା ସୁମହତ୍ କର୍ମ କ୍ରୁଦ୍ଧଃ ପଶୁପତିସ୍ତଦା ।
ଗଣୈର୍ବୃତୋ ବୃଷାରୂଢ଼ଃ ପିନାକୀ ତଦୁପାଦ୍ରବତ୍ । ୪୯ ।
ତତଃ ସୁଦର୍ଶନଂ ଚକ୍ରଂ ଦଗ୍‌ଧ୍ୱା ତୁ ପ୍ରମଥଂ ଗଣମ୍ ।
ଶମ୍ଭୋଃ ପାଶୁପତାସ୍ତ୍ରଂ ତଚ୍ଚକାରାଲାତସନ୍ନିଭମ୍ । ୫୦ ।
ପୁରା ବିଷ୍ଣୋର୍ବରଃ ପ୍ରାପ୍ତଃ ଶମ୍ଭୁନା ଭକ୍ତିତୋଷିତାତ୍ ।
ବଳେନାପ୍ୟାଦ୍ରିୟିଷ୍ୟାମି ତବାସ୍ତ୍ରଂ ସଂସ୍ମୃତସ୍ତ୍ୱୟା ।
ମୟି ଚେତ୍ ପ୍ରତିକୂଳସ୍ତ୍ୱଂ ଭବିଷ୍ୟତି ଚ ନିଷ୍ପ୍ରଭମ୍ । ୫୧ ।
ଘୋରେ ପାଶୁପତେ ତସ୍ମିନ୍ନସ୍ତ୍ରେ ତ ବିଫଳୀକୃତେ ।
ବାରାଣସ୍ୟାଞ୍ଚ ଦଗ୍‌ଧାୟାଂ ଭୟୟନ୍ତ୍ରୋ ବୃଷଧ୍ୱଜଃ ।
ତୁଷ୍ଟାବ ଜଗତାମାଦିମନାଦିଂ ପୁରୁଷୋତ୍ତମମ୍ । ୫୨ ।

---

ଚରିତାର୍ଥ କରିବା ପାଇଁ ବୀର୍ଯ୍ୟଶାଳୀ ଓ କୁପିତ ହୋଇ କାଶୀ ରାଜାର ମସ୍ତକଚ୍ଛିନ୍ନ ଏବଂ ତପାପୁ ବଳ ସହ ସେହି ପୁରୀକୁ ଦଗ୍‌ଧ କରିଦେଲେ । ସେତେବେଳେ ପଶୁପତି ସେହି ଗୁରୁତର ବ୍ୟାପାର ଦର୍ଶନ କରି ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ପ୍ରମଥମାନଙ୍କ ସହିତ ନିଜର ଧନୁ ଗ୍ରହଣ ପୂର୍ବକ ଯଥା ଶୀଘ୍ର ସେଠାକୁ (ଯୁଦ୍ଧକ୍ଷେତ୍ରକୁ) ଗମନ କଲେ । ତଦନନ୍ତର ସୁଦର୍ଶନ ଚକ୍ର ପ୍ରମଥଗଣଙ୍କୁ ଦଗ୍‌ଧ ଓ ପାଶୁପତ ଅସ୍ତ୍ରକୁ ଦହନ କରି ଅଙ୍ଗାର ସଦୃଶ କରିଦେଲେ । ପୂର୍ବକାଳରେ ବିଷ୍ଣୁ ମହାଦେବଙ୍କ ଭକ୍ତିଦ୍ୱାରା ସନ୍ତୁଷ୍ଟ ହୋଇ ବର ଦେଇଥିଲେ—'ତୁମ୍ଭଦ୍ୱାରା ମୁଁ (ବିଷ୍ଣୁ) ସ୍ମରଣୀୟ ହେଲେ ତୁମ୍ଭର ଅସ୍ତ୍ରକୁ ଉଚ୍ଚଶକ୍ତିରେ ପରିପୂର୍ଣ୍ଣ କରିବି । କିନ୍ତୁ ଯଦି ମୋର ପ୍ରତିକୂଳ ଆଚରଣ କର, ତାହାହେଲେ ଏହି ଅସ୍ତ୍ରର ତେଜ ରହିବ ନାହିଁ ।' ଭୟଙ୍କର ପାଶୁପତ ଅସ୍ତ୍ର ନିଷ୍ଫଳ ଏବଂ ବାରାଣସୀ ପୁରୀ ଦଗ୍‌ଧ ହେବା ଫଳରେ ବୃଷଭଧ୍ୱଜ ମହାଦେବ ଭୀତତ୍ରସ୍ତ

ମହାଦେବ ଉବାଚ

ନାରାୟଣ ପରଂଧାମ ପରମାତ୍ମନ୍ ପରାତ୍ପର ।
ସଚ୍ଚିଦାନନ୍ଦବଭବ ନିରଞ୍ଜନ ନମୋଽସ୍ତୁତେ । ୫୩ ।
ଜଗତ୍କାରଣ ସୃଷ୍ଟ୍ୟାଦିକର୍ମକୃଦ ଗୁଣଭେଦତଃ ।
ମାୟୟା ନିଜୟା ଗୁପ୍ତ ସୁପ୍ରକାଶ ନମୋଽସ୍ତୁ ତେ । ୫୪ ।
ନାନ୍ତର୍ବହି ର୍ବହିଷ୍ଠାନ୍ତ ର୍ଦୂରସ୍ଥୋ ନିକଟାଶ୍ରୟ ।
ଗୁରୁର୍ଲଘୁଃ ସ୍ଥିବୋଽଣୀୟାନ୍ ଚୁଲୀୟାଂଶ୍ଚ ନମୋଽସ୍ତୁତେ । ୫୫ ।
କୋଟ୍ୟୁଦ୍ଭବୃହ୍ମସ୍ୟସ୍ୟ ପରାର୍ଦ୍ଧଂ ମମସନ୍ତୁଲମ୍ ।
ଯଦପାଙ୍ଗବଲାସୋତ୍ଥଂ ତସ୍ମୈ କାଲାତ୍ମନେ ନମଃ । ୫୬ ।
ଏକୈକଲୋମା କଳିତ-ବ୍ରହ୍ମାଣ୍ଡଗଣସଂବୃତମ୍ ।
ମାନାତୀତଂ ବପୁର୍ଯସ୍ୟ ତସ୍ମୈ ବିଶ୍ୱାତ୍ମନେ ନମଃ । ୫୭ ।

---

ହୋଇ ଅନାଦି ଓ ଜଗତର ଆଦି ପୁରୁଷୋତ୍ତମଙ୍କୁ ସ୍ତବ କରିବାକୁ ଲାଗିଲେ । ୫୨ । ମହାଦେବ କହିଲେ, "ହେ ନାରାୟଣ ! ଆପଣ ପରମ ଆଶ୍ରୟ ଓ ପରମାତ୍ମା ପରାତ୍ପର । ଆପଣ ସତ୍ୟ, ଜ୍ଞାନ, ଆନନ୍ଦସ୍ୱରୂପ ଓ ନିରଞ୍ଜନ । ଏଣୁ ଆପଣଙ୍କୁ ନମସ୍କାର କରୁଅଛୁ । ହେ ଜଗତ୍କାରଣ ! ଆପଣ ଗୁଣତ୍ରୟ ଭେଦରେ ସୃଷ୍ଟି, ସ୍ଥିତି ଓ ପ୍ରଳୟର କର୍ତ୍ତା ଅଟନ୍ତି । ନିଜ ମାୟାଦ୍ୱାରା ଗୁପ୍ତ ଓ ପ୍ରକାଶିତ; ଅତଏବ ଆପଣଙ୍କୁ ନମସ୍କାର । ହେ ଦେବ ! ଆପଣ ଅନ୍ତର ନୁହଁନ୍ତି କିମ୍ବା ବାହାର ନୁହଁନ୍ତି; ଅଥଚ ବାହାର ଓ ଅନ୍ତ ଏବଂ ଦୂରସ୍ଥ ଓ ନିକଟସ୍ଥ, ଗୁରୁ ଓ ଲଘୁ, ଅତିଶୟ ସୂକ୍ଷ୍ମ ଓ ଅତ୍ୟନ୍ତ ସ୍ଥୂଳ ହୋଇ ମଧ୍ୟ ସର୍ବଦା ନିଶ୍ଚଳ ଥାଆନ୍ତି । ଏଣୁ ଆପଣଙ୍କୁ ନମସ୍କାର କରୁଅଛୁ । ଯେ ସାମାନ୍ୟ କଟାକ୍ଷ-ପାତରେ କୋଟି କୋଟି ବ୍ରହ୍ମା ଏବଂ ଅତୁଳ ପରାର୍ଦ୍ଧ ସଂଖ୍ୟକ ମୋତେ ଉତ୍ପନ୍ନ କରିଅଛନ୍ତି, ସେହି କାଳସ୍ୱରୂପଙ୍କୁ ନମସ୍କାର । ୫୬ । ଯାହାଙ୍କର କଳେବର ଗୋଟିଏ ଗୋଟିଏ ଲୋମ ସଂଖ୍ୟାଦ୍ୱାରା ଅନନ୍ତ ବ୍ରହ୍ମାଣ୍ଡ ଧାରଣ କରି

ସ୍ୱକାଳପରିଣାମେନ ବେଧସଃ ପ୍ରଳୟୋଦ୍‌ଭବୌ ।
ମନ୍ୱନ୍ତରାଦିଘଟନାକଳନାୟ ନମୋଽସ୍ତୁତେ ।୫୮।

ସ୍ରଷ୍ଟୋଽହଂ ତପସା ନାଥ ତ୍ୱତ୍ପ୍ରଭାବାନଭିଜ୍ଞକଃ ।
ତତ୍‌କ୍ଷମସ୍ୱାପରାଧଂ ମେ ତ୍ରାହି ମାଂ ଶରଣାଗତମ୍ ।୫୯।

ସ୍ତୁତମିତ୍ଥଂ ପଦ୍ମବାଣେ ତସ୍ମିଂସ୍ତ୍ରିପୁରଦାହନେ ।
ଚକ୍ର ରୂପଂ ପରିତ୍ୟଜ୍ୟ ଆବିରାସୀଦଧୋକ୍ଷଜଃ ।୬୦।

ପ୍ରସନ୍ନବଦନଃ ଶ୍ରୀମାନ ଶଙ୍ଖଚକ୍ରଗଦାଧରଃ ।
ତାର୍କ୍ଷ୍ୟ-ପୃଷ୍ଠାସନଗତୋ ବନମାଲାବିଭୂଷଣଃ ।୬୧।

ହାରକୁଣ୍ଡଳକେୟୂରମୁକୁଟାଦିଭିରୁଜ୍ଜ୍ୱଲଃ ।
ବାମୋତ୍ସଙ୍ଗଗତାଂ ଲକ୍ଷ୍ମୀଂ ସତ୍ୟାଂ ଦକ୍ଷିଣପାର୍ଶ୍ୱଗାମ୍ ।୬୨।

---

ପରିମାଣ ରହିତ ହୋଇଅଛି, ସେହି ବିଶ୍ୱାତ୍ମାଙ୍କୁ ନମସ୍କାର କରୁଅଛି । ଆପଣ ବ୍ରହ୍ମାଙ୍କର ଆୟୁଷ୍କାଳ ପରିପାକ କରି ପ୍ରଳୟ, ଉଦ୍ଭବ ଏବଂ ମନ୍ୱନ୍ତର ପ୍ରଭୃତି ଘଟଣା କରି ଥାଆନ୍ତି । ଏଣୁ ଆପଣଙ୍କୁ ନମସ୍କାର । ହେ ନାଥ ! ମୁଁ ସ୍ରଷ୍ଟା ହୋଇ ତପସ୍ୟା ଦ୍ୱାରା ଆପଣଙ୍କ ପ୍ରଭାବ ଜାଣିପାରିନାହିଁ । ଅତଏବ ଶରଣାଗତ ମୋର ଅପରାଧ କ୍ଷମାକରି ପରିତ୍ରାଣ କରନ୍ତୁ ।" ଶ୍ରୀ ମହାଦେବ ଏହି ପ୍ରକାରେ ସ୍ତବ କରିବା ପରେ ଶଙ୍ଖଚକ୍ରଧାରୀ ବିଷ୍ଣୁ ଚକ୍ରରୂପ ପରିତ୍ୟାଗ ପୂର୍ବକ ଆବିର୍ଭୂତ ହେଲେ । ୬୦ । ତାଙ୍କ ମୁଖମଣ୍ଡଳ ପ୍ରସନ୍ନ । ଗଳ ଦେଶରେ ବନମାଳା, ହାର, କୁଣ୍ଡଳ, କେୟୂର, ମୁକୁଟାଦି । ଉଜ୍ଜ୍ୱଳ ଅଳଙ୍କାରରେ ପ୍ରଭୁ ସୁସଜ୍ଜିତ, ତାଙ୍କ ବାମଭାଗରେ କୋଡ଼ପରେ ଲକ୍ଷ୍ମୀଦେବୀ ଓ ଦକ୍ଷିଣ ଭାଗରେ ସତ୍ୟଭାମା ବିରାଜମାନା । ଶରୀର ନୀଳଜଳଦର ସଦୃଶ ମନୋହର ।

ବିଭ୍ରାଣଂ କୃଷ୍ଣଜାମୃତନାନ୍ତଦେହଂ କୃପାମ୍ବୁଧିଃ ।
କ୍ରୋଧାବିଷ୍ଟ ଇବୋବାଚ ସଭୀତଂ ଗିରିଜାପତିମ୍ ।୭୩।

ଶ୍ରୀ ଭଗବାନୁବାଚ

କାଲେନୈତାବତା ଶମ୍ଭୋ ଦୁର୍ବୁଦ୍ଧିଃ କଥମାଗତା ।
ହେତୋର୍ନୃପଢକାଟସ୍ୟ ମୟା ଯୋଦ୍ଧୁମୁପସ୍ଥିତଃ ।୭୪।
କଚ୍ଚ ବା ମତ୍ପ୍ରଭବାସ୍ତେ ନୋ ଜ୍ଞାତା ଧୂର୍ଜଟେ ତ୍ୱୟା ।
ସତ୍ୟଂ ପାଶୁପତଂ ତେଽସ୍ତ୍ରଂ ଦୁର୍ଜୟଞ୍ଚ ସୁରାସୁରୈଃ ।୭୫।
ମତ୍କ୍ରୋଧରୂପଂ କଚ୍ଚନମଥାପି କ୍ଷମତେ ନ ଯତ୍ ।
ମାମବଜ୍ଞାୟ ଜଗତ୍ତ ପ୍ରାଣୀତ ତ୍ୱାମୃତେ ହି କଃ ।୭୬।
ତପୋଭିର୍ବହୁଭିଃପୂର୍ବଂ ମଚ୍ଛରୀରତୟୋର୍ଜିତଃ ।
ସାମ୍ପ୍ରତଂ ଚେଚ୍ଚିରଂ ରନ୍ତୁଂ ଗୌର୍ଯ୍ୟା ସାର୍ଦ୍ଧମିହେଚ୍ଛସି ।୭୭।

---

କୃପାସାଗର ଭଗବାନ ଅଧୋକ୍ଷଜ ସତେ ଯେପରି କ୍ରୋଧାନ୍ୱିତ ହୋଇ ଭୟାତୁର ମହାଦେବଙ୍କୁ କହିଲେ—ହେ ଶମ୍ଭୋ ! ଏତେ ଦିନ ପରେ ତୁମ୍ଭର କାହିଁକି ଏ ଦୁର୍ବୁଦ୍ଧି ପ୍ରକାଶିତ ହେଲା ? କୀଟ ସ୍ୱରୂପ ଏହି ନରପତି ନିମନ୍ତେ ମୋ ସହିତ ଯୁଦ୍ଧ କରିବାକୁ ଉପସ୍ଥିତ ହୋଇଅଛ ? ହେ ଧୂର୍ଜଟେ ! ମୋର ଯେ କେତେ ପରିମାଣରେ ପ୍ରଭାବ ଅଛି, ତାହା ତୁମ୍ଭେ ଜାଣନାହିଁ କି ? ଏକଥା ସତ୍ୟ ଅଟେ ଯେ ତୁମ୍ଭର ପାଶୁପତ ଅସ୍ତ୍ର ସୁରାସୁର ସମସ୍ତଙ୍କୁ ପରାସ୍ତ କରିପାରେ । କିନ୍ତୁ ମୋର କ୍ରୋଧରୂପ ସେହି ଚକ୍ରକୁ ଅବଗତ ହୋଇ ମଧ୍ୟ ତୁମ୍ଭେ କ୍ଷାନ୍ତ ହେଲ ନାହିଁ ? ଏହି ସଂସାରରେ ମୋତେ ଅବଜ୍ଞା କରି ତୁମ୍ଭ ବ୍ୟତୀତ ଆଉ କେଉଁ ବ୍ୟକ୍ତି ପ୍ରାଣଧାରଣ କରିବ ? କାରଣ ତୁମ୍ଭେ ପୂର୍ବକାଳରେ ବହୁ ତପସ୍ୟା କରି ମୋର ଶରୀର ରୂପେ ଉତ୍ପନ୍ନ ହୋଇଅଛ । ଅତଏବ ସମ୍ପ୍ରତି ଯଦି ଗୌରୀଦେବୀଙ୍କ ସହିତ ଚିରକାଳ ଏଠାରେ ରମଣ କରିବାକୁ

ପୁର୍ଣ୍ଣଂ ବାରାଣସୀଂ ଚେମାଂ ଯଦୀଚ୍ଛସି ଚିରସ୍ଥିରାମ୍ ।
ମନ୍ନାମ୍ନା ଭୁବି ବିଖ୍ୟାତଂ କ୍ଷେତ୍ରଂ ଶ୍ରୀ ପୁରୁଷୋତ୍ତମମ୍ ।୬୮।
ଦକ୍ଷିଣସ୍ୟୋଦଧେସ୍ତୀରେ ନୀଳାଚଳବିଭୂଷିତମ୍ ।
ଦଶଯୋଜନବିସ୍ତୀର୍ଣ୍ଣଂ ଯାବଦ୍ ବିରଜମଣ୍ଡଳମ୍ ।୬୯।
କ୍ରମଶଃ ପାବନଂ କ୍ଷେତ୍ରଂ ଯାବଚ୍ଚିତ୍ରୋତ୍ପଳା ନଦୀ ।
ତତଃ ପ୍ରଭୃତି ଯୋ ଦେଶୋ ଯାବତ୍ତ୍ୱ ସ୍ୟାଦ୍ଦକ୍ଷିଣାର୍ଣ୍ଣବଃ ।୭୦।
ପଦାତ୍ତୁ ପଦାତ୍ତୁ ଶ୍ରେଷ୍ଠତମୋ ନୀଳାଦ୍ରିରପବର୍ଗଦଃ ।
ଚତୁର୍ଦ୍ଦେହସ୍ତିଷ୍ଠତୋହଂ ବୈ ଯତ୍ର ନୀଳମଣିମୟଃ ।୭୧।
ତସ୍ୟୋତ୍ତରସ୍ୟାଂ ଖ୍ୟାତଂ ବନମେକାମ୍ରକାହ୍ୱୟମ୍ ।
ପାର୍ବତ୍ୟା ଯତ୍ର ନିବସନ୍ନିର୍ବୃତ୍ତିଂ ପୁତ୍ରକ ।୭୨।

---

ଏବଂ ବାରାଣସୀ ପୁରୀକୁ ସ୍ଥିର ରଖିବାକୁ ଇଚ୍ଛା କରୁଅଛ, ତେବେ ମୋ ନାମରେ ବିଖ୍ୟାତ ଯେଉଁ ପୁରୁଷୋତ୍ତମ କ୍ଷେତ୍ର ଅଛି, ସେଠାକୁ ଗମନ କର । ଏହା ଦକ୍ଷିଣ ସମୁଦ୍ର ତୀର ଭାଗରେ ନୀଳପର୍ବତ ଦ୍ୱାରା ସୁଶୋଭିତ ଏବଂ ବିରଜମଣ୍ଡଳ ପର୍ଯ୍ୟନ୍ତ ଦଶଯୋଜନ ବିସ୍ତୀର୍ଣ୍ଣ ତଥା ଚିତ୍ରୋତ୍ପଳା ନଦୀ ପର୍ଯ୍ୟନ୍ତ କ୍ରମଶଃ ପବିତ୍ରତା ଜନକ । ସେଠାରୁ ଦକ୍ଷିଣ ସମୁଦ୍ର ପର୍ଯ୍ୟନ୍ତ ପ୍ରଦେଶଟିର ଏକପାଦ ପ୍ରକ୍ଷେପ ସ୍ଥାନକୁ ପରପର ସ୍ଥାନ ହିଁ ଅତ୍ୟନ୍ତ ଶ୍ରେଷ୍ଠ ଓ ନୀଳପର୍ବତ ମୁକ୍ତିଦାୟକ । ସେହି ସ୍ଥାନରେ ମୁଁ ନୀଳକାନ୍ତ-ମଣିମୟ ରୂପ ଚତୁର୍ଦ୍ଧେହ ଧାରଣକରି ରହିଅଛି । ତାର ଉତ୍ତର ଭାଗରେ ଏକାମ୍ର ନାମକ ସୁପ୍ରସିଦ୍ଧ କାନନ ବିସ୍ତୃତ ଅଛି । ହେ ପୁତ୍ର ପୁରାନ୍ତକ ! ତୁମ୍ଭେ ପାର୍ବତୀଙ୍କ ସହିତ ସେଠାକୁ ଯାଇ ନିର୍ଭୟରେ ବାସକର । ସମସ୍ତଲୋକର ସୃଷ୍ଟିକର୍ତ୍ତା ବ୍ରହ୍ମା ମୋର ଅନୁମତି କ୍ରମେ ତୁମ୍ଭଙ୍କୁ କୋଟିଲିଙ୍ଗର ରାଜତ୍ୱ ପଦରେ ଅଭିଷିକ୍ତ କରିବେ । ଏହି କାଶୀକ୍ଷେତ୍ରଭେ ସର୍ବତୀର୍ଥମୟ ମଣିକର୍ଣ୍ଣିକା ତୀର୍ଥ ଅଛି ବୋଲି ତୁମ୍ଭର ଯେଉଁ ଅହଙ୍କାର

ସ୍ତୁଜତା ସର୍ବଲୋକାନାଂ ସନ୍ନିବେଶାତ୍ତ୍ୱ ପ୍ରସ୍ପୃହା ।
ତଥାପି କୋଟିଲିଙ୍ଗାନାଂ ରାଜା ତ୍ୱମତ୍ରଷେଷ୍ୟସେ ।୭୩।
ସର୍ବତୀର୍ଥମୟଶ୍ଚୈବଂ ତୀର୍ଥଂ ସନ୍ନଣିକର୍ଣ୍ଣିକମ୍ ।
ଇହାହଙ୍କାରମୁତ୍ସୃଜ୍ୟ ବ୍ରଜ ତ୍ୱଂ ସପରିଚ୍ଛଦଃ ।୭୪।

ନାରଦ ଉବାଚ

ଇତ୍ୟୁକ୍ତୋ ବାସୁଦେବେନ ତ୍ର୍ୟମ୍ବକୋ ନତକନ୍ଧରଃ ।
କୃତାଞ୍ଜଳିପୁଟୋ ଭୂତ୍ୱା ପ୍ରୋବାଚ ମଧୁସୂଦନମ୍ ।୭୫।

ଶ୍ରୀ ମହାଦେବ ଉବାଚ

ଦେବ ଦେବ ଜଗନ୍ନାଥ ପ୍ରପନ୍ନାର୍ତ୍ତିହର ପ୍ରଭୋ ।
ତ୍ୱଦାଜ୍ଞାପାଳନଂ ଶ୍ରେୟଃ କାରଣଂ ମେ ଜଗତ୍ପ୍ରଭୋ ।୭୬।
ଯତ୍ତୁ ମୂଢ଼ତୟା ଦେବ ଅବଲେପଃ କୃତୋ ମୟା ।
ତବୈବାନୁଗ୍ରହସ୍ତତ୍ର ପ୍ରଭୋ ଶୃଙ୍ଖଳ୍ୟକାରଣମ୍ ।୭୭।

---

ତାହା ପରିତ୍ୟାଗ ପୂର୍ବକ ସମସ୍ତଙ୍କୁ ସଙ୍ଗରେ ନେଇ ସେଠାକୁ ଗମନ କର । ୭୪ । ନାରଦ କହିଲେ, ଭଗବାନ୍ ବାସୁଦେବ ଏହି କଥା କହିବା ପରେ ମହାଦେବ ସ୍କନ୍ଧଦେଶକୁ ଅବନତ କରି କୃତାଞ୍ଜଳି ପୂର୍ବରେ କହିଲେ—ହେ ଜଗନ୍ନାଥ ! ହେ ପ୍ରଭୋ ! ତୁମ୍ଭେ ଆଶ୍ରିତ ବ୍ୟକ୍ତିର କ୍ଳେଶ ବିନଷ୍ଟ କର । ହେ ଜଗତ୍ ପ୍ରଭୋ ! ଆପଣ ମୋର ମୂଳାଧାର । ଅତଏବ ଆପଣଙ୍କ ଆଦେଶ ପାଳନ କରିବା ହିଁ ମୋ ପକ୍ଷରେ ମଙ୍ଗଳ ଅଟେ । ହେ ଦେବ ! ମୁଁ ନିର୍ବୋଧତା ପ୍ରଯୁକ୍ତ ହୋଇ ଯେ ଅହଙ୍କାର କରିଅଛି, ତହିଁରେ ଆପଣଙ୍କର ପୂର୍ବକୃତ ଅନୁଗ୍ରହ ହିଁ ଶୃଙ୍ଖଳା ପ୍ରକାଶର କାରଣ । ହେ ଭଗବାନ୍ ! ପୁରୁଷୋତ୍ତମ କ୍ଷେତ୍ରକୁ ଗମନ କରିବା ପାଇଁ ଆପଣ ଆଦେଶ କରି ଅଛନ୍ତି । ତାହା ଶିରୋଧାର୍ଯ୍ୟ ପୂର୍ବକ ସେହି ମୁକ୍ତିପ୍ରଦ ପବିତ୍ର କ୍ଷେତ୍ରକୁ ମୁଁ ଗମନ କରିବି । ଅଦ୍ୟ ମୋତେ ଅନୁଗ୍ରହ ନିମିତ୍ତ ସମ୍ମତି ପ୍ରଦାନ କରନ୍ତୁ ଏବଂ ପୁରୁଷୋତ୍ତମର ଉତ୍ତର ଭାଗରେ ଥିବା ବିରଜ କ୍ଷେତ୍ରଟିକୁ ଆପଣ ପ୍ରତିପାଳନ କରନ୍ତୁ,

ଯଦାଦ୍ୱଶପି ଦେବେଶ ପ୍ରସ୍ଥାଣଂ ପୁରୁଷୋତ୍ତମେ ।
ତନ୍ମହ୍ନିକୃତ୍ୱା ଯାସ୍ୟାମି କ୍ଷେତ୍ରଂ ମୁକ୍ତିପ୍ରଦଂ ଶିବମ୍ ।୭୮।
ଅଭିସନ୍ଧିଂ କୁରୁ ତ୍ୱାଦ୍ୟ ମମାନୁଗ୍ରହକାରଣମ୍ ।
ପୁରୁଷୋତ୍ତମୋତ୍ତରଂ କ୍ଷେତ୍ରଂ ତ୍ୱମେବ ପରିପାଳୟ ।
ଯଥା ପୁନର୍ନେଦୃଶଂ ତଦ୍ ବିନାଶମୁପଯାସ୍ୟତି ।୭୯।

ନାରଦ ଉବାଚ

ଇତ୍ୟଥମେତତ୍ ପୁରା କ୍ଷେତ୍ରଂ ମହାଦେବେନ ନିର୍ମିତମ ।
ବଳଶ୍ରୀସହିତଂ ଦେବମର୍ଚ୍ଚୟନ୍ ପୁରୁଷୋତ୍ତମମ ।୮୦।
ଅତ୍ର ସାକ୍ଷାଦୁମାକାନ୍ତଃ ସ୍ଥାପିତଃ ପରମେଷ୍ଠିନା ।
ବୟଂ ତତ୍ର ବ୍ରଜିଷ୍ୟାମୋ ଦ୍ରକ୍ଷ୍ୟାମଃ ପୁରନାଶନମ୍ ।୮୧।
ଯଦେତତ୍ଥାମ୍ଭବଂ କ୍ଷେତ୍ରଂ ତମସୋ ନାଶନଂ ପରମ୍ ।
ରଜଃ ପକ୍ଷାଳନଂ ଶ୍ରେୟଃ ଖ୍ୟାତଂ ବିରଜମଣ୍ଡଳମ ।୮୨।

---

ଯଦ୍ଦ୍ୱାରା ପୁନରାୟ ଏହିରୂପ ଭବିଷ୍ୟତ୍ ଚକ୍ରଦ୍ୱାରା ତାହା ବିନଷ୍ଟ ନ ହେବ, ତାହା କରନ୍ତୁ । ନାରଦ କହିଲେ—ପୂର୍ବକାଳରେ ମହାଦେବ ବଳଦେବ, ଲକ୍ଷ୍ମୀ ଓ ଶ୍ରୀପୁରୁଷୋତ୍ତମଙ୍କୁ ପୂଜା କରି ତାଙ୍କର ସନ୍ତୋଷ ଉତ୍ପାଦନ ପୂର୍ବକ ଏହି କ୍ଷେତ୍ରଟି ନିର୍ମାଣ କରିଥିଲେ । ପିତାମହ ବ୍ରହ୍ମା ସାକ୍ଷାତ୍ ଉମାକାନ୍ତଙ୍କୁ ଏହି ସ୍ଥାନରେ ସ୍ଥାପନ କରିଥିଲେ । ଅତଏବ ଆମ୍ଭେମାନେ ସେହି ପବିତ୍ର ସ୍ଥାନକୁ ଗମନ କରି ପୁରରିପୁହରଙ୍କୁ ଦର୍ଶନ କରିବା । ୮୧ । ଏହି ଶମ୍ଭୁ କ୍ଷେତ୍ରଟି ତମ ଓ ରଜଗୁଣକୁ ବିନାଶ କରିବା ପାଇଁ ଅତ୍ୟନ୍ତ ଉତ୍କୃଷ୍ଟ । ଉକ୍ତ କାରଣରୁ ଏହାର ନାମ ବିରଜମଣ୍ଡଳ । ପୁରୁଷୋତ୍ତମ କ୍ଷେତ୍ରକୁ ସତ୍ତ୍ୱଗୁଣର ଉଦ୍ରେକ ହେତୁ ମୁକ୍ତିଦାୟକ ବୋଲିଯାଏ । ହେ ରାଜେନ୍ଦ୍ର ! ଅନ୍ୟାନ୍ୟ ଯେ ସମସ୍ତ କ୍ଷେତ୍ର ମୋକ୍ଷଦାୟକ ବୋଲି ବିଖ୍ୟାତ, ସେ ସମସ୍ତ କ୍ଷେତ୍ର ଏହି ସ୍ଥାନରେ ହିଁ ମୁକ୍ତିଦାନ କରନ୍ତି । ହେ ମହାରାଜ ! ଏହି କ୍ଷେତ୍ର ପାପଭାରାକ୍ରାନ୍ତ ମନୁଷ୍ୟ ମାନଙ୍କର

ସଦ୍ଭୋତ୍ ଲ୍ଲଙ୍ଘ୍ୟା ଖ୍ୟାତଂ ମୁକ୍ତିଦଂ ପୁରୁଷୋତ୍ତମମ୍ ।
ଯାବନ୍ତ୍ୟନ୍ୟାନି କ୍ଷେତ୍ରାଣି ମୁକ୍ତିଦାନି ଶ୍ରୁତାନି ତେ ।୮୩।

ତାନି ସର୍ବାଣି ରାଜେନ୍ଦ୍ର ଦଦତେ ମୁକ୍ତିମତ୍ର ବୈ ।୮୪।

ଏତତ୍ତ୍ କ୍ଷେତ୍ରଂ ମହାରାଜ ଦୁଷ୍କୃତାବିଲଚେତସାମ୍ ।
ନ ବିଶ୍ୱାସପଥଂ ଯାତି ରହସ୍ୟଂ ଚକ୍ରପାଣିନଃ ।୮୫।

ଶ୍ରୀ ଜୈମିନିରୁବାଚ

ନାରଦସ୍ୟ ବଚଃ ଶ୍ରୁତ୍ୱା ପ୍ରହୃଷ୍ଟହୃଦୟୋ ନୃପଃ ।
ଉବାଚ ମୁନିଶାର୍ଦ୍ଦୂଲଂ ବିସ୍ମୟୋତ୍ଫୁଲ୍ଲଲୋଚନଃ ।

ଶ୍ରୀ ଇନ୍ଦ୍ରଦ୍ୟୁମ୍ନ ଉବାଚ

ସାଧୁ ତେ କଥିତଂ ବ୍ରହ୍ମନ୍ କ୍ଷେତ୍ରଂ ପରମପାବନମ୍ ।
ଯତ୍ରୋମାପତିରାସ୍ତେଽସୌ ପାବକଃ ପୁରୁଷୋତ୍ତମଃ ।୮୬।
ଅବଶ୍ୟଂ ତତ୍ର ଗନ୍ତାସ୍ମଃ ପନ୍ଥା ଯଦ୍ୟପି ବକ୍ରଭୂଃ ।
ହର୍ଷିତ୍ୱେଷ୍ଟସଫଳପ୍ରାପ୍ତୌ ଯଦିଦଂ କାରଣଂ ମହତ୍ ।୮୭।

---

ବିଶ୍ୱାସ ପଥରେ ଉପସ୍ଥିତ ହୁଏନାହିଁ । ସୁତରାଂ ଚକ୍ରପାଣିଙ୍କର ଏହା ଗୋପନୀୟ କ୍ଷେତ୍ର ବୋଲି ପ୍ରସିଦ୍ଧ । ଶ୍ରୀ ଜୈମିନି କହିଲେ— ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ଏହିକଥା ଶ୍ରବଣକରି ବିସ୍ମୟୋତ୍ଫୁଲ୍ଲ ନେତ୍ରରେ ହୃଷ୍ଟାନ୍ତଃକରଣ ହୋଇ ଶ୍ରୀ ନାରଦଙ୍କୁ କହିବାକୁ ଲାଗିଲେ । ଶ୍ରୀ ଇନ୍ଦ୍ରଦ୍ୟୁମ୍ନ କହିଲେ— ହେ ବ୍ରହ୍ମନ୍ ! ଆପଣ ଅତି ଉତ୍ତମ କଥା କହି ଅଛନ୍ତି । ସେହି କ୍ଷେତ୍ର ପରମ ପବିତ୍ରତାଜନକ ଅଟେ । ସେହି ସ୍ଥାନରେ ପବିତ୍ର ଜନକ ପୁରୁଷୋତ୍ତମ ଓ ଉମାପତି ଅବସ୍ଥାନ କରିଅଛନ୍ତି । ଅତଏବ ଯଦିଚ ଅତ୍ୟନ୍ତ କୁଟିଳ ମାର୍ଗରେ ଯିବାକୁ ହୁଏ, ତଥାପି ଆମ୍ଭେମାନେ ସେ ସ୍ଥାନକୁ ନିଶ୍ଚୟ ଗମନ କରିବା । ଆମ୍ଭମାନଙ୍କର ଉଦ୍ଦେଶ୍ୟ ମୋକ୍ଷପ୍ରାପ୍ତି ନିମିତ୍ତ ସେହି

ଶ୍ରୀ ଜୈମିନିରୁବାଚ

ତତସ୍ତୌ-ମୁନି ଭୂପାଲୌ ମଧ୍ୟାହ୍ନସମୟେ ଦ୍ୱିଜାଃ ।
ପ୍ରାପତୁଃ ସଦଳୌ କ୍ଷେତ୍ରମେକାମ୍ରବନସଂଜ୍ଞିତମ୍ ।୮୮।
ବିନ୍ଦୁତୀର୍ଥେ ନୃପଃ ସ୍ନାତ୍ୱା ତୀରସ୍ଥଂ ପୁରୁଷୋତ୍ତମମ୍ ।
ସମ୍ପୂଜ୍ୟ ବିଧିବଦ୍ ଯାତଃ କୋଟୀଶ୍ୱର ମହାଳୟମ୍ ।୮୯।
ତଦ୍ଦ୍ୱାରେସମ୍ୟଗାଚମ୍ୟସ୍ତତ୍ପ୍ରୀତ୍ୟୈ ପ୍ରଦଦୌ ନୃପଃ ।
ଗଜାଶ୍ୱଧନରତ୍ନାନି ବସ୍ତ୍ରାଲଙ୍କରଣାନି ଚ ।୯୦।
ଦ୍ୱିଜେଭ୍ୟଃ ପ୍ରଦଦୌ ରାଜା ସାତ୍ତ୍ୱିକଂ ଧର୍ମମାସ୍ଥିତଃ ।
ଲିଙ୍ଗଂ ତ୍ରିଭୁବନେଶଂ ତଂ ମହାସ୍ନାନେନ ପୂଜୟନ୍ ।୯୧।
ଅତୁଲାଂ ପ୍ରୀତିମାଲେଭେ ବିଷ୍ଣୋରଦ୍ୱୈତଦର୍ଶନାତ୍ ।
ସ୍ତୁତ୍ୱା ପ୍ରଣମ୍ୟ ଭକ୍ତ୍ୟାସୌ ବୀଣସ୍ୟା ସ୍ତ୍ରେମଗାଥ୍ୟ ଚ ।୯୨।

---

କ୍ଷେତ୍ର ହିଁ ଏକମାତ୍ର ପ୍ରଧାନ । ଶ୍ରୀ ଜୈମିନି କହିଲେ—ତଦନନ୍ତର ସେ ନାରଦମୁନି ଓ ଭୂପାଳ ସୈନ୍ୟ ମାନଙ୍କ ସହିତ ମଧ୍ୟାହ୍ନ ସମୟରେ ଏକାମ୍ର ବନ ନାମକ କ୍ଷେତ୍ରରେ ଉପସ୍ଥିତ ହେଲେ । ଶ୍ରୀ ନରପତି ବିନ୍ଦୁତୀର୍ଥରେ ସ୍ନାନ କରି ତୀରସ୍ଥ ପୁରୁଷୋତ୍ତମଙ୍କୁ ଯଥାବିଧି ପୂଜା ପୂର୍ବକ କୋଟି ଲିଙ୍ଗେଶ୍ୱର ଶିବଙ୍କ ପ୍ରଧାନ ଆଳୟରେ ପ୍ରବେଶ କଲେ । ତାଙ୍କ ଗୃହଦ୍ୱାରରେ ସମ୍ୟକ ପ୍ରକାର ଆଚମନ କରି ସାତ୍ତ୍ୱିକ ଭାବେ ତାଙ୍କ ପ୍ରୀତି ନିମନ୍ତେ ବହୁତର ଗଜ, ଅଶ୍ୱ, ଧନ, ରତ୍ନ ଓ ବସ୍ତ୍ର ଅଳଙ୍କାର ପ୍ରଭୃତି ବ୍ରାହ୍ମଣ ମାନଙ୍କୁ ପ୍ରଦାନ କଲେ ଏବଂ ଶିବ ତଥା ବିଷ୍ଣୁଙ୍କୁ ଅଭେଦ ଦର୍ଶନରେ ତ୍ରିଭୁବନେଶ୍ୱର ଲିଙ୍ଗଙ୍କୁ ମହାସ୍ନାନାଦି କ୍ରମେ ପୂଜନ କରି ପରମପ୍ରୀତି ଲାଭ କଲେ । ରାଜା, ଦେବନାରାୟଣଙ୍କୁ ଭକ୍ତିପୂର୍ବକ ସ୍ତବପାଠ, ପ୍ରଣାମ ଓ ବୀଣାବାଦନ ପୂର୍ବକ ସ୍ତୁତି କରି ବୃଷଭବାହନଙ୍କୁ ବନ୍ଦନ ପୂର୍ବକ ଏକପାର୍ଶ୍ୱରେ କୃତାଞ୍ଜଳିପୁଟ ହୋଇ ଅନନ୍ୟ ଚିତ୍ତରେ ଅବସ୍ଥାନ

କୃତାଞ୍ଜଳିପୁଟଃ ଦେବ ପ୍ରସାଦନକୃତୋଦ୍ୟମଃ ।
ଅନନ୍ୟମନସା ତସ୍ଥୌ ଚନ୍ତୟନ୍ ବୃଷଭଧ୍ୱଜମ୍ ।୧୩।
ତତଃ ପ୍ରସନ୍ନୋ ଭଗବାନ୍ ତ୍ର୍ୟମ୍ବକଃ ପରମେଶ୍ୱରଃ ।
ସାକ୍ଷାନ୍ନୃପମୁବାଚେଦଂ ସ୍ପଷ୍ଟାକ୍ଷରପଦଂ ଦ୍ୱିଜାଃ ।୧୪।

ଶ୍ରୀ ମହାଦେବ ଉବାଚ

ଇନ୍ଦ୍ରଦ୍ୟୁମ୍ନ ମହାରାଜ ତ୍ୱାଦୃଶୋ ବୈଷ୍ଣବୋ ଭୁବି ।
ଦୁର୍ଲଭଃ ଖଳୁ ତେ ବାଞ୍ଛା ଅତସ୍ତତ୍ର ସମ୍ଭବିଷ୍ୟତି ।୧୫।
ଇତ୍ୟୁକ୍ତ୍ୱାନ୍ତର୍ଦଧେ ଶମ୍ଭୁଃ ପଶ୍ୟତସ୍ତୁ ମହୀକ୍ଷିତଃ ।
ନାରଦଂ ପୁନରପ୍ୟେବଂ ଯଥାଦିଷ୍ଟଂ ସ୍ୱୟମ୍ଭୁବା ।
ତତ୍ରକଳ୍ପସ୍ୱ ମହାଭାଗ ବାଜିମେଧପୁରଃସରମ୍ ।୧୬।
ବିଷ୍ଣୋଃ କଳେବରେ ତସ୍ମିନ୍ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ ।
ଅନ୍ତର୍ବେଦୀ ମହାପୁଣ୍ୟା ବିଷ୍ଣୋର୍ହୃଦୟସନ୍ନିଭା ।୧୭।
ତସ୍ୟାଃ ସଂରକ୍ଷଣାର୍ଥଂ ସ୍ଥାପିତୋ ବିଷ୍ଣୁନାଷ୍ଟଧା ।୧୮।

---

କଲେ । ହେ ଦ୍ୱିଜଗଣ ! ତଦନନ୍ତର ସେହି ତ୍ରିଭୁବନ ଦର୍ଶୀ ଭଗବାନ ପରମେଶ୍ୱର ପ୍ରସନ୍ନ ହୋଇ ସାକ୍ଷାତ୍ ନରପତିଙ୍କୁ ସ୍ପଷ୍ଟ ବାକ୍ୟରେ କହିଲେ—ହେ ଇନ୍ଦ୍ରଦ୍ୟୁମ୍ନ ମହାରାଜ ! ତୁମ୍ଭ ସଦୃଶ ବିଷ୍ଣୁଭକ୍ତ ପୃଥିବୀରେ ଦୁର୍ଲଭ । ଅତଏବ ତୁମ୍ଭର ନିଶ୍ଚୟ ମନୋ-ବାଞ୍ଛା ପୂର୍ଣ୍ଣ ହେବ । ୧୫ । ଭଗବାନ ଶମ୍ଭୁ ଏହିକଥା କହି ରାଜାଙ୍କ ନୟନପଥରୁ ଅନ୍ତର୍ହିତ ହୋଇଗଲେ । ପୁନରାୟ ନାରଦଙ୍କୁ କହିଲେ, ହେ ମହାଭାଗ ! ସ୍ୱୟଂଭୂ ଯାହା ଆଦେଶ କରିଅଛନ୍ତି; ଆପଣ ସେଠାରେ ଅଶ୍ୱମେଧ ଯଜ୍ଞ ସମ୍ପାଦନର କଳ୍ପନା କରନ୍ତୁ । ସେହି ପୁରୁଷୋତ୍ତମ କ୍ଷେତ୍ରଟି ବିଷ୍ଣୁଙ୍କର କଳେବର ସ୍ୱରୂପ ଏବଂ ତହିଁରେ ଯେଉଁ ଅନ୍ତର୍ବେଦୀ, ତାହା ବିଷ୍ଣୁଙ୍କର ହୃଦୟ ସ୍ୱରୂପ । ମୁଁ ସେଠାରେ ସେହି ଅନ୍ତର୍ବେଦୀଙ୍କୁ ରକ୍ଷା କରିବା ନିମନ୍ତେ

ଶଙ୍ଖାକୃତେରଗ୍ରଭାଗେ ନୀଳକଣ୍ଠୋଽହମାସ୍ଥିତଃ ।
ଦୁର୍ଗୟା ସହ ବିପ୍ରେନ୍ଦ୍ର ତନ୍ନେମଂ ନୃପଞ୍ଚଂନୟ ।୯୯।
ଅନ୍ତର୍ହିତଃ କଳ୍ପିଦାନୀଂ ନୀଳରନ୍ତନୁର୍ହରିଃ ।
ତତ୍ର ଶ୍ରୀ ନରସିଂହସ୍ୟ କ୍ଷେତ୍ରଂ କୁରୁ ମମାଜ୍ଞୟା ।୧୦୦।
ତତ୍ର ନଃ ସନ୍ନିଧୌ ବାଜିମେଧେନ ଯଜତାମୟମ୍ ।
ସହସ୍ରେଣ ନୃପଶ୍ରେଷ୍ଠସ୍ତଦନ୍ତେ ତରୁମଦ୍ଭୁତମ୍ ।୧୦୧।
ଦର୍ଶୟୈନଂ ନୃପଶ୍ରେଷ୍ଠଂ ବ୍ରହ୍ମରୂପମକଲ୍ମଷମ୍ ।
ଚତସ୍ରଃ ପ୍ରତିମାସ୍ତେନ ବିଶ୍ୱକର୍ମା ଘଟିଷ୍ୟତି ।୧୦୨।
ତାସାଂ ପ୍ରତିଷ୍ଠିତୌ ବ୍ରହ୍ମା ସ୍ୱୟମେବାଗମିଷ୍ୟତି ।
ଯଥାୟଂ କ୍ଷୀଣପାପଃ ସ୍ୟାଦ୍ ବାଜିମେଧୈର୍ହିଜନ୍ ହରମ୍ ।୧୦୩।

---

ବିଷ୍ଣୁଙ୍କ ଦ୍ୱାରା ଅଷ୍ଟ ପ୍ରକାରେ ସ୍ଥାପିତ ହୋଇଛି । ସେହି ବେଦୀର ଆକୃତି ଶଙ୍ଖ ସଦୃଶ । ମୁଁ ତାର ଅଗ୍ରଭାଗରେ ଦୁର୍ଗାଙ୍କ ସହିତ ନୀଳକଣ୍ଠ ନାମରେ ଅବସ୍ଥାନ କରିଅଛି । ହେ ବିପ୍ରେନ୍ଦ୍ର ନାରଦ ! ଆପଣ ଏହି ନରପତିଙ୍କୁ ସେହି କ୍ଷେତ୍ରକୁ ନେଇ ଯାଆନ୍ତୁ । ନୀଳକାନ୍ତିମୟ ହରି ବର୍ତ୍ତମାନ କଷ୍ଟି ଭାବରେ ଅନ୍ତର୍ହିତ ହୋଇଅଛନ୍ତି । ଅତଏବ ମୋର ଏହି ଅନୁମତି କ୍ରମେ ସେଠାରେ ଶ୍ରୀ ନୃସିଂହଦେବଙ୍କ କ୍ଷେତ୍ର ନିର୍ମାଣ କରନ୍ତୁ । ଏହି ନରପତି ସେଠାରେ ମୋ ନିକଟରେ ସହସ୍ର ଅଶ୍ୱମେଧ ଯଜ୍ଞ ସମାଧା କରନ୍ତୁ । ତଦନନ୍ତର ଏହାଙ୍କୁ ନିର୍ମଳ ବ୍ରହ୍ମରୂପ ଅଦ୍ଭୁତ ବୃକ୍ଷକୁ ମଧ୍ୟ ଦର୍ଶନ କରାନ୍ତୁ । ବିଶ୍ୱକର୍ମା ଏହି ବୃକ୍ଷଦ୍ୱାରା ଚାରିଗୋଟି ମୂର୍ତ୍ତି ଗଠନ କରିବେ ଏବଂ ସେହି ପ୍ରତିମାଗୁଡ଼ିକୁ ପ୍ରତିଷ୍ଠା କରିବା ନିମନ୍ତେ ସେଠାକୁ ସ୍ୱୟଂ ବ୍ରହ୍ମା ଆଗମନ କରିବେ । ଏହି ନରପତି ସେଠାରେ ସହସ୍ର ବର୍ଷ ଅବସ୍ଥାନ ପୂର୍ବକ ସହସ୍ର ଅଶ୍ୱମେଧ

ଉଷ୍ଣନ୍ଦ ସହସ୍ରଂ ବୈ ତଦନ୍ତେ ଲୋକସ୍ୟୁଷ୍ୟତ ।
ସମସ୍ତ ଜଗଦାଧାରଂ ସର୍ବକଲ୍ମଷନାଶନମ୍ ।୧୦୪।

ଦାରବୀଂ ତନୂମାସ୍ଥାୟ ଦର୍ଶନାଦପବର୍ଗଦମ୍ ।
ନ ତସ୍ୟ ଚରିତଂ ବେତ୍ତି ବ୍ରହ୍ମାହଂ ତ୍ୱଞ୍ଚ ନାରଦ ।୧୦୫।

ଆଜ୍ଞାନୁଷ୍ଠାନତୋ ଭକ୍ତ୍ୟା ପ୍ରସୀଦତି ସ କେବଳମ୍ ।
ନାରଦୋଽପି ମହାଦେବଂ ପ୍ରଣିପତ୍ୟ ଜଗଦ୍‌ଗୁରୁମ୍ ।୧୦୬।

ଉବାଚ ପ୍ରାଞ୍ଜଳିର୍ଭୂତ୍ୱା ଯଦାଦିଷ୍ଟଂ ତ୍ୱୟା ପ୍ରଭୋ ।
ପିତାମହୋଽପି ମାମିତ୍ଥଂ ନିର୍ଦ୍ଦିଦେଶାସ୍ୟ କଳ୍ପନମ୍ ।୧୦୭।

ପିତାମହସ୍ତ୍ୱଂ ନାଥ ନୋ ଭିନ୍ନଃ ପରମାତ୍ମନଃ ।
ନୃପତେରସ୍ୟ ଭାଗ୍ୟର୍ଦ୍ଧିରୀଦୃଶୀ ଯତ୍ କୃତେ ବିଭୋ ।୧୦୮।

---

ଯଜ୍ଞ ଦ୍ୱାରା ଶ୍ରୀ ହରିଙ୍କୁ ପୂଜା କଲେ ନିଷ୍ପାପ ହୋଇଯିବେ । ତାହା-
ପରେ ନିଖିଳ ଜଗତର ଆଶ୍ରୟ ପାପରାଶିବିନାଶୀ ଅପବର୍ଗଦାତା
ବିଷ୍ଣୁଙ୍କ ଦାରୁମୟୀ ମୂର୍ତ୍ତିଙ୍କୁ ଅବଲୋକନ କରିପାରିବେ । ସେହି
ହରିଙ୍କ ଚରିତ କି ବ୍ରହ୍ମା, କି ମୁଁ, କି ତୁମ୍ଭେ କେହିହେଲେ ଅବଗତ
ନୁହନ୍ତି । କେବଳ ଭକ୍ତିଯୋଗରେ ଆଜ୍ଞା ପ୍ରତିପାଳନ କଲେ ସେ
ପ୍ରସନ୍ନ ହୁଅନ୍ତି । ଶ୍ରୀ ନାରଦ ଜଗଦ୍‌ଗୁରୁ ମହାଦେବଙ୍କୁ ପ୍ରଣିପାତ
ପୂର୍ବକ ବଦ୍ଧାଞ୍ଜଳି ହୋଇ କହିଲେ—ହେ ପ୍ରଭୋ ! ଆପଣ ଯାହା
ଆଦେଶ କଲେ ପିତାମହ ବ୍ରହ୍ମା ମୋତେ ଏହି ପ୍ରକାର କଳ୍ପନା
କରିବାକୁ ନିର୍ଦ୍ଦେଶ କରିଥିଲେ । ହେ ନାଥ ! ଆପଣ ବା ପିତାମହ
ସେହି ପରମାତ୍ମା ବିଷ୍ଣୁଙ୍କଠାରୁ ଭିନ୍ନ ନୁହନ୍ତି । ସେହି କାରଣରୁ
ଏ ନରପତିଙ୍କର ଭାଗ୍ୟ ସମ୍ପତ୍ତି ଏପରି ହୋଇଅଛି । ୧୦୮ ।

ଅଗୋଚରୋଽସୌ ମନସସ୍ତ୍ରୟାଣାମପ୍ୟନୁଗ୍ରହଃ ।
ଯତ୍ପ୍ରସଙ୍ଗେନ ତରଣଂ ଭବାବ୍ଧେରପି ଦୁଷ୍କୃତାମ୍ ।୧୦୯।
ଅଚିନ୍ତ୍ୟମହିମା ହ୍ୟେଷ ଭଗବାନ୍ ଭୂତଭାବନଃ ।
ନ ବୁଦ୍ଧିଗୋଚରେ ଭକ୍ତ୍ୟାଭାବତ୍ୟା ପ୍ରୀୟତେ ହ୍ୟସୌ ।୧୧୦।
ଚିତ୍ରମତ୍ର ତୁ ତିଷ୍ଠନ୍ତି ଦେବା ନରବରାଦୟଃ ।
କ୍ଷୁଦ୍ରୋଽପି ଲଭତେ ମୁକ୍ତିମନାୟାସେନ କର୍ମଣା ।୧୧୧।
ଗବ୍ୟୋପଜୀବା ଗୋପ୍ୟସ୍ତା ବନସ୍ଥୈରଗୃହୋଷିତାଃ ।
ଅରଣ୍ୟଜୀବନାଃ ପ୍ରାପୁର୍ମୁକ୍ତିଂ କାମୋପଭୋଗତଃ ।୧୧୨।
ଦ୍ରୁହ୍ୟନ୍ନିରନ୍ତରଂ ପ୍ରାପ ଶିଶୁପାଳଃ ସଭାନ୍ତରେ ।
ବ୍ୟାଧୋ ହୃଦସ୍ପୃଗାବିଧ୍ୟ ଗତିଂ ପ୍ରାପ ସୁଦୁର୍ଲଭମ୍ ।୧୧୩।

---

ଆପଣମାନଙ୍କର ଅର୍ଥାତ୍ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ( ଯୁଗପତ୍ ଅନୁକମ୍ପା ) ମନର ଅଗୋଚର ବୋଲିବାକୁ ହେବ । ସେହି-ମାନଙ୍କର ପ୍ରସଙ୍ଗରେ ଦୁଷ୍କୃତି ପରାୟଣ ବ୍ୟକ୍ତିମାନେ ଭବସାଗରରୁ ଉତ୍ତୀର୍ଣ୍ଣ ହେବା ପାଇଁ ସମର୍ଥ ହୋଇଥାନ୍ତି । ଭୂତଭାବନ ଭଗବାନ ବିଷ୍ଣୁଙ୍କର ମହିମା ଅଚିନ୍ତନୀୟ । ସେ (ଭଗବାନ) ଯେଉଁପ୍ରକାର ଭକ୍ତିରେ ପ୍ରୀତିଲାଭ କରନ୍ତି, ତାହାମଧ୍ୟ ବୁଦ୍ଧିର ଆଗୋଚର । ୧୧୦ । କି ଆଶ୍ଚର୍ଯ୍ୟ ! ଦେଖ, କେତେ କେତେ ଦେବବୃନ୍ଦ ଏବଂ ପ୍ରଧାନ ମନୁଷ୍ୟଗଣ ଏହି ଭୁବନରେ ଅବସ୍ଥାନ କରି ମଧ୍ୟ ଅତ୍ୟନ୍ତ କ୍ଷୁଦ୍ରବ୍ୟକ୍ତି ଅନାୟାସରେ କର୍ମଦ୍ୱାରା ଭଗବାନ ବିଷ୍ଣୁଙ୍କୁ ସନ୍ତୁଷ୍ଟ କରି ମୁକ୍ତିଲାଭ କରିଅଛନ୍ତି । ୧୧୧ । ସେହି ସମସ୍ତ ଗବ୍ୟୋପଜୀବୀ (ଗୋସେବା ଦ୍ୱାରା ଯେଉଁମାନେ ଜୀବିକା ନିର୍ବାହ କରନ୍ତି) ଗୋପିକାଗଣ ଚର୍ଣ୍ଣଶାଳାରେ ଅବସ୍ଥାନ ପୂର୍ବକ ଅରଣ୍ୟଜାତ ଫଳମୂଳଦ୍ୱାରା ଜୀବନ ଧାରଣ କରି ଏକମାତ୍ର କାମୋପଭୋଗରେ ମୁକ୍ତିଲାଭ କରିଅଛନ୍ତି । ୧୧୨ । ଦୁର୍ଦ୍ଦାନ୍ତ ଶିଶୁପାଳ ନିରନ୍ତର ବିଦ୍ରୋହ ଆଚରଣ କରି ମଧ୍ୟ ସେହି ଭଗବାନଙ୍କୁ ସଭା ମଧ୍ୟରେ ମୁକ୍ତି ପ୍ରାପ୍ତ ହୋଇଅଛି । ବ୍ୟାଧ ମଧ୍ୟ ହୃଦସ୍ପୃକ୍ ବିଦ୍ଧ କରି ଶେଷରେ ଅତ୍ୟନ୍ତ ଦୁର୍ଲଭ ଗତି ଲାଭ କଲା । ୧୧୩ ।

ବସ୍ତ୍ରାକର୍ଷଂ ଗୃହଂ ନୀତ୍ୱା କୁବ୍‌ଜୟୈନଂ ବୁଭୁଜେ ପୁରା ।
ଯଂ ଧ୍ୟାନଲୟମାପନ୍ନା ଲଭନ୍ତେ ନ ସୁରର୍ଷୟଃ ।୧୧୪।
ଗୃଣ୍ଡୀଳାୟ ଦଦୌ ମୁକ୍ତିଂ ଦୂରସ୍ଥାୟାପି ନୋ ପୁନଃ ।
ଆସନ୍ନାୟାନ୍ତଭକ୍ତାୟ ଶ୍ରୋତ୍ରିୟାୟ ପୁରା ବିଭୁଃ ।୧୧୫।
ମାୟାଭିର୍ବଞ୍ଚୟେତ୍ତ୍ୱାଂ ହି ପିତାମହମପି ପ୍ରଭୁଃ ।
ତସ୍ମୈ ଦୁଃଖବହୁଲାସ୍ତପୋଭିର୍ଦେହବନ୍ଧନାଃ ।୧୧୬।
ଗୌତମାଦ୍ୟା ବ୍ରହ୍ମଚର୍ଯ୍ୟନିଷ୍ଠାଃ କଳ୍ପାନ୍ତବାସିନଃ ।
ଇଦୃକ୍ ତାଦୃକ୍ ପରିଚ୍ଛେଦ ଗୋଚରଂ ନାସ୍ୟ ଚେଷ୍ଟିତମ୍ ।୧୧୭।
ବ୍ୟବସାୟେନ ବହୁନା କାଲେନ ମହତା ତଥା ।
ନିର୍ଣ୍ଣେତୁଂ ଶକ୍ୟତେ ନାସ୍ୟ ଚରିତଂ ବା ସୁମେଧସା ।୧୧୮।

---

ପୂର୍ବକାଳରେ କୁବୁଜା ବସ୍ତ୍ରାକର୍ଷଣ ପୂର୍ବକ ନିଜ ଗୃହରେ ଉପଭୋଗ କରିବାକୁ ସମର୍ଥ ହେବା ବେଳେ, ସୁରନାରୀମାନେ ଯାବଜ୍ଜୀବନ ନିରନ୍ତର ଧ୍ୟାନ କରି ମଧ୍ୟ ତାହାଙ୍କୁ (ଭଗବାନଙ୍କୁ) ପ୍ରାପ୍ତ ହୋଇପାରନ୍ତି ନାହିଁ । ୧୧୪ । ପୂର୍ବକାଳରେ ସେ (ଭଗବାନ) ଦୂରସ୍ଥିତ ଗୃଣ୍ଡୀଳକୁ ମଧ୍ୟ ମୁକ୍ତିଦାନ କରିଥିଲେ, କିନ୍ତୁ ଆସନ୍ନ ଓ ଅନ୍ତଭକ୍ତ ଶ୍ରୋତ୍ରିୟଙ୍କୁ ମଧ୍ୟ ବଞ୍ଚନା କରିଥିଲେ । ସେହି ପ୍ରଭୁ ମାୟାଦ୍ୱାରା ଆପଣଙ୍କୁ ଓ ପିତାମହ ବ୍ରହ୍ମାଙ୍କୁ ବଞ୍ଚନା କରନ୍ତି । ଗୌତମ ପ୍ରଭୃତି ଋଷିଗଣ ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ ପୂର୍ବକ ତାଙ୍କ ପ୍ରାପ୍ତି ନିମନ୍ତେ ତପସ୍ୟା କରନ୍ତି, ଅଥଚ ତଦ୍ଦ୍ୱାରା ବହୁଦୁଃଖ ଶଙ୍କୁଳ ଦେହ ବନ୍ଧନ ଧାରଣରେ କଳ୍ପାନ୍ତବାସୀ ହୋଇଅଛନ୍ତି । ଅଧିକ କଅଣ କହିବ ? ଅତଏବ ବୁଦ୍ଧିମାନ ବ୍ୟକ୍ତିମାନେ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ପ୍ରଚେଷ୍ଟା କରି ଭଗବାନଙ୍କ ଚରିତ ନିର୍ଣ୍ଣୟ କରିବାରେ ସମର୍ଥ ହୁଅନ୍ତି ନାହିଁ । ୧୧୭। ଯଦ୍ୟପି ଜ୍ଞାନିମାନଙ୍କ ମୁକ୍ତି ନିମନ୍ତେ ପରମାର୍ଥ ଶାସ୍ତ୍ରରେ ଯେଉଁ ବହୁବିଧ ମାର୍ଗ ରହିଅଛି, ତାହାଦ୍ୱାରା ମୋକ୍ଷପଥ ଅନୁସରଣ କରାଯାଇ ପାରିବ ।

ଉପାୟା ବହବଃ ସନ୍ତି ଯେ ଶାସ୍ତ୍ରପରନ୍ଦର୍ଶିତାଃ ।
ବନ୍ଦୁଷାଂ ମୋଚନାୟେହ ବନ୍ଧୁଶସ୍ତେ ଯତନ୍ତି ବୈ ।୧୧୯।

ସର୍ବେଷାମୁତ୍ତମୋପାୟୋ ବସତଃ ପୁରୁଷୋତ୍ତମେ ।
ଅବଶ୍ୟଂ ସ୍ୱାମିସାଯୁଜ୍ୟଂ ପ୍ରାପ୍ନୁବନ୍ତି ସୁସଖା ଯଥା ।୧୨୦।

ତତେନଂ ମାୟିନଂ ପ୍ରାପ୍ତୁମୁପାୟୋ ନାନ୍ୟସାଧକଃ ।
ସ୍ୱୟଂ ବିଧାୟ ଭବଣା କ୍ଷେତ୍ରବାସଃ ସୁରକ୍ଷିତଃ ।
ଇନ୍ଦ୍ରଦ୍ୟୁମ୍ନପ୍ରସଙ୍ଗେନ ଜାୟତେ ସାର୍ବଲୌକିକଃ ।
ତଦାଜ୍ଞାପୟ ଦେବେଶ ଗୃହୀତ୍ୱୈନଂ ବଳାନ୍ୱିତମ୍ ।୧୨୧।

ଉପତ୍ୟକାୟାଂ ସଂସ୍ଥାପ୍ୟ ଧାକ୍ଷୟିତ୍ୱା ମହାନ୍ତରେ
ଆଗମିଷ୍ୟାମି ପାଦାବ୍ଜସମୀପନ୍ତେ ବୃଷଧ୍ୱଜ ।୧୨୨।

---

ତଥାପି ସେହି ସମସ୍ତ ଉପାୟ ଅପେକ୍ଷା ଏକମାତ୍ର ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବା ହିଁ ପ୍ରଧାନ ଉପାୟ, ଏହି ଉପାୟଟି ନିଜର ସଖା ନ୍ୟାୟରେ ନିଶ୍ଚୟ ସ୍ୱାମୀ ସାଯୁଜ୍ୟ ଅର୍ଥାତ୍ ବିଷ୍ଣୁ-ସାଯୁଜ୍ୟ ପ୍ରାପ୍ତ କରାଇ ଦିଅନ୍ତି । ୧୨୦ । ଅତଏବ ମାୟାବୀ ବିଷ୍ଣୁଙ୍କୁ ପ୍ରାପ୍ତି ହେବା ନିମନ୍ତେ ଏହା ଏକ ବିଘ୍ନଶୂନ୍ୟ ଉପାୟ ରହିଅଛି । ଶ୍ରୀହରି ସ୍ୱୟଂ ହିଁ କ୍ଷେତ୍ରରୂପ ବାସସ୍ଥାନ ନିର୍ମାଣ ପୂର୍ବକ ଅତ୍ୟନ୍ତ ଯତ୍ନ ସହ ରକ୍ଷା କରିଅଛନ୍ତି, ବର୍ତ୍ତମାନ ଶ୍ରୀଇନ୍ଦ୍ରଦ୍ୟୁମ୍ନ ନରପତିଙ୍କ ପ୍ରସଙ୍ଗରେ ଏହି କ୍ଷେତ୍ରଟି ସମସ୍ତ ଲୋକଙ୍କର ବିଦିତ ହୋଇଅଛି । ଅତଏବ ହେ ଦେବେଶ୍ୱର ବୃଷଧ୍ୱଜ ! ଆପଣ ଆଦେଶ କରନ୍ତୁ । ମୁଁ ଏହାଙ୍କୁ ସୈନ୍ୟ ସାମନ୍ତ ସହିତ ସେହି ନୀଳ ପର୍ବତର ଉପତ୍ୟକା ଭୂମିରେ ସଂସ୍ଥାପନପୂର୍ବକ ମହା-ଯଜ୍ଞରେ ଦୀକ୍ଷିତ କରି ପୁନରାୟ ଆପଣଙ୍କର ଶ୍ରୀଚରଣ ସମୀପକୁ ଆଗମନ କରିବି । ୧୨୨ ।

ଶ୍ରୀ ଜୈମିନିରୁବାଚ

ତଥେତ୍ୟୁକ୍ତ୍ୱା ମହାଦେବଃ କ୍ଷଣାଦନ୍ତର୍ଦଧେ ମୁନେଃ ।
ସୋଽପି ଋଷିର୍ଲ୍ଲୋ ରଥେ ତିଷ୍ଠନ୍ ପ୍ରଯଯୌ କ୍ଷେତ୍ରମୁତ୍ତମମ୍ ।୧୨୩।
ଦ୍ୱିତୀୟେଽହ୍ନି କପୋତେଶସ୍ଥଲୀମାସେଦିବାନ୍ ନୃପଃ ।
ଦୈର୍ଘ୍ୟାୟାମ-ସମାଯୁକ୍ତାଂ ଜଳଧାରଦ୍ରୁମାକୁଳାମ୍ ।୧୨୪।
ବିଲ୍ୱେଶପୂର୍ବସୀମାୟାଂ ସମୁଦ୍ରତଟମାଶ୍ରିତଃ ।
ସେନାବାସାୟ ଯୋଗ୍ୟାଂ ତାଂ ମନ୍ତ୍ରିଣା ସନ୍ନିବେଦିତାମ୍ ।୧୨୫।
ଯଥାସ୍ଥାନଂ ଯଥାଯୋଗ୍ୟଂ ସ୍ଥାପୟିତ୍ୱା ନୃପୋତ୍ତମଃ ।
ବିଲେଶ୍ୱରଂ କପୋତେଶଂ ନମସ୍କୃତ୍ୟ ପ୍ରପୂଜ୍ୟ ଚ ।୧୨୬।
ରଥମାସ୍ଥାୟ ମହତା ସହିତୋ ବ୍ରହ୍ମସୂନୁନା ।
ମନସା ବଚସା ବିଷ୍ଣୁଂ ନୀଳାଚଳନିବାସିନମ୍ ।
ଚିନ୍ତୟନ୍ କୀର୍ତ୍ତୟନ୍ ବିପ୍ରା ଜଗାମ ସନ୍ନିଧିଂ ହରେଃ ।୧୨୭।
ଇତି ଶ୍ରୀ ସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନସୈନ୍ୟକାମ୍ରକାନନଗମନଂ
ନାମ ଦ୍ୱାଦଶୋଽଧ୍ୟାୟଃ ।୧୨।

ଶ୍ରୀ ଜୈମିନି କହିଲେ—ହେ ଋଷିଗଣ ! ସେହି ଦେବଦେବ ମହାଦେବ ନାରଦଙ୍କୁ ଅନୁମତି ପ୍ରଦାନ କରି ତାହାଙ୍କ ନିକଟରେ ହିଁ ଅନ୍ତର୍ଦ୍ଧାନ ହୋଇ ଗଲେ ଏବଂ ସେହି ଋଷି ରାଜାଙ୍କ ରଥ ଆରୋହଣ କରି ଉତ୍ତମ କ୍ଷେତ୍ରଧାମ ଅଭିମୁଖରେ ଯାତ୍ରା-କଲେ । ୧୨୩ । ଦ୍ୱିତୀୟ ଦିବସରେ ସେମାନେ କପୋତେଶ୍ୱର ଶିବଙ୍କ ମନ୍ଦିର ନିକଟରେ ଉପନୀତ ହେଲେ । ସେହି ସ୍ଥଳଟି ଦୀର୍ଘ ଓ ପ୍ରଶସ୍ତ ଏବଂ ବିବିଧ ବୃକ୍ଷ ଶ୍ରେଣୀ ଓ ଜଳାଶୟ ସମୂହ ଦ୍ୱାରା ମନୋରମ ଅଟେ । ଏହାର ପୂର୍ବ ସୀମା ସମୁଦ୍ର ତଟରେ ବିଲ୍ୱେଶ୍ୱର ନାମକ ଶିବ ଅଛନ୍ତି ହେ ଦ୍ୱିଜଗଣେ ! ଜଣେମନ୍ତ୍ରୀ ଏହି ସ୍ଥାନ ସୈନ୍ୟ ନିବାସ ଯୋଗ୍ୟତା ଦୃଷ୍ଟିରୁ ନିବେଦନ କଲେ । ନରପତି ଯଥାଯୋଗ୍ୟ ସ୍ଥାନରେ ସମସ୍ତଙ୍କୁ ନିଜ ନିଜ ମର୍ଯ୍ୟାଦା ଅନୁସାରେ ସଂସ୍ଥାପନ ପୂର୍ବକ କପୋତେଶ ଓ ବିଲ୍ୱେଶ୍ୱର ଶିବଙ୍କୁ ନମସ୍କାର ଓ ପୂଜନ କରି ବ୍ରହ୍ମାପୁତ୍ର ନାରଦଙ୍କ ସହିତ ରଥ ଆରୋହଣ ପୂର୍ବକ ମନୋବାକ୍ୟରେ ସେହି ନୀଳାଚଳ ନିବାସୀ ବିଷ୍ଣୁଙ୍କୁ ଚିନ୍ତନ ଓ କୀର୍ତ୍ତନ କରି ହରିଙ୍କ ନିକଟକୁ ଗମନ କଲେ । ୧୨୭ ।

॥ ଦ୍ୱାଦଶ ଅଧ୍ୟାୟ ସମାପ୍ତ ॥

## ତ୍ରୟୋଦଶୋଽଧ୍ୟାୟଃ

ମୁନୟ ଊଚୁଃ

କପୋତେଶସ୍ଥଳୀ ସା ହି କଥଂ ଖ୍ୟାତା ମହାମୁନେ ।
କୋ ବା କପୋତଃ କଶ୍ଚେଶ ଏତନ୍ନୋ ବକ୍ତୁମର୍ହସି ।୧।

ଶ୍ରୀ ଜୈମିନିରୁବାଚ

ପୁରା କୁଶସ୍ଥଳୀ ସା ହି ଅସେବ୍ୟା ସର୍ବଜନ୍ତୁଭିଃ ।
ତୀକ୍ଷ୍ଣଧାରୈଃ କୁଶାଗ୍ରୈଶ୍ଚ ପଶତଃ କଣ୍ଟକୈଷ୍ଟତା ।୨।
ନିସ୍ତରନ୍ନର୍ଜଳ ଧାରା ପିଶାଚବସତର୍ଯଥା ।୩।
ଯଥାପୂର୍ବଂ ଭଗବତୋ ନାନ୍ୟୋ ଦେବୋ ହି ପୂଜ୍ୟତେ ।
ପୂଜ୍ୟଃ ସ୍ୟାମହମପ୍ୟେବଂ ସ୍ୱର୍ଦ୍ଧୀଶ୍ୱିର୍ଜଟେସ୍ତଦା ।୪।
ଚିନ୍ତୟନ୍ନିତି ତସ୍ୟୈବ ବିଷ୍ଣୋର୍ଭକ୍ତୌ ମନୋଦଧତ୍ ।୫।

## ତ୍ରୟୋଦଶ ଅଧ୍ୟାୟ

ମୁନିଗଣ ପ୍ରଶ୍ନ କଲେ—ହେ ଜୈମିନେ ! ସେହି କପୋତେଶସ୍ଥଳୀ ନାମଟି କେଉଁ କାରଣରୁ ବିଖ୍ୟାତ ହେଲା ଏବଂ କପୋତ ଓ ତାର ଈଶ ବା କିଏ ? ଏ ସମସ୍ତ ବିଷୟ ଆମ୍ଭମାନଙ୍କୁ କୁହନ୍ତୁ ।୧। ଶ୍ରୀ ଜୈମିନି କହିଲେ, ପୂର୍ବକାଳରେ ଏକ ସୁପ୍ରସିଦ୍ଧ କୁଶସ୍ଥଳୀ ଥିଲା । ତହିଁରେ କୌଣସି ପ୍ରକାର ଜନ୍ତୁ ବାସ କରୁ ନ ଥିଲେ । ଅତ୍ୟନ୍ତ ତୀକ୍ଷ୍ଣଧାର କୁଶାଗ୍ର ଏବଂ ବହୁଳ କଣ୍ଟକ ଦ୍ୱାରା ଏହି ସ୍ଥଳୀଟିର ଚତୁର୍ଦ୍ଦିଗ ବେଷ୍ଟିତ ଥିଲା ।୨। ଉକ୍ତ ସ୍ଥଳୀରେ ବୃକ୍ଷ ଓ ଜଳାଶୟ ନ ଥିଲା । ପିଶାଚମାନଙ୍କର ଏହା ବାସଯୋଗ୍ୟ ବୋଲି ସର୍ବଦା ବିବେଚିତ ଥିଲା ।୩। ଏକ ସମୟରେ ଦେବେଶ୍ୱର ଧୂର୍ଜଟି ମନରେ ଅଭିଳାଷ କଲେ ଯେ ପୂର୍ବରେ ଭଗବାନଙ୍କ ବ୍ୟତୀତ ଅନ୍ୟ ଦେବତା କେହି ପୂଜ୍ୟ ନ ଥିଲେ, ଏକମାତ୍ର ପୂଜ୍ୟ ବା ଆରାଧ୍ୟ ଭଗବାନ୍ । ମୁଁ ମଧ୍ୟ ସେହିପରି ପୂଜ୍ୟ ହେବି । ମହାଦେବ ଏହି ପ୍ରକାର ଚିନ୍ତା କରି ସେହି ବିଷ୍ଣୁଙ୍କ ଭକ୍ତି ବିଷୟରେ ଏତାଦୃଶ ସଂକଳ୍ପ କରି ମନୋନିବେଶ କଲେ ।୫।

ସର୍ବନିର୍ବିଷୟେ ଦେଶେ ସ୍ଥିତ୍ୱାହଂ ନିଷ୍ପରିଗ୍ରହଃ ।
ସୁମହତ୍ତପ ଆସ୍ଥାୟ ତୋଷୟିଷ୍ୟାମି ତଂ ହରିମ୍ ।
କିଂ ବା ଦେୟଂ ରମେଶାୟ ସ୍ତୁତିଃ କା ଶାରଦାପତେଃ ।
ସର୍ବବ୍ରହ୍ମାଣ୍ଡନାଥସ୍ୟ କିମନ୍ୟତ୍ତୁଷ୍ଟିକାରଣମ୍ ।୬।

ତସ୍ମିନ୍ନାବାହ୍ୟ ବସ୍ତୂନାମୁପଯୋଗୋଽସ୍ତି ତସ୍ୟ ବୈ ।
ଅନ୍ତର୍ଯାଗଂ ସମାସ୍ଥାୟ ନିର୍ବ୍ୟଲୀକେନ ଚେତସା ।
ଭକ୍ତେଭ୍ୟ ଆତ୍ମପଦଦଂ ଚରାଚରଗୁରୁଂ ହରିମ୍ ।
ଆରାଧୟିଷ୍ୟେ ସର୍ବେଷାଂ ପୂଜ୍ୟଃ ସ୍ୟାଂ ତତ୍ ପ୍ରସାଦତଃ ।୭।

ତତ ଇତ୍ୟଭିସନ୍ଧାୟ ଯଯୌ ପୁଣ୍ୟାଂ କୁଶସ୍ଥଳୀମ୍ ।
ସମୀପେ ନୀଳଗୋତ୍ରସ୍ୟ ସର୍ବଦ୍ୱନ୍ଦ୍ୱବିବର୍ଜିତାମ୍ ।୮।

---

'ମୁଁ ସମସ୍ତ କାମନା ବାସନାକୁ ପରିତ୍ୟାଗ ପୂର୍ବକ ଏକ ବିଷୟଶୂନ୍ୟ ସ୍ଥାନରେ ଅବସ୍ଥାନ କରି ମହତି ତପସ୍ୟା ଦ୍ୱାରା ସେହି ଶ୍ରୀହରିଙ୍କୁ ସନ୍ତୁଷ୍ଟ କରିବି । ସେ ସ୍ୱୟଂ ଲକ୍ଷ୍ମୀପତି; ଅତଏବ ତାଙ୍କୁ ଦେବା ପାଇଁ ବା କ'ଣ ଅଛି ? ସେ ସ୍ୱୟଂ ବାକ୍‌ପତି, ତାଙ୍କ ସ୍ତୁତି ବା କ'ଣ କରିବି ? ଯେ ସମସ୍ତ ବ୍ରହ୍ମାଣ୍ଡର ଈଶ୍ୱର, ତାଙ୍କ ସନ୍ତୋଷର କାରଣ ଅନ୍ୟ ବା କ'ଣ ହୋଇପାରେ ? ।୬। ଅତଏବ ଭଗବାନଙ୍କ ସନ୍ତୋଷର ଏକମାତ୍ର କାରଣ ଅନ୍ତର୍ଯାଗ । ଏକାଗ୍ର ଚିତ୍ତରେ ତଦାଶ୍ରିତ ହୋଇ ଯେ କି ଭକ୍ତମାନଙ୍କୁ ଆତ୍ମସମର୍ପଣ କରନ୍ତି, ସେହି ଭକ୍ତବତ୍ସଳ ଓ ଚରାଚର ଗୁରୁ ଶ୍ରୀହରିଙ୍କୁ ଆରାଧନା କରିବି । ତାହାଙ୍କ କରୁଣାରୁ ମୁଁ ମଧ୍ୟ ସର୍ବପୂଜ୍ୟ ହୋଇପାରିବି ।୭। ତଦନନ୍ତର ଶ୍ରୀମହାଦେବ ଏହିପରି ଚିନ୍ତା କରି, ନୀଳପର୍ବତ ନିକଟବର୍ତ୍ତୀ ବିରୋଧଶୂନ୍ୟ ପୁଣ୍ୟଭୂମି କୁଶସ୍ଥଳୀରେ ଉପନୀତ ହେଲେ ।୮।

ତତ୍ର ତେପେ ତପସ୍ତୀବ୍ରଂ ବାୟୁଭକ୍ଷ୍ୟୋ ମହେଶ୍ୱରଃ ।
କପୋତ ଇବ ସୂକ୍ଷ୍ମୋ ଭୂଦଷ୍ଟମୂର୍ତ୍ତିରପି ପ୍ରଭୁଃ ।୯।
ତତଃ ପ୍ରସନ୍ନୋ ଭଗବାନ ଐଶ୍ୱର୍ଯ୍ୟଂ ପ୍ରଦଦୌ ତଦା ।
ଯେନାତ୍ମତୁଲ୍ୟଃ ସଞ୍ଜାତଃ ପୂଜାସମ୍ମାନନାଦଷୁ ।୧୦।
ତପଃ ପ୍ରଭାବାଦସ୍ୟାସୀତ୍ସ୍ଥଲୀ ବୃନ୍ଦାବନୋପମା ।
ସରସ୍ତଡାଗସରସୀନଦୀଭିଃ ଶୋଭିତାନ୍ତରା ।୧୧।
ନାନାଦ୍ରୁମୈର୍ଲତାଭିଶ୍ଚ ସର୍ବର୍ତ୍ତୁଫଲ ପୁଷ୍ପକୈଃ ।
ମଧୁମତ୍ତଦ୍ୱିରେଫାଣାଂ ଝଙ୍କାରମୁଖରାସ୍ତଥା ।
ନାନାପକ୍ଷିଗଣାକୀର୍ଣ୍ଣା ସର୍ବଜନ୍ତୁସୁଖାବହା ।
କପୋତ ସଦୃଶୋ ଜାତୋ ଯତଃ ସ ତପସା ଶିବଃ ।
ମୁରାରେରଜ୍ଞୟା ଯତ୍ର କପୋତେଶ୍ୱରତାଂ ଗତ ।୧୨।

---

ମହେଶ୍ୱର ସେଠାରେ କେବଳ ବାୟୁଭୋଜନ ପୂର୍ବକ ତୀବ୍ର ତପସ୍ୟା କରିବାକୁ ଲାଗିଲେ । ଏହି ସ୍ଥୂଳଦୃଶ୍ୟ ଅଷ୍ଟମୂର୍ତ୍ତି ହୋଇ ମଧ୍ୟ ତାତ୍କାଳୀକ ତପସ୍ୟାରେ କପୋତ ସଦୃଶ ସୂକ୍ଷ୍ମ ହୋଇ-ଯାଇଥିଲେ । ୯ । ହେହି ସମୟରେ ଭଗବାନ୍ ପ୍ରସନ୍ନ ହୋଇ ଶିବଙ୍କୁ ଏପରି ଐଶ୍ୱର୍ଯ୍ୟ ପ୍ରଦାନ କଲେ ଯେ, ଯହିଁରେ ପୂଜା ଓ ସମ୍ମାନାଦ ସେ ତାଙ୍କ (ହରିଙ୍କ) ତୁଲ୍ୟ ଲାଭ କଲେ । ୧୦ । ଶ୍ରୀମହାଦେବଙ୍କ ତପଃ ପ୍ରଭାବରେ ହିଁ କୁଶସ୍ଥଳୀ ବୃନ୍ଦାବନ ସଦୃଶ ସରୋବର, ତଡ଼ାଗ ଓ ନଦନଦୀ ଦ୍ୱାରା ସୁଶୋଭିତ ଏବଂ ନାନା ତରୁଲତା, ସମସ୍ତ ଋତୁରାଜ, ଫଳପୁଷ୍ପ ମଧୁମତ୍ତ ଭ୍ରମର ସମୂହଙ୍କ ଝଙ୍କାର ଓ ବିବିଧ ବିହଙ୍ଗ କୁଳରେ ପରିପୂର୍ଣ୍ଣ ହୋଇ ସର୍ବପ୍ରାଣୀଙ୍କ ସୁଖ ସମ୍ପାଦନ କରୁଥାଏ । ୧୧ । ଶିବ ତପସ୍ୟାଦ୍ୱାରା କପୋତ ପରି ସୂକ୍ଷ୍ମ ଶଙ୍କର ହୋଇଥିଲେ । ଉକ୍ତ କାରଣରୁ ଭଗବାନ ମୁରାରିଙ୍କର ଆଦେଶକ୍ରମେ 'କପୋତେ-ଶ୍ୱର' ଏହି ଆଖ୍ୟାଟି ଲାଭ କଲେ ।୧୨। ଭଗବାନଙ୍କ ଅାଜ୍ଞାରେ ହିଁ

ତଦାଜ୍ଞୟାତ୍ର ବସତି ମୃଡ଼ାନ୍ୟା ତ୍ର୍ୟମ୍ବକଃ ସଦା । ୧୩ ।
ଯେଽର୍ଚ୍ଚୟନ୍ତି କପୋତେଶଂ ସ୍ତୁବନ୍ତି ପ୍ରଣମନ୍ତି ଚ ।

ବିଧୂତକଲ୍ମଷାସ୍ତେ ବୈ ପ୍ରୟାନ୍ତି ପୁରୁଷୋତ୍ତମମ୍ । ୧୪ ।

ଅପରଞ୍ଚ ପ୍ରବକ୍ଷ୍ୟାମି ବିଲ୍ୱେଶମହିମାଂ ଦ୍ୱିଜାଃ । ୧୫ ।

ପାତାଳବାସିନଃ ପୂର୍ବଂ ଦୈତ୍ୟା ଭିତ୍ତ୍ୱା ମହୀତଳମ୍ ।
ଉପଦ୍ରବନ୍ତି ଭୂର୍ଲୋକଂ ଭକ୍ଷୟନ୍ତି ଜନାଂସ୍ତଥା । ୧୬ ।
ଭୂଭାରହରଣାର୍ଥାୟ ଦେବକୀଗର୍ଭସମ୍ଭବଃ ।
ପାଳୟାମାସ ପୃଥିବୀଂ ଯଦା ସ ଭଗବାନ୍ ପ୍ରଭୁଃ । ୧୭ ।

---

ସର୍ବଦା ଦେବୀ ମୃଡ଼ାନୀଙ୍କ ସହିତ ମୃଡ଼ (ଶିବ) ଏହି କୁଶ ସ୍ଥଳୀରେ ଅବସ୍ଥାନ କରିଅଛନ୍ତି । ୧୩ । ଯେଉଁମାନେ କପୋତେଶ୍ୱର ଶିବଙ୍କୁ ଅର୍ଚ୍ଚନା ଓ ସ୍ତୁତି-ପ୍ରଣତି କରନ୍ତି, ସେମାନେ ନିଷ୍ପାପ ହୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଗମନ କରନ୍ତି । ୧୪ । ହେ ଦ୍ୱିଜଗଣ ! ପୁନର୍ବାର ବିଲ୍ୱେଶ୍ୱର ଶିବଙ୍କ ମହିମା କହିବି, ଶ୍ରବଣ କର । ୧୫ । ପୂର୍ବକାଳରେ ଯେଉଁ ସମୟରେ କି ପାତାଳବାସୀ ଦୈତ୍ୟଗଣ ମହୀତଳ ଭେଦକରି ଦ୍ୱାର ନିର୍ମାଣ ପୂର୍ବକ ଭୂର୍ଲୋକକୁ ଆସି ନାନାପ୍ରକାର ଉପଦ୍ରବ ସହକାରେ ଜନଜୀବନକୁ ବିପନ୍ନ ତଥା ଭକ୍ଷଣ କରିବାକୁ ଲାଗିଲେ । ୧୬ । ସେହି ସମୟରେ ଭଗବାନ ପୃଥିବୀର ଭାର ହରଣ ନିମନ୍ତେ, ମା' ଦେବକୀଙ୍କ ଗର୍ଭରେ ଜନ୍ମଗ୍ରହଣ କରି ସଂସାରକୁ ପାଳନ କରୁଥିଲେ । ୧୭ ।

ଯାଦବୈଃ ପାଣ୍ଡବୈଃ ସାର୍ଦ୍ଧଂ ତଦା ତତ୍ସ୍ଥଲମାଗତଃ ।
ତୀର୍ଥରାଜସ୍ୟ ସଲିଲେ ସ୍ନାତ୍ୱା ତଂ ନୀଳମାଧବମ୍ ।
ଦୂରାତ୍ ପ୍ରଣମ୍ୟ ମନସା ଦୈତ୍ୟଦ୍ୱାରମୁପାଗତଃ । ୧୮ ।
ଦୃଷ୍ଟ୍ୱା ତଦ୍‌ବିବରଂ ଘୋରମପ୍ରବେଶ୍ୟନ୍ତୁ ମାନବୈଃ ।
ଭ୍ରାନ୍ତ୍ୟା ସ ମୋହୟନ୍ ଲୋକାନ ପ୍ରଥୟନ୍ ଶିବପୂଜ୍ୟତାମ୍ । ୧୯ ।
ବୈଲ୍ୱଂ ଫଳଂ ସମାଦାୟ ତତ୍ରାବାହ୍ୟ ତ୍ରିଲୋଚନମ୍ ।
ପୂଜୟିତ୍ୱା ପୁରାରାତିଂ ତୁଷ୍ଟାବାନ୍ଧକନାଶନମ୍ । ୨୦ ।

ଶ୍ରୀଭଗବାନୁବାଚ

ନମସ୍ତେ ତ୍ରିଗୁଣାତୀତ ଗୁଣତ୍ରୟବିଭାଗକୃତ୍ ।
ତ୍ରୟୀମୟ ତ୍ରୟାତୀତ ତ୍ରିକାଳଜ୍ଞାନିନେ ନମଃ । ୨୧ ।

---

ଏକ ସମୟରେ ଭଗବାନ କୃଷ୍ଣ ଯାଦବ ଓ ପାଣ୍ଡବଙ୍କ ସହିତ ସେହି ସ୍ଥଳକୁ (ଶ୍ରୀକ୍ଷେତ୍ରକୁ) ଆଗମନ କରି, ତୀର୍ଥରାଜ ସମୁଦ୍ର ଜଳରେ ସ୍ନାନାନନ୍ତର ସେହି ଶ୍ରୀନୀଳମାଧବଙ୍କୁ ମନେ ମନେ ପ୍ରଣାମ ପୂର୍ବକ ଦୈତ୍ୟ ଦ୍ୱାରରେ ଉପସ୍ଥିତ ହେଲେ । ୧୮ । ଦେଖିଲେ ଯେ ଦେବତାମାନଙ୍କ ଦ୍ୱାର ବିବରଟି ବଡ଼ ଭୟାନକ । ତହିଁରେ ମନୁଷ୍ୟମାନଙ୍କର ପ୍ରବେଶ ଅସମ୍ଭବ । ସୁତରାଂ ସେ (ଶ୍ରୀକୃଷ୍ଣ) ଲୋକମାନଙ୍କୁ ଭ୍ରାନ୍ତିଦ୍ୱାରା ମୋହିତ କରାଇ ଏହା ହିଁ ପ୍ରକାଶ କଲେ ଯେ, ଏହି ସ୍ଥାନରେ ଦେବାଦିଦେବ ଶିବଙ୍କୁ ପୂଜା କରାଯାଏ । ୧୯ । ତଦନନ୍ତର ଏକ ବିଲ୍ୱଫଳ ଆନୟନ କରି ସେ ତ୍ରିପୁରାରି ଓ ଅନ୍ଧକ ଦୈତ୍ୟ ନାଶକ ତ୍ରିଲୋଚନଙ୍କୁ ଆବାହନ ପୂର୍ବକ ଯଥା ବିଧାନରେ ପୂଜନ କରି ସ୍ତବ କରିବାକୁ ଲାଗିଲେ । ୨୦ । ଭଗବାନ ଶ୍ରୀକୃଷ୍ଣ କହିଲେ, ହେ ଶିବ ! ଆପଣ ତ୍ରିଗୁଣ ରହିତ, ଅଥଚ ତିନିଗୁଣକୁ ବିଭାଗ କରି ଅଛନ୍ତି । ଆପଣ ବେଦତ୍ରୟରୂପୀ ( ଋକ୍-ସାମ-ଯଜୁ ) ଅଥଚ ବେଦବାହ୍ୟ; ଏବଂ ଭୂତ-ଭବିଷ୍ୟତ ଓ ବର୍ତ୍ତମାନ ଏହି ତିନିକାଳର ଜ୍ଞାତା । ଏଣୁ ଆପଣଙ୍କୁ ନମସ୍କାର । ୨୧ ।

ଶଶିସୂର୍ଯ୍ୟାଗ୍ନିନେତ୍ରାୟ ବ୍ରହ୍ମଣ୍ୟାୟ ବଗ୍ନୁତେ ।
ଅଷ୍ଟୈଶ୍ୱର୍ଯ୍ୟନିଧାନାୟ ତୁଭ୍ୟମଷ୍ଟାତ୍ମନେ ନମଃ । ୧୨ ।
ଯସ୍ୟ ରୂପଂ ତମଃ ପାରେ ତମୋନାଶନମବ୍ୟୟମ୍ ।
ଅଜ୍ଞାନାନାଂ ତମଶ୍ଛିନ୍ନଂ ତସ୍ମୈ ବିତମସେ ନମଃ । ୧୩ ।
ଏବଂ ସ୍ୱମାତ୍ମନାତ୍ମାନଂ ସ୍ତୁତ୍ୱା ସ ଭଗବାନ୍ ପ୍ରଭୁଃ ।
ତସ୍ୟ ପ୍ରସାଦାଦ୍ ବିବରଂ ସୁପ୍ରବେଶମଦୃଶ୍ୟତ । ୧୪ ।
ତେନ ମାର୍ଗେଣ ପାତାଳଂ ସସୈନ୍ୟୋଽଭ୍ୟଗମତ୍ ପ୍ରଭୁଃ ।
ହତ୍ୱା ତତ୍ର ବଳୋଦଗ୍ରାନ୍ ଦୈତ୍ୟାନ୍ ହରବତାରଣଃ । ୧୫ ।
ପୁନରାଗତ୍ୟ ତତ୍ରୈବ ସ୍ଥିତ୍ୱା ସ ବୃଷଭଧ୍ୱଜମ୍ ।
ସମ୍ପୂଜ୍ୟ ଭଗବାନ୍ ଦ୍ୱାରରକ୍ଷାର୍ଥେ ସ୍ଥାପୟନ୍ ଶିବମ୍ । ୧୬ ।

---

ହେ ଶିବ ! ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନି ଏମାନେ ଆପଣଙ୍କର ନେତ୍ରସ୍ୱରୂପ । ଆପଣ ବ୍ରହ୍ମଣ୍ୟ ସ୍ୱରୂପ ଓ ପରମାତ୍ମା, ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟର ଈଶ୍ୱର ଅଟନ୍ତି । ଏହି ପୃଥିବ୍ୟାଦି ଅଷ୍ଟ ମୂର୍ତ୍ତିକୁ ଆପଣ ଧାରଣ କରି ଅଛନ୍ତି । ଅତଏବ ଆପଣଙ୍କୁ ନମସ୍କାର । ୧୨ । ହେ ଶିବ ! ଆପଣଙ୍କ ସ୍ୱରୂପ ଅବ୍ୟୟ ଓ ତମୋଗୁଣର ପରେ ଅବସ୍ଥିତ, ଅଥଚ ତମୋଗୁଣନାଶକ, ସୁତରାଂ ଅଜ୍ଞାନ ଜନର ତମଶ୍ଛେଦକ, ତମୋବିରହିତ; ଆପଣଙ୍କୁ ନମସ୍କାର । ୧୩ । ଏହି ଭାବରେ ସେହି ପ୍ରଭୁ ଭଗବାନ୍ ନିଜକୁ ନିଜେ ସ୍ତବ କରି ସେହି ଶିବରୂପୀ ବ୍ରହ୍ମଙ୍କ ଅନୁଗ୍ରହରେ ଉକ୍ତ ବିବରଟି ନିଜର ପ୍ରବେଶ ଯୋଗ୍ୟ ବୋଲି ମନେ କଲେ । ୧୪ । ପ୍ରଭୁ ସେହି ମାର୍ଗ ଦେଇ ସସୈନ୍ୟ ପାତାଳ ତଳେ ଅବତୀର୍ଣ୍ଣ ହେଲେ । ସେଠାରେ ବଳ ଦର୍ପିତ ଦୈତ୍ୟମାନଙ୍କୁ ବିନାଶ କରି ଭୂ-ଭାର ଲାଘବ ହୁଅନ୍ତେ ପୁନରାୟ ସେହି ସ୍ଥାନକୁ ଆସି ଅବସ୍ଥାନ ପୂର୍ବକ ବୃଷଧ୍ୱଜଙ୍କୁ ପୂଜନ କଲେ । ସେହି ଦ୍ୱାର ଅବରୋଧ ନିମନ୍ତେ ପ୍ରାସାଦ ନିର୍ମାଣ କରି ଭଗବାନ ମହାଦେବଙ୍କୁ ସେହି ସ୍ଥାନରେ ସ୍ଥାପନା କଲେ । ୧୬ ।

ଇତ୍ୟୁମାହ ମହାବୁଦ୍ଧିର୍ଭକ୍ତବଶ୍ୟୋ ଗଦାଧରଃ ।
ଧୂର୍ଜଟେ ତିଷ୍ଠ ପ୍ରାସାଦେ ରୁନ୍ଧାନୋଽସୁରନିର୍ଗମମ୍ । ୨୭ ।
ତ୍ୱଦନ୍ୟଃ କଃ କ୍ଷମଃ ଶମ୍ଭୋ ଦୈତ୍ୟଦର୍ପବିନାଶନେ ।
ସ୍ଥାପୟିତ୍ୱା ମହାଦେବଂ ତତୋ ଦ୍ୱାରବତୀଂ ଯଯୌ । ୨୮ ।
ତତଃ ପ୍ରଭୃତି ବିଲ୍ୱେଶଃ ପୃଥିବ୍ୟାଂ ଖ୍ୟାତିମାଗତଃ ।
ପୂର୍ବାବଧିଃ ସ ବିଜ୍ଞେୟଃ କ୍ଷେତ୍ରରାଜସ୍ୟ ଭୋ ଦ୍ୱିଜାଃ । ୨୯ ।
ତଂ ଦୃଷ୍ଟ୍ୱା ପାପହନ୍ତାରଂ ମୃଡାନୀପତିମବ୍ୟୟମ୍ ।
ସର୍ବାନ୍ କାମାନବାପ୍ନୋତି ବହ୍ନିଂ ଦୁସ୍ତରଂ ଜୟେତ୍ । ୩୦ ।
କପୋତବିଲ୍ୱେଶ୍ୱରୟୋର୍ମାହାତ୍ମ୍ୟଂ କଥିତଂ ତୁ ବଃ ।
ଅତଃ ପରଂ ଭୋ ମୁନୟଃ କିମନ୍ୟଚ୍ଛ୍ରୋତୁମିଚ୍ଛଥ । ୩୧ ।

ଇତି ଶ୍ରୀସ୍କାନ୍ଦେ କପୋତେଶ୍ୱରଶିବୋପାଖ୍ୟାନବର୍ଣ୍ଣନଂ
ନାମ ତ୍ରୟୋଦଶୋଽଧ୍ୟାୟଃ ।୧୩ ।

---

ଭକ୍ତବଶ୍ୟ ମହାବୁଦ୍ଧି ଗଦାଧର, ଏଥିକଥା କହିଲେ, ହେ ଧୂର୍ଜଟେ ! ଆପଣ, ଅସୁରମାନଙ୍କ ଏହି ଯାତାୟତ ପଥକୁ ଅବିରୋଧ କରି ଉକ୍ତ ପ୍ରାସାଦରେ ଅବସ୍ଥାନ କରନ୍ତୁ । ୨୭ । ହେ ଶମ୍ଭୋ ! ଅସୁରମାନଙ୍କ ଦର୍ପ ଦଳନ ପାଇଁ ଆପଣଙ୍କ ବ୍ୟତୀତ ଆଉ କିଏ ବା ସମର୍ଥ ? ଭଗବାନ୍ ହୃଷୀକେଶ ଭୂତ ଭାବନ ଶ୍ରୀ ଭବାନୀପତିଙ୍କୁ ଏହି ଭାବରେ ସ୍ଥାପନା କରି ଦ୍ୱାରକା ପୁରୀକୁ ଗମନ କଲେ । ୨୮ । ସେହି ସମୟରୁ ପୃଥିବୀରେ ବିଶ୍ୱେଶ୍ୱର ମହାଦେବ ବିଲ୍ୱେଶ୍ୱର ନାମରେ ବିଖ୍ୟାତ ହେଲେ । ହେ ଦ୍ୱିଜଗଣ ! ଏହି ବିଲ୍ୱେଶ୍ୱର ଶିବ ଶ୍ରୀକ୍ଷେତ୍ର ଧାମର ପୂର୍ବସୀମା ଅଳଂକୃତ କରି ଅଛନ୍ତି । ୨୯ । ଜନଗଣ ସେହି ପାପହନ୍ତା ଅବ୍ୟୟ ମୃଡାନୀ ପତିଙ୍କୁ ଦର୍ଶନ କରି, ଦୁସ୍ତର ବିପଦ ସାଗରରୁ ଉତ୍ତୀର୍ଣ୍ଣ ହୋଇ ସମସ୍ତ ଅଭିଳଷିତ ଫଳ ଲାଭ କରନ୍ତି । ୩୦ । ଏହି ପବିତ୍ର ପ୍ରସଙ୍ଗ ମୁଁ ତୁମ୍ଭମାନଙ୍କ ନିକଟରେ ବର୍ଣ୍ଣନ କଲି ଅର୍ଥାତ୍ କପୋତେଶ୍ୱର ତଥା ବିଲ୍ୱେଶ୍ୱର ମହାଦେବଙ୍କ କଥା କୀର୍ତ୍ତନ କଲି । ହେ ମୁନିଗଣ ! ଏହାପରେ ଅନ୍ୟକିଛି ପ୍ରସଙ୍ଗ ଶ୍ରବଣ କରିବା ପାଇଁ ଅଭିଳାଷୀ ଅଛ କି ? । ୩୧ ।

॥ ତ୍ରୟୋଦଶ ଅଧ୍ୟାୟ ସମାପ୍ତ ॥

# ଚତୁର୍ଦ୍ଦଶୋଽଧ୍ୟାୟଃ

ମୁନୟ ଉଚୁଃ ।

ରଥମାରୁହ୍ୟ ତୌ ଯାତୌ ଯଦା ନାରଦପାର୍ଥିବୌ ।
କ୍ୱ ଯାତୌ ଚକ୍ରତୁଃ କିଂ ବା ତନ୍ନୋ ବଦ ମହାମୁନେ ।୧।

ଶ୍ରୀ ଜୈମିନିରୁବାଚ

ସାର୍ଦ୍ଧଞ୍ଚ ବିଦ୍ୟାପତିନା ପୁରୋହିତ କନୀୟସା ।
କ୍ଷେତ୍ରାନ୍ତେ ନୀଲକଣ୍ଠସ୍ୟ ସମୀପମୁପଜଗ୍ମତୁଃ ।୨।
ଦୁର୍ନିମିତ୍ତମଭୂନ୍ମାର୍ଗେ ବ୍ରଜତୋଽସ୍ୟ ମହୀକ୍ଷିତଃ ।
ବାମାକ୍ଷିଭୁଜୟୋଃ ସାର୍ଦ୍ଧଂ ସ୍ଫୁରଣଞ୍ଚ ମୁହୁର୍ମୁହୁଃ ।୩।
ତଦ୍ଦୃଷ୍ଟ୍ୱା ନୃପଶାର୍ଦ୍ଦୂଲୋ ବିଷାଦମୁପସେଦିବାନ୍ ।
ପପ୍ରଚ୍ଛ କାରଣଞ୍ଚାସ୍ୟ ସର୍ବଜ୍ଞାନନିଧିଂ ମୁନିମ୍ ।୪।

---

# ଚତୁର୍ଦ୍ଦଶ ଅଧ୍ୟାୟ

ମୁନିଗଣ ପ୍ରଶ୍ନ କଲେ—ହେ ମହାମୁନେ ! ଯେଉଁ ସମୟରେ ସେହି ନରପତି ଓ ନାରଦ ଋଷି ରଥ ଆରୋହଣ କରି ଯାତ୍ରା କଲେ, ସେତେବେଳେ ସେମାନେ କେଉଁ ସ୍ଥାନରେ ଉପସ୍ଥିତ ହେଲେ ଏବଂ କେଉଁ କାର୍ଯ୍ୟ ସମ୍ପାଦନ କଲେ, ସେ ସମସ୍ତ ବିଷୟ ବର୍ଣ୍ଣନ କରନ୍ତୁ । ୧ । ଶ୍ରୀଜୈମିନି କହିଲେ—ସେମାନେ ସେହି ପୁରୋହିତଙ୍କ ଅନୁଜ ବିଦ୍ୟାପତିଙ୍କ ସହିତ ଶ୍ରୀକ୍ଷେତ୍ରଧାମ ସୀମାରେ ଶ୍ରୀନୀଳକଣ୍ଠ ମହାଦେବଙ୍କ ନିକଟବର୍ତ୍ତୀ ସ୍ଥଳରେ ଉପସ୍ଥିତ ହେଲେ । ୨ । ରାଜାଙ୍କର ଗମନ କାଳରେ, କେତେକ ଅଶୁଭ ଲକ୍ଷଣ ଦେଖାଗଲା; ଅର୍ଥାତ୍ ବାମ ଚକ୍ଷୁ ଓ ବାମଭୁଜ ଏକ ସମୟରେ କମ୍ପିତ ହେଲା । ୩ । ନରପତି ତାହା ଲକ୍ଷ୍ୟ କରି ବଡ଼ ବିଷାଦଗ୍ରସ୍ତ ହେଲେ ଏବଂ ଏହି ଅଶୁଭ ଲକ୍ଷଣର କାରଣ କ'ଣ ସର୍ବଜ୍ଞାନସମ୍ପନ୍ନ ମୁନିବର ନାରଦଙ୍କୁ ପ୍ରଶ୍ନ କଲେ । ୪ ।

ଅବ୍ୟାହତଂ ମେ ସାମ୍ରାଜ୍ୟଂ ଶାନ୍ତଂ କ୍ଷେତ୍ରାତ୍ମମନ୍ତ୍ୟୁଦମ୍ ।
ଦର୍ଶନାର୍ଥଂ ମାଧବସ୍ୟ ଯାତ୍ରେୟଂ ତୁ ଶୁଭାବହା ।୫।
ଅକାର୍ଯ୍ୟଂ ମେ ଭବେଦଦ୍ୟ କଂ ମୁନେ ବ୍ରୂହି ତତ୍ତ୍ୱତଃ ।
ଷ୍କନ୍ଦତେ ବାମନେତ୍ରଂଚ୍ଛୁ ସ୍ଫୁରତ ତୁ ଭୁଜୋଽସକୃତ୍ ।୬।
ତଚ୍ଛ୍ରୁତ୍ୱା ନାରଦଃ ପ୍ରାହ ଭବିକାର୍ଯ୍ୟଞ୍ଚ ସୂଚୟନ୍ ।
ଶ୍ରାବୟନ୍ କୁଶଳଂ ବାକ୍ୟଂ ଯଦୁକ୍ତଂ ପଦ୍ମଯୋନିନା ।୭।
ମା ଭୂଦ୍ ବିଷାଦସ୍ତେ ଭୂପ ସର୍ବନ୍ତ ପାସ୍ୟଶଃ ଶୁଭମ୍ ।
ବିଘ୍ନାନ୍ତେ ଚ ଶୁଭଂ ପୁଂସାଂ ପୁନର୍ଭାଗ୍ୟବତାଂ ନୃପ ।୮।
ସତ୍ୟଂ ତ୍ୱଂ ସାର୍ବଭୌମୋଽସି କ୍ଷେତ୍ରଂ ବିଷ୍ଣୋର୍ବପୁର୍ଦ୍ଧିଦମ୍ ।
ଯାତ୍ରା ଚ ତେ ଯଦର୍ଥେୟଂ ସୋଽନ୍ତର୍ଦ୍ଧାନମୁପାଗମତ୍ ।୯।

---

ହେ ମୁନେ ! ମୋର ସାମ୍ରାଜ୍ୟ ଅବ୍ୟାହତ ଅଛି ଏବଂ ଏହି କ୍ଷେତ୍ରଧାମ ମଧ୍ୟ ଶାନ୍ତ ଭାବରେ ଅବସ୍ଥିତ ଦେଖୁଅଛି । ତଥାପି ଶ୍ରୀମାଧବଙ୍କ ଦର୍ଶନାର୍ଥେ ମୋର ଯେଉଁ ଯାତ୍ରା କରାଯାଇଛି, ତାହା ମଧ୍ୟ ଶୁଭପ୍ରଦ ବୋଲି ପ୍ରତୀୟମାନ ହେଉଛି । କେଉଁ କାରଣରୁ ଏପରି ଅଶୁଭ ଲକ୍ଷଣ ଦେଖାଯାଉଛି, ତାହା ଆପଣ ଯଥାର୍ଥ ରୂପେ ବର୍ଣ୍ଣନା କରନ୍ତୁ । ୬ । ଦେବର୍ଷି ନାରଦ ଏହା ଶ୍ରବଣ କରିବା ପରେ ଭବିଷ୍ୟତ୍ କାର୍ଯ୍ୟକ୍ରମ ବିଷୟରେ ସୂଚନା ଦେଇ ପିତାମହ ବ୍ରହ୍ମା ଯାହା କହିଥିଲେ, ସେହି କୁଶଳ ସମାଚାର ସହିତ କହିଲେ—ହେ ଭୂପ ! ଆପଣ ବିଷଣ୍ଣ ହୁଅନ୍ତୁ ନାହିଁ । ଶୁଭକାର୍ଯ୍ୟ ପ୍ରାୟତଃ ବିଘ୍ନଶଙ୍କୁଳ । ଅତଏବ ଭାଗ୍ୟବାନ ପୁରୁଷମାନଙ୍କର ମଧ୍ୟ ପ୍ରଥମେ ବିଘ୍ନ ଉପସ୍ଥିତ ହୋଇ ପୁନରାୟ ଶୁଭ ହୋଇଥାଏ । ଏହା ପରମ ସତ୍ୟ । ୮ । ଆପଣ ସକଳ ସାମ୍ରାଜ୍ୟକୁ ଆନନ୍ଦରେ ରଖିଅଛନ୍ତି ଏବଂ ଏହି ଶ୍ରୀକ୍ଷେତ୍ର ଓ ବିଷ୍ଣୁଙ୍କ ଶରୀର ଅବକୃତ ଅଛି । କିନ୍ତୁ ଯାହାଙ୍କ ନିମନ୍ତେ ଆପଣଙ୍କର ଏହି ଯାତ୍ରା କରାଯାଇଅଛି । ସେହି ପ୍ରଭୁ ନୀଳମାଧବ ଅନ୍ତର୍ହିତ ହୋଇ ଯାଇଅଛନ୍ତି । ୯ ।

ଏଷ ବିଦ୍ୟାପତିର୍ବିପ୍ରୋ ଦିନେ ଯସ୍ମିନ୍ ଦଦର୍ଶ ତମ୍ ।
ସାୟଂକାଳେ ତତୋଽନ୍ୟେଦ୍ୟୁଃ ସ୍ୱର୍ଣ୍ଣ ବାଲୁକୟାବୃତଃ ।
ଯଯୌ ପାତାଳନିଳୟଂ ମର୍ତ୍ତ୍ୟଲୋକେ ସୁଦୁର୍ଲଭଃ ।୧୦।

ଶ୍ରୀ ଜୈମିନିରୁବାଚ

ତଚ୍ଛ୍ରୁତ୍ୱା ଘୋରବଚନଂ ବଜ୍ରପାତସମଂ ନୃପଃ ।
ପପାତ ଧରଣୀପୃଷ୍ଠେ ନିଃସଂଜ୍ଞୋଽଥସୌ ଦ୍ୱିଜୋତ୍ତମାଃ ।୧୧।
ତଂ ତଥା ପତିତଂ ଦୃଷ୍ଟ୍ୱା ପୁରୋହିତପୁରୋଗମାଃ ।
ସ୍ନିଗ୍ଧାଃ ସଖାୟଃ ସର୍ବେ ତେ ହାହାକାରମୁପାଦ୍ରବନ୍ ।୧୨।
କର୍ପୂରଶୀତଳଂ ବାରି ମୁଖେ ସିକ୍ତ୍ୱାପୁନଃ ପୁନଃ ।
ଚନ୍ଦନାଗୁରୁକସ୍ତୂର୍ଯ୍ୟାଃ ସର୍ବାଙ୍ଗଂ ଲିଲିପୁଶ୍ଚ ତେ ।
ଚାମରୈର୍ବାଳବୃନ୍ତୈଶ୍ଚ ବୀଜୟାମାସୁରଂଶୁତମ୍ ।୧୩।

---

ଏହି ବିଦ୍ୟାପତି ବିପ୍ର ଯେଉଁଦିନ ତାଙ୍କୁ ଦର୍ଶନ କରିଥିଲେ, ତାର ପର ଦିବସ ସାଂଯୁକାଳରେ ସେ (ନୀଳମାଧବ) ସ୍ୱର୍ଣ୍ଣବାଲୁକାଦ୍ୱାରା ଆବୃତ ହୋଇ ପାତାଳ ପୁରକୁ ଗମନ କରିଅଛନ୍ତି । ସୁତରାଂ ବର୍ତ୍ତମାନ ଏହି ମର୍ତ୍ତ୍ୟଲୋକରେ ତାଙ୍କର ଦର୍ଶନ ଅତ୍ୟନ୍ତ ଦୁର୍ଲଭ ଅଟେ । ୧୦ । ଶ୍ରୀଜୈମିନି କହିଲେ—ହେ ଦ୍ୱିଜଗଣ ! ନରପତି ସେହି ବଜ୍ରାଘାତ ସଦୃଶ ଘୋରତର ବାକ୍ୟ ଶ୍ରବଣରେ ଚୈତନ୍ୟଶୂନ୍ୟ ହୋଇ ଭୂପୃଷ୍ଠରେ ପତିତ ହୋଇଗଲେ । ୧୧ । ତଦନନ୍ତର ନରପତିଙ୍କ ଦୁରବସ୍ଥା ଦର୍ଶନ କରି ପୁରୋହିତ ପ୍ରଭୃତି ସମସ୍ତ ଆତ୍ମୀୟ ବନ୍ଧୁଗଣ ହାହାକାର କରିବାକୁ ଲାଗିଲେ ଏବଂ କର୍ପୂର ସୁବାସିତ ଜଳ ପୁନଃ ପୁନଃ ମୁଖ ମଣ୍ଡଳରେ ସେଚନ କରି ଚନ୍ଦନ, ଅଗୁରୁ, କସ୍ତୁରୀ ପ୍ରଭୃତି ଗନ୍ଧଦ୍ରବ୍ୟ ସମସ୍ତ ଅଙ୍ଗପ୍ରତ୍ୟଙ୍ଗରେ ଲେପନ କଲେ । ଅତି ଯତ୍ନ ସହକାରେ ଓ ଅନନ୍ତ ବଳମ୍ବରେ ଚାମର ବ୍ୟଜନ କରିବାକୁ ଲାଗିଲେ । ୧୩ ।

ନାରଦୋଽପି ସସମ୍ଭ୍ରାନ୍ତୋ ଧାରୟନ୍ ଯୋଗଧାରଣାମ୍ ।
ପ୍ରାଣାନ୍ ররକ୍ଷ ନୃପତେର୍ଜାନନ୍ ତସ୍ୟ ଶୁଭାୟତିମ୍ ।୧୪।
ସୋଽପି ରାଜାଽଚିରାତ୍ ସଂଜ୍ଞାଂ ଲେଭେ ସନ୍ନୈରନୁତ୍ତମୈଃ ।
ଉତ୍ଥାୟ ପାଦୟୋର୍ବିପ୍ରା ନାରଦସ୍ୟାପତତ୍ ପୁନଃ ।୧୫।
କିମକାର୍ଷଂ ମୁନେ ପାପଂ କସ୍ମିନ୍ ଜନ୍ମାନ୍ତରେ ଦୃଢମ୍ ।
ଯସ୍ୟ ପାକଦଶାୟାଂ ହି ଦୁଃଖମାସୀତ୍ ସୁଦାରୁଣମ୍ ।୧୬।
କର୍ମଣା ମନସା ବାଚା ନୋଦ୍ବିଜାଂ ଗବାମପି ।
ନାପରାଧଃ କୃତଃ କଶ୍ଚିତ୍ ସ୍ୱପ୍ନେଽପି ମୁନିପୁଙ୍ଗବ ।୧୭।
ନିତ୍ୟଂ ନୈମିତ୍ତିକଂ କାମ୍ୟଂ କର୍ମ ଯତ୍ ପରିକୀର୍ତ୍ତିତମ୍ ।
ରାଜ୍ଞସ୍ତନ୍ମୁନିଶାର୍ଦ୍ଦୂଲ ନ ତ୍ୟକ୍ତଂ ବୈ ମୟା କ୍ୱଚିତ୍ ।୧୮।

---

ଦେବର୍ଷି ନାରଦ ମଧ୍ୟ ଅତ୍ୟନ୍ତ ସମ୍ଭ୍ରମର ସହିତ ଯୋଗଧାରଣା ପୂର୍ବକ ନରପତିଙ୍କ ଉତ୍ତରକାଳୀନ ଶୁଭ ନିଶ୍ଚୟତା ଜାଣି ତାଙ୍କ ପ୍ରାଣାଦି ଇନ୍ଦ୍ରିୟମାନଙ୍କୁ ରକ୍ଷା କରିବାକୁ ଲାଗିଲେ । ୧୪ । କିଛି ସମୟ ପରେ ରାଜା ଇନ୍ଦ୍ରଦ୍ୟୁମ୍ନ ବହୁବିଧ ଯତ୍ନଦ୍ୱାରା ଚୈତନ୍ୟ-ପ୍ରାପ୍ତ ହେଲେ । ହେ ଦ୍ୱିଜଗଣ, ତଦନନ୍ତର ସେ ଗାତ୍ରୋତ୍ଥାନ କରି ସର୍ବଜ୍ଞ ଶିରୋମଣି ନାରଦ ଋଷିଙ୍କ ଶ୍ରୀଚରଣ ତଳେ ପୁନର୍ବାର ପତିତ ହୋଇ ବିଳାପ କରି କହିବାକୁ ଲାଗିଲେ । ୧୫ । ରାଜା କହିଲେ—ହେ ମୁନେ ! ମୁଁ କେଉଁ ଜନ୍ମ ଜନ୍ମାନ୍ତରରେ କିପରି ଘୋରତର ପାପ କରିଥିଲି, ଯାହାର ପରିପାକ ଦଶାରେ ଏପରି ଦାରୁଣ ମନସ୍ତାପ ଭୋଗ କଲି । ୧୬ । ହେ ମୁନିବର, କାୟଦ୍ୱାରା କି ବାକ୍ୟଦ୍ୱାରା ଅଥବା ମନୋଦ୍ୱାରା କୌଣସି ସମୟରେ ଗୋମାତା କିମ୍ବା ବ୍ରାହ୍ମଣଙ୍କ ନିକଟରେ ସ୍ୱପ୍ନରେ ମଧ୍ୟ କୌଣସି ପ୍ରକାର ଅପରାଧ କରିନାହିଁ । ୧୭ । ହେ ମୁନିଶ୍ରେଷ୍ଠ ! କି ନିତ୍ୟ, କି ନୈମିତ୍ତିକ, କି କାମ୍ୟ- ଇତ୍ୟାଦି ଯେଉଁ ସକଳ କର୍ମ ନରପତିମାନଙ୍କର କର୍ତ୍ତବ୍ୟ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ଅଛି, ମୁଁ କୌଣସି ସମୟରେ ହେଲେ ତାର କିଛିମାତ୍ର ପରିତ୍ୟାଗ କରିନାହିଁ । ୧୮ ।

ଦେବତାତିଥିବୃଦ୍ଧାନାଂ ପିତୃଣାଞ୍ଚ ମହାମୁନେ ।
ତଥାଶ୍ରିତାନାଂ ବନ୍ଧୁନାଂ ନାପମାନଃ କୃତୋ ମୟା ।୧୯।

ପଞ୍ଚାଶଦପରାଧା ଯେ ବକ୍ଷ୍ୟୋର୍ବୈ ମୁନିପୁଙ୍ଗବ ।
ତ୍ୟକ୍ତାଃ ପ୍ରଯତ୍ନାତ୍ତେ ସର୍ବେ କ୍ରୁଦ୍ଧା ଇବ ମହୋରଗାଃ । ୨୦ ।

କିଂ ଭାଗ୍ୟଂ ଚରିତଂ ତେନ ପୁରୋହିତକନୀୟସା ।
ଯଚ୍ଚର୍ମଚକ୍ଷୁଷା ଦୃଷ୍ଟୋ ଭଗବାନ୍ ନୀଳମାଧବଃ । ୨୧ ।

କିମର୍ଥଂ ରାଜ୍ୟବିଭ୍ରଂଶୋ ଜାନତୈଷତ୍ତ୍ୱୟା କୃତଃ ।
ଯାତ୍ରାସମୟ ଏବୈତତ୍ତ୍ କଥଂ ବା ନ ପ୍ରକାଶିତମ୍ । ୨୨ ।
କିମର୍ଥଂ ଶ୍ରୋତ୍ରିୟାଣାଂ ବା ସ୍ଥାନଭ୍ରଂଶୋ ମୟା କୃତଃ ।
କଥମେଭିଃ ପରିତ୍ୟକ୍ତା କ୍ଷିତିରତ୍ର ସମୃଦ୍ଧିମତ୍ତ୍ । ୨୩ ।

---

ହେ ମହାମୁନେ ! ଦେବତା, ଅତିଥି, ବୃଦ୍ଧ, ପିତୃଗଣ, ବନ୍ଧୁଗଣ ଓ ଆଶ୍ରିତ ବ୍ୟକ୍ତିମାନଙ୍କୁ କେବେହେଲେ ହେଲେ ମୁଁ ଅପମାନିତ କରିନାହିଁ । ୧୯ । ହେ ମୁନି ପୁଙ୍ଗବ ! ବକ୍ଷ୍ୟ ବିଷୟକ ଯେଉଁ ପଞ୍ଚାଶତ ଅପରାଧ ନିର୍ଦ୍ଦିଷ୍ଟ ହୋଇଅଛି, ମୁଁ ଅତି ଯତ୍ନ ସହିତ ଉକ୍ତ ଅପରାଧଗୁଡ଼ିକୁ କ୍ରୋଧାନ୍ତ ସର୍ପ ତୁଲ୍ୟ ପରିତ୍ୟାଗ କରିଅଛି । ୨୦ । ଅହୋ ! ସେହି ପୁରୋହିତଙ୍କ କନିଷ୍ଠ ବିଦ୍ୟାପତି ମହୋଦୟଙ୍କର କି ଭାଗ୍ୟ ! କାରଣ ସେ ଚର୍ମଚକ୍ଷୁଦ୍ୱାରା ଭଗବାନ୍ ଶ୍ରୀନୀଳମାଧବଙ୍କୁ ଦର୍ଶନ କରିଥିଲେ । ୨୧ । ହେ ମୁନିବର ! ଆପଣ ଜାଣିଶୁଣି ମଧ୍ୟ କେଉଁ କାରଣରୁ ମୋତେ ରାଜ୍ୟ ଭ୍ରଷ୍ଟ କଲେ ଏବଂ କି ନିମନ୍ତେ ବା ଆପଣ ଯାତ୍ରା ସମୟରେ ଏ ସମସ୍ତ ବିଷୟ ପ୍ରକାଶ କଲେ ନାହିଁ ? ୨୨ । ହାୟ ! ମୁଁ କାହିଁକି ବା ବ୍ରାହ୍ମଣସ୍ଥ ଶ୍ରୋତ୍ରିୟମାନଙ୍କୁ ସ୍ଥାନଭ୍ରଷ୍ଟ କଲି । ଆହା ! କି ନିମିତ୍ତ ବା ଏମାନେ ଏହି ସମୃଦ୍ଧ ବାସସ୍ଥାନ ପରିତ୍ୟାଗ କଲେ ? ୨୩ ।

ଆବଂଶଭୂତେର୍ବୃତ୍ତିମୀ ପ୍ରଜାଭିଃ ପରିପାଳିତା ।
ମଦର୍ଥଂ ବା ପରିତ୍ୟକ୍ତା ଜୀବିଷ୍ୟନ୍ତି କଥନ୍ନୁ ତାଃ । ୨୪ ।
ପ୍ରାଣାନ୍ନ ଧାରୟିଷ୍ୟାମି ନ ଦ୍ରକ୍ଷ୍ୟାମି ଯଦା ହରିମ୍ ।
ଏଷ ମେ ନଷ୍ଟସ୍ତେ୍ୱା ବ୍ରହ୍ମନ୍ ମୟି ନଷ୍ଟେ କୁତଃ ପ୍ରଜାଃ । ୨୫ ।
ମୁନେ ସଦା ସଦଗୁଣତ୍ତ୍ୱଂ ମା ଶାସ୍ସୀଃ ଶୁଭାଶୁଭମ୍ ।
ସାମ୍ପ୍ରତଂ ମତ୍ସୁତଂ ନୀତ୍ୱା ମାଳବେଷ୍ୱଭିଷେଚୟ ।
ସ ପାଳୟତୁ ନ୍ୟାୟେନ ନ ଶୋଚନ୍ତୁ ଇମାଃ ପ୍ରଜାଃ ।୨୬।
ରାଜାନୋ ଯେ ସମାୟାତାସ୍ତେ ସର୍ବେ ମନ୍ନିଦେଶତଃ ।
ମତ୍ସୂନୋର୍ମାଲବେଶସ୍ୟ ପ୍ରୟାନ୍ତୁ ବଚନେ ସ୍ଥିତାଃ ।୨୭।
ପ୍ରାୟୋପବେଶବିଧିନା ଚିନ୍ତୟନ୍ନୀଳମାଧବମ୍ ।
ଆୟୁଃଶେଷଂ କରିଷ୍ୟାମି ସ ଏବଂ କ୍ଷେତ୍ରସଂସ୍ଥିତଃ ।୨୮।

---

ଅହୋ ! ପ୍ରଜାଗଣ ବଂଶର ଉତ୍ପତ୍ତିରୁ ଏ ପର୍ଯ୍ୟନ୍ତ ଯେଉଁ ସକଳ-ବୃତ୍ତି ଭୋଗକରି ଆସିଛନ୍ତି, କେବଳ ମୋ ନିମନ୍ତେ ତାହା ପରିତ୍ୟାଗ କରି ବର୍ତ୍ତମାନ ସେମାନେ କିପରି ଜୀବନ ଧାରଣ କରିବେ ? ୨୪ । ହେ ବ୍ରହ୍ମନ୍ ! ମୁଁ ଯଦି ସେ ହରିଙ୍କ ଦର୍ଶନରୁ ବଞ୍ଚିତ ହେଲି, ତେବେ ଏ ପ୍ରାଣ ଧାରଣ କରିବା ବୃଥା ; ଏହା ଯେତେବେଳେ ନିଷ୍ଟୟ କରିଅଛି, ସେତେବେଳେ ମୁଁ ନଷ୍ଟ ହୋଇଗଲେ ପ୍ରଜାମାନଙ୍କର ଜୀବନଧାରଣ କିପରି ସମ୍ଭବ ହେବ ? ୨୫ । ହେ ମୁନେ, ଆପଣ ସର୍ବଦା ମୋତେ ଅନୁଗ୍ରହ କରି ଶୁଭାଶୁଭ ଉପଦେଶ ଦେଇଥାଆନ୍ତି । ବର୍ତ୍ତମାନ ମୋର ଏହି ପୁତ୍ରକୁ ନେଇ ରାଜ୍ୟରେ ଅଭିଷିକ୍ତ କରନ୍ତୁ । ଏହି ସନ୍ତାନଟି ଯଥା ନ୍ୟାୟରେ ରାଜ୍ୟ ପ୍ରତିପାଳନ କଲେ ଆଉ ପ୍ରଜାମାନେ ଶୋକଗ୍ରସ୍ତ ହେବେନାହିଁ । ୨୬ । ଯେଉଁ ସମସ୍ତ ରାଜବର୍ଗଙ୍କ ସମାଗମ ହୋଇଅଛି, ସେମାନେ ସମସ୍ତେ ହିଁ ମୋର ଏହି ଅନୁମତିକ୍ରମେ ମୋ ପୁତ୍ର ମାଳବେଶର ଅନୁଗତ ହୋଇ ଗମନ କରନ୍ତୁ । ୨୭ । ମୁଁ ଏହି ଶ୍ରୀକ୍ଷେତ୍ରରେ ଅବସ୍ଥାନ ପୂର୍ବକ ପ୍ରାୟୋପବେଶନ ବ୍ରତ ଅବଲମ୍ବନ କରି ଶ୍ରୀନୀଳମାଧବଙ୍କୁ ଚିନ୍ତା କରି ସଫଳରୂପେ ଆୟୁଷ ଶେଷ କରିବ । ୨୮ ।

ଶ୍ରୀ ଜୈମିନିରୁବାଚ

ବିଲପନ୍ତମିନ୍ଦ୍ରଦ୍ୟୁମ୍ନଂ ରାଜାନଂ ବ୍ରହ୍ମଣଃ ସୁତଃ ।
ଉତ୍ଥାପ୍ୟ ଚରଣସ୍ଥଂ ବୈ ସାନ୍ତ୍ୱୟନ୍ନିଦମବ୍ରବୀତ୍ ।୨୯।

ଶ୍ରୀ ନାରଦ ଉବାଚ

ରାଜନ୍ ପଣ୍ଡିତମୂର୍ଦ୍ଧନ୍ୟୋ ବୈଷ୍ଣବୋ ଧୈର୍ଯ୍ୟସାଗରଃ ।
ଶ୍ରେୟଃ ସର୍ବସ୍ୱଂ ସତତଂ କଥଂ ବା ନାବଧାରୟେଃ ।୩୦।
ଇଦଂ ତୁ ପରମଂ ଶ୍ରେୟଃ ପୁଂସାଂ ଜନ୍ମଶତାର୍ଜିତମ୍ ।
ଶରୀରଧାରଣଂ ପଶ୍ୟେଚ୍ଚର୍ମଚକ୍ଷୁର୍ଗଦାଧରମ୍ ।୩୧।
ନିରଙ୍କୁଶା ହରେର୍ଲୀଳା ନ କେନାପ୍ୟବଧାର୍ଯ୍ୟତେ ।
ଜୀବନ୍ମୁକ୍ତୋଽପ୍ୟହଂ ରାଜଂସ୍ତଲ୍ଲୀଳାଂ ନାଧିବର୍ତ୍ତିତୁଂ ।୩୨।

---

ଶ୍ରୀଜୈମିନି କହିଲେ—ଇନ୍ଦ୍ରଦ୍ୟୁମ୍ନ ନରପତି ନାରଦଙ୍କ ପଦ-ପ୍ରାନ୍ତରେ ପତିତ ହୋଇ ଏହିରୂପ ବିଳାପ କରନ୍ତେ ବ୍ରହ୍ମାପୁତ୍ର ନାରଦ ତାଙ୍କୁ ଉତ୍ଥାପନ କରି ମଧୁର ବାକ୍ୟରେ ସାନ୍ତ୍ୱନା ଦେଇ କହିବାକୁ ଲଗିଲେ । ୨୯ । ଶ୍ରୀନାରଦ କହିଲେ—ହେ ରାଜନ୍ ! ଆପଣ ପଣ୍ଡିତ ପ୍ରଧାନ, ବିଷ୍ଣୁଭକ୍ତି-ପରାୟଣ ଓ ଧୈର୍ଯ୍ୟଗୁଣରେ ସାଗର । ଅତଏବ ସାମାନ୍ୟତଃ ସମସ୍ତ ଶ୍ରେୟ ବିଷୟମାନେ ହିଁ ଯେ ବିଘ୍ନସଙ୍କୁଳ ହୋଇଥାଏ, ଏକଥା କେଉଁ କାରଣରୁ ଆପଣ ଅବଧାରଣ କରୁନାହାନ୍ତି ? । ୩୦ । ବିଶେଷତଃ ଚର୍ମ ଚକ୍ଷୁଦ୍ୱାରା ଶରୀର ଧାରୀ ଶ୍ରୀଗଦାଧରଙ୍କୁ ଦର୍ଶନ କରିବା, ପୁରୁଷମାନଙ୍କ ଶତଜନ୍ମାର୍ଜିତ ଶ୍ରେୟ ବୋଲି ନିଶ୍ଚୟ କରିବାକୁ ହେବ । ୩୧ । ଏହି ନିରଙ୍କୁଶ ଶ୍ରୀହରିଙ୍କ ଲୀଳା କେହି ହେଲେ ଅବଧାନ କରିବାକୁ ସମର୍ଥ ନୁହନ୍ତି । ହେ ରାଜନ୍ ! ମୁଁ ଜୀବନ୍ମୁକ୍ତ ହୋଇ ମଧ ସେହି ଲୀଳାକୁ ହୃଦୟଙ୍ଗମ କରିବାକୁ ସକ୍ଷମ ହୋଇପାରି ନାହିଁ । ୩୨ । ଦେଖ, ମୁଁ କୌଣସି ବିଷୟରେ

କସ୍ୟଚିତ୍ ବଞ୍ଚିତୋ ନାହଂ ଦୃଢଭକ୍ତ୍ୟୋଽନୁକଲ୍ପିତଃ ।
ଦୁରତ୍ୟୟା ତସ୍ୟ ମାୟା ବହୁଜନ୍ମଶତୈରପି ।୩୩।
ଅନନ୍ତା ତସ୍ୟ ମାୟେୟଂ ଦୃଷ୍ଟ୍ୱୈଷା ପଦ୍ମଯୋନିନା ।
ନାଭିପଦ୍ମସ୍ଥିତେନାପି ନିତ୍ୟଞ୍ଚ ସ୍ତୁତଶାଳିନା ।୩୪।
ସ୍ୱଭାବ ଏଷ କଥିତସ୍ତସ୍ୟ ମାୟାବିନୋ ନୃପ ।
ବିଶେଷଂ କଥୟାମୀଦଂ ତ୍ୱନ୍ତୁ ଭାଗ୍ୟବତାଂ ବରଃ ।୩୫।
ଚତସ୍ରୋ ମୂର୍ତ୍ତୟସ୍ତସ୍ୟ ତ୍ୱୟ୍ୟନୁଗ୍ରହବୁଦ୍ଧୟଃ ।
ଚରାଚରାଣାଂ ଯଃ ସ୍ରଷ୍ଟା ସାକ୍ଷାଲ୍ଲୋକପିତାମହଃ ।୩୬।
ମାମୁବାଚ ବ୍ରଜାଶୁ ତ୍ୱମିନ୍ଦ୍ରଦ୍ୟୁମ୍ନସ୍ୟ ସନ୍ତିକମ୍ ।
ନୀଳାଚଳଂ ପ୍ରୟାତ୍ୟେଷ ଦିଦୃକ୍ଷୁର୍ନୀଳମାଧବମ୍ ।୩୭।

---

ବଞ୍ଚିତ ହୋଇନାହିଁ । ତଥାପି ପରମେଶ୍ୱରଙ୍କ ପ୍ରତି ଦୃଢ଼ଭକ୍ତି ଆଚରଣ କରି ସଦା ସର୍ବଦା ତାଙ୍କ ନିକଟରେ ଅବସ୍ଥାନର ସୌଭାଗ୍ୟ ପାଇଅଛି । ଏତେଶତ ଶତଶତ ଜନ୍ମଦ୍ୱାରା ତାଙ୍କ ମାୟାକୁ ଅତିକ୍ରମ କରିବା ଅତ୍ୟନ୍ତ ଅସମ୍ଭବ । ଯେହେତୁ ତାଙ୍କର ଏହି ମାୟାର ଅନ୍ତ ନାହିଁ; ଉକ୍ତ କାରଣରୁ ସ୍ୱୟଂ ପଦ୍ମଯୋନି ବ୍ରହ୍ମା ମଧ୍ୟ ତାହାଙ୍କ ନାଭି ପଦ୍ମରେ ନିତ୍ୟ ଅବସ୍ଥାନ ପୂର୍ବକ ବହୁବିଧ ସ୍ତବ ସ୍ତୁତି କରି ସେହି ମାୟାଧରଙ୍କ ମାୟାକୁ ଜାଣି ପାରନ୍ତି ନାହିଁ ।୩୪। ହେ ନୃପ ! ସେହି ମାୟାଧର ଶ୍ରୀମାଧବଙ୍କ ଏହି ସ୍ୱାଭାବିକ ଭାବ ହିଁ ବର୍ଣ୍ଣିତ ହେଲା । ଅତଏବ ପୁନର୍ବାର ବିଶେଷ ଭାବରେ ଉକ୍ତ ପ୍ରସଙ୍ଗକୁ କହୁଅଛି । କାରଣ ତୁମ୍ଭେ ଭାଗ୍ୟଧରମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟ ।୩୫। ହେ ଇନ୍ଦ୍ରଦ୍ୟୁମ୍ନ ! ସେହି ହରିଙ୍କ ମୂର୍ତ୍ତି ଚାରି ପ୍ରକାର । ଏହି ମୂର୍ତ୍ତି ଚତୁଷ୍ଟୟଙ୍କର ତୁମ୍ଭ ପ୍ରତି ଅନୁଗ୍ରହ ବୁଦ୍ଧି ପାଇଅଛି । ସେହି ଚାରି-ମୂର୍ତ୍ତି ମଧ୍ୟରେ ଯେ ଏହି ଚରାଚର ସୃଜନ କରନ୍ତି, ସାକ୍ଷାତ୍ ଲୋକ-ପିତାମହ ବ୍ରହ୍ମା ମୋତେ ଏହି କଥା କହିଅଛନ୍ତି ।୩୬। ହେ ନାରଦ ! ତୁମ୍ଭେ ଯଥାଶୀଘ୍ର ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ନିକଟକୁ

ଅନ୍ତର୍ଦ୍ଧାନଂ ଗତୋ ହ୍ୟେଷ ଯମେନ ପ୍ରାର୍ଥିତୋ ବିଭୁଃ ।
ନ ତତ୍ର ଶୋକଃ କର୍ତ୍ତବ୍ୟଃ ଶକ୍ୟତେ ତତ୍ର ନାନ୍ୟଥା ।୩୮।
ବାଚ୍ୟୋ ମଦ୍‌ବଚନାଦ୍ ରାଜା ପଞ୍ଚମୀ ମମ ସନ୍ତତିଃ ।
ତତ୍କୃତେ ପରମାତ୍ମାନଂ ପ୍ରସାଦ୍ୟ ପୁରୁଷୋତ୍ତମମ ।
ଶ୍ୱେତଦ୍ୱୀପାନ୍ନୟିଷ୍ୟାମି ସହସ୍ରାନ୍ତେ ମହାକ୍ରତୋଃ ।୩୯।
ଇନ୍ଦ୍ରଦ୍ୟୁମ୍ନଃ ସ ଇଦାନୀଂ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ ।
ଅଶ୍ୱମେଧ-ସହସ୍ରୈସ୍ତୁ ଯଜନ୍ ବିଷ୍ଣୁଂ ସ ତିଷ୍ଠତୁ ।୪୦।
ତଦନ୍ତେ ଦାରବତନୁଂ ବିଷ୍ଣୁଂ ଦ୍ରକ୍ଷ୍ୟତି ଚକ୍ଷୁଷା ।
ସୋଽବତାରେ ହରେଃ ଖ୍ୟାତିଂ ତସ୍ୟ ଦ୍ୱାରା ଗମିଷ୍ୟତି ।
ତଦ୍ଦାରୁତନବୋ ବିଷ୍ଣୋଃ ପ୍ରତିଷ୍ଠାପ୍ୟ ମୟା ଧ୍ରୁବମ୍ ।୪୧।

ଗମନ କର । ସେ ନୀଳମାଧବଙ୍କ ଦର୍ଶନାଭିଳାଷୀ ହୋଇ ନୀଳାଚଳ ଅଭିମୁଖରେ ଯାତ୍ରା କରିବା ନିମନ୍ତେ ଉଦ୍‌ଯୋଗୀ ହୋଇଅଛନ୍ତି । କିନ୍ତୁ ସେହି ବିଭୁ ନୀଳମାଧବ, ଯମରାଜଙ୍କ ପ୍ରାର୍ଥନା କ୍ରମେ ଯେ ଅନ୍ତର୍ହିତ ହୋଇଅଛନ୍ତି, ସେ କଥା ଜାଣି ରାଜା ଇନ୍ଦ୍ରଦ୍ୟୁମ୍ନ ଯେପରି ଶୋକ ପ୍ରକାଶ ନ କରନ୍ତି । କାରଣ ତାହା କଦାପି ଅନ୍ୟଥା ହୋଇପାରିବ ନାହିଁ । ୩୮ । ତୁମ୍ଭେ ପ୍ରସଙ୍ଗ-କ୍ରମେ ରାଜାଙ୍କୁ କହିବ, ସେ (ରାଜା) ମୋର ଅଧସ୍ତନ ପଞ୍ଚମ ସନ୍ତାନ ଏବଂ ତାହାଙ୍କ ନିମନ୍ତେ ମୁଁ ସେହି ପରମାତ୍ମା ପୁରୁଷୋ-ତ୍ତମଙ୍କୁ ପ୍ରସନ୍ନ କରି ସହସ୍ର ଯଜ୍ଞ ସମାପ୍ତି ପରେ ଶ୍ୱେତ ଦ୍ୱୀପରୁ ନେଇ ଆସିବି । ୩୯ । ସେହି ଇନ୍ଦ୍ରଦ୍ୟୁମ୍ନ ସମ୍ପ୍ରତି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କ୍ରମଶଃ ଅଶ୍ୱମେଧ ଯଜ୍ଞ ସହସ୍ରଦ୍ୱାରା ଶ୍ରୀବିଷ୍ଣୁଙ୍କୁ ଆରାଧନା କରି ଅବସ୍ଥାନ କରନ୍ତୁ । ୪୦ । ତଦନନ୍ତର ସେହି ଦାରୁମୟ-ମୂର୍ତ୍ତି ବିଷ୍ଣୁଙ୍କୁ ଏହି ଚର୍ମ ଚକ୍ଷୁଦ୍ୱାରା ହିଁ ଦର୍ଶନ କରିବାକୁ ପାଇବେ ଏବଂ ବିଷ୍ଣୁଙ୍କ ଏହି ଅବତାର ରାଜା ଇନ୍ଦ୍ରଦ୍ୟୁମ୍ନ ଦ୍ୱାରା ହିଁ ସର୍ବଜନ ବିଦିତ ହୋଇଯିବ ଏବଂ ମୁଁ ନିଜେ ସେହି ଦାରୁମୟ ବିଗ୍ରହ ଚତୁଷ୍ଟୟଙ୍କୁ ପ୍ରତିଷ୍ଠା କରିବି । ୪୧ ।

ପୁରା ସ୍ମ ମଣିମୂର୍ତ୍ତିସ୍ଥ ଚତୁର୍ଦ୍ଧାବସ୍ଥିତୋ ହରିଃ ।
ଦୃଷ୍ଟ୍ୱା ପୁରୋଧସା ତସ୍ୟ ସାକ୍ଷାଦଗ୍ରେ ନିବେଦିତଃ ।୪୨।
ଦିବ୍ୟଦାରୁବପୁର୍ଭୂୟସ୍ତୁର୍ଦ୍ଧାବତରିଷ୍ୟତି ।୪୩।
ତସ୍ମାନ୍ନ ବ୍ୟଥ ରାଜେନ୍ଦ୍ର ବାଞ୍ଛା ତେ ସଫଳା ଧ୍ରୁବମ୍ ।
ଭବିଷ୍ୟତି ନ ସନ୍ଦେହୋ ନିର୍ବ୍ୟଳୀକୋ ବସୋତ୍ସବୈଃ ।୪୪।

ଶ୍ରୀ ଜୈମିନିରୁବାଚ

ସାନ୍ତ୍ୱୟିତ୍ୱା ନିନାଶ୍ୱେତ୍ତଥଂ ରାଜାନଂ ନାରଦସ୍ତଦା ।
ବିଶ୍ୱାସଦୃଢ଼ଂ ବିପ୍ରାଃ ପୁନର୍ବାକ୍ୟମୁବାଚ ହ ।୪୫।

ଶ୍ରୀ ନାରଦ ଉବାଚ

ଶଙ୍ଖାକୃତେଃ କ୍ଷେତ୍ରବରସ୍ୟ ଗୃଗେ ଯୋ ନୀଳକଣ୍ଠଃ କିଲ ଦୁର୍ଗ ଆସ୍ତେ ।
ସମୋ ବସ୍ଥଂ ତତ୍ର ହି ବାଜିମେଧନ୍ତ ତଦ୍‌ଯୋଗ୍ୟା ସୁଷମା ସ୍ଥଳୀସା ।୪୬।

---

ପୂର୍ବକାଳରେ ଭଗବାନ ମଣିମୟ ମୂର୍ତ୍ତି ଧାରଣ କରି ଚାରି ମୂର୍ତ୍ତିରେ ବିରାଜିତ ଥିଲେ । ପୁରୋହିତ ବିଦ୍ୟାପତି ତାହା ଦର୍ଶନ କରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ନିବେଦନ କରିଥିଲେ । ୪୨ । ଭବିଷ୍ୟତରେ ଭଗବାନ ଦିବ୍ୟ ଦାରୁମୟ ଚାରୋଟି ଶରୀର ବା ମୂର୍ତ୍ତିରେ ଅବତୀର୍ଣ୍ଣ ହେବେ । ୪୩ । ଅତଏବ ହେ ରାଜେନ୍ଦ୍ର ! ଆପଣ ବ୍ୟଥିତ ବା ଚିନ୍ତିତ ହୁଅନ୍ତୁ ନାହିଁ । ଆପଣଙ୍କ ମନୋବାଞ୍ଛା ନିଶ୍ଚୟ ସଫଳ ହେବ, ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଆନନ୍ଦରେ ବିଶ୍ୱାସ ସହିତ ଅବସ୍ଥାନ କରନ୍ତୁ । ୪୪ । ଶ୍ରୀ ଜୈମିନି କହିଲେ—ହେ ଦ୍ୱିଜଗଣ ! ନାରଦ ଋଷି ଏହି ପ୍ରକାରେ ରାଜାଙ୍କୁ ସାନ୍ତ୍ୱନା ଦେଇ ପୁନରାୟ ତାଙ୍କ ବିଶ୍ୱାସକୁ ଦୃଢ଼ କରିବା ପାଇଁ କହିଲେ । ୪୫ । ନାରଦ କହିଲେ—ହେ ରାଜନ୍, ସେହି ଶଙ୍ଖାକୃତି ଅତ୍ୟନ୍ତ ଉତ୍ତମ କ୍ଷେତ୍ରଧାମର ଦୁର୍ଗମ ଅଗ୍ରଭାଗରେ ସେହି ଦୁଷ୍ପ୍ରାପ୍ୟ ନୀଳକଣ୍ଠ ଶିବ ବିରାଜିତ ଅଛନ୍ତି । ଆମ୍ଭେମାନେ ଅଶ୍ୱମେଧ ଯଜ୍ଞ ନିମନ୍ତେ ଏହି ସମତଳ ସ୍ଥଳୀକୁ

ତସ୍ୟାଂ ବିନିର୍ମାସ୍ୟ ସହସ୍ରବର୍ଷଂ ସ୍ଥିରାଂ ସୁଶୀଲାଂ ହୟମେଧନାସ୍ଥ ।
ନୀଳାଦ୍ରିବାସସ୍ୟ ନୃସିଂହ ମୂର୍ତ୍ତିଂ
ଦୃଷ୍ଟ୍ବା କୃତାର୍ଥଂ ବିରଚଯ୍ୟ ଜନ୍ମ । ୪୭ ।
ତସ୍ୟୈବ ମୂର୍ତ୍ତିଂ ପ୍ରତିଯାତନାନ୍ତେ
ନିତ୍ୟାର୍ଚ୍ଚନୀୟାଂ ଭଜ. ପୂଜନୀୟାମ୍ ।
ପ୍ରତ୍ୟକ୍ ପ୍ରତିଷ୍ଠାସ୍ଥ ସମସ୍ତବିଘ୍ନ-
ବିନାଶହେତୋଃ ଫଳବୃଂହଣାୟ ।୪୮।
ଆରପ୍‌ସ୍ୟାମଃ କ୍ରତୁବରଂ ମୁନିବର୍ଯ୍ୟୈର୍ଯଥୋଦିତମ୍ ।
ବିଲମ୍ବୋଽତ୍ର ନ ହି ଶ୍ରେୟାନିତି ପୈତାମହଂ ବଚଃ ।୪୯।
ଇତି ଶ୍ରୀସ୍କାନ୍ଦେ ବିଦ୍ୟାପତିତୋ ଭଗବତୋଽନ୍ତର୍ଦ୍ଧାନବାର୍ତ୍ତା-
ଶ୍ରବଣେନ ଶୋକାର୍ତ୍ତିସ୍ୟେନ୍ଦ୍ରଦ୍ୟୁମ୍ନସ୍ୟ ନାରଦକର୍ତ୍ତୃକଂ
ସାନ୍ତ୍ୱନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।୧୪।

---

ଗମନ କରିବା ଏବଂ ସେହି ସ୍ଥାନରେ ଅଶ୍ୱମେଧ ଯଜ୍ଞ ପାଇଁ ସହସ୍ର ବର୍ଷ ପର୍ଯ୍ୟନ୍ତ ଶ୍ରୀନୀଳାଦ୍ରିନାଥଙ୍କ ସ୍ଥିର ଓ ସୁଶୀଳା ନରସିଂହ ମୂର୍ତ୍ତି ନିର୍ମାଣ କରି ତାହା ଦର୍ଶନ ପୂର୍ବକ ନିଜ ଜୀବନକୁ କୃତାର୍ଥ କରିବା । ୪୭ । ଭଗବାନ ପୁରୁଷୋତ୍ତମଙ୍କ ମୂର୍ତ୍ତି ଦର୍ଶନ ନ କରିବା ହେତୁ ଆପଣଙ୍କର ଯେଉଁ ଯାତନା ହେଉଅଛି, ତାହା ଏହି ନିତ୍ୟ ବନ୍ଦନୀୟ ଓ ପୂଜନୀୟ ନରସିଂହ ମୂର୍ତ୍ତିଙ୍କୁ ଭଜନ କରି ଅପନୋଦନ କର । ସର୍ବପ୍ରଥମେ ଏହାଙ୍କୁ (ନୃସିଂହଙ୍କୁ) ପ୍ରତିଷ୍ଠା କଲେ ସକଳ ପ୍ରକାର ବିଘ୍ନ ବିନଷ୍ଟ ହୋଇ ମହତ୍ ଫଳର ସମୃଦ୍ଧି ଘଟିବ । ୪୮ । ଅତଏବ ଏ ବିଷୟରେ ବିଳମ୍ବ କରିବା ଉଚିତ ନୁହେଁ । ଏହା ପିତାମହ ବ୍ରହ୍ମା କହି-ଅଛନ୍ତି । ବର୍ତ୍ତମାନ ଆସ, ଆମ୍ଭେମାନେ ସମବେତ ହୋଇ ସେହି କ୍ରତୁ ପ୍ରଧାନ ଅଶ୍ୱମେଧ ଯଜ୍ଞ ଯଥା ଶାସ୍ତ୍ର ବିଧାନରେ ଆରମ୍ଭ କରିବା । ୪୯ ।

॥ ଚତୁର୍ଦ୍ଦଶ ଅଧ୍ୟାୟ ସମାପ୍ତ ॥

# ପଞ୍ଚଦଶୋଽଧ୍ୟାୟଃ

ଶ୍ରୀ ଜୈମିନିରୁବାଚ

ତତସ୍ତେ ପ୍ରସ୍ଥିତା ବିପ୍ରା ନୀଳକଣ୍ଠାନ୍ତିକଂ ମୁଦା ।
ପ୍ରପୂଜ୍ୟ ତଂ ମହାଦେବଂ ଦୁର୍ଗାଞ୍ଚ ପ୍ରଣିପତ୍ୟ ଚ ।୧।
ବିମୁଚ୍ୟ ସ୍ୟନ୍ଦନବରଂ ପାଦଗ୍ରାଃ ସହାନୁଗାଃ ।
ଆରୋଢୁଂ ନୀଳଭୂମିଧ୍ରଂ ପ୍ରସ୍ଥିତାଃ ସଂଯତେନ୍ଦ୍ରିୟାଃ ।୨।
ନାନାଦ୍ରୁମଲତାକୀର୍ଣ୍ଣଂ ନାନାପକ୍ଷିଗଣାବୃତମ୍ ।
ଶିଳାବିଷମସଂରୋଧମଭିତଃ ପରିବେଶକମ୍ ।୩।
ଭ୍ରମଦ୍ଭ୍ରମରସମ୍ଭୂତ-ଭ୍ରମକୃଦ୍ ଗଣ୍ଡଶୈଳକମ୍ ।
ଦକ୍ଷିଣାମ୍ଭୋଧିକଲ୍ଲୋଳ-ଜଳାବୃତ-ନିତମ୍ବକମ୍ ।୪।
ଅପ୍ରତର୍କ୍ୟଂ ସଦା ମର୍ତ୍ତ୍ୟୈ ଦୁଷ୍ପ୍ରବେଶ୍ୟଂ ମହୋରଗୈଃ ।
ମତ୍ତମାତଙ୍ଗକପଟା ବୃଂହିତୈର୍ଭୀଷଣାନ୍ତରମ୍ ।୫।

---

## ପଞ୍ଚଦଶ ଅଧ୍ୟାୟ

ଶ୍ରୀଜୈମିନି କହିଲେ—ହେ ଦ୍ୱିଜଗଣ ! ତଦନନ୍ତର ସମସ୍ତେ ସେହି ନୀଳକଣ୍ଠଙ୍କ ନିକଟକୁ ଆନନ୍ଦରେ ସହିତ ଗମନ କଲେ ଏବଂ ସେହି ମହାଦେବ ଓ ଦୁର୍ଗାଙ୍କୁ ପୂଜା ପ୍ରଣିପାତ କରି ରାଜପଥ ପରିତ୍ୟାଗ ପୂର୍ବକ ଇନ୍ଦ୍ରିୟ ସଂଯମ ସହିତ ଅନୁଚରମାନଙ୍କ ସଙ୍ଗରେ ନୀଳ-ପର୍ବତୋପରି ଆରୋହଣ କରିବା ନିମନ୍ତେ ପଦଯାତ୍ରାରେ ଗମନ କରିବାକୁ ଲାଗିଲେ । ୨ । ଏହି ପର୍ବତଟି ନାନାପ୍ରକାର ଲତା ଓ ଦ୍ରୁମଦ୍ୱାରା ଆକୀର୍ଣ୍ଣ, ବହୁବିଧ ପକ୍ଷିଗଣ ପରିପୂର୍ଣ୍ଣ, ଶିଳାଗୁଡ଼ିକ ରାଶିକୃତ ହେବା ଫଳରେ ଗମନପଥ ସଂରୁଦ୍ଧ ତଥା ଦୁର୍ଗମ ଏବଂ ଚତୁର୍ଦ୍ଦିଗ ପରିଧି-ବିଶିଷ୍ଟ । ୩ । ତହିଁରେ ଭ୍ରମରଗଣ ପରି ଭ୍ରମିତ । କ୍ଷୁଦ୍ର କ୍ଷୁଦ୍ର ପ୍ରସ୍ତର ସମୂହ ଇତସ୍ତତଃ ବିକ୍ଷିପ୍ତ ଏବଂ ଦକ୍ଷିଣ ସାଗରର ତରଙ୍ଗ ମାଳାରେ ଏହାର ନିତମ୍ବ ଦେଶ ପରିପ୍ଳାବିତ ।୪। ମନୁଷ୍ୟମାନେ ଏହି ନୀଳ ପର୍ବତର ମାହାତ୍ମ୍ୟ ତର୍କଦ୍ୱାରା ସ୍ଥିର କରିବାକୁ ଚିର ଅସମର୍ଥ ଅଟନ୍ତି । ଭୟାନକ ସର୍ପସମୂହ ଇତସ୍ତତଃ ସଞ୍ଚରଣଶୀଳ ଓ ମତ୍ତମାତଙ୍ଗମାନଙ୍କର ଘୋରତର ଚିତ୍କାରଦ୍ୱାରା ଏହାର ଅନ୍ତର୍ଭାଗଟି ଅତି ଦୁର୍ଗମ ଓ ଭୟାନକ । ୫ ।

ଶ୍ୱାପଦୈର୍ଦୁଷ୍ଟୈର ସଂବାଧୈଃ ଶସ୍ତ୍ରାଘାତମବେଦିଭିଃ ।
ନିର୍ଭୟୈଃ ପରିତଃ କ୍ରାନ୍ତଂ ମୃଗଯୂଥୈରନେକଶଃ ।୬।
ପ୍ରବେଷ୍ଟୁକାମା ନ ପ୍ରାପୁର୍ଯଦା ତେ ମାର୍ଗମନ୍ତରେ ।
ତଦା ନାରଦସଂସର୍ଗାଦ୍ଦିବ୍ୟଗତ୍ୟା ଗିରେଃ ଶିରଃ ।୭।
ଆସେଦୁର୍ଯତ୍ର ବସତି କୃଷ୍ଣାଗୁରୁତରୋରଧଃ ।
ସର୍ବାପଦ୍ଭୟସଂହର୍ତ୍ତା ଦିବ୍ୟସିଂହତନୁର୍ବିଭୁଃ ।୮।
ଯଂ ଦୃଷ୍ଟ୍ୱା ବ୍ରହ୍ମହତ୍ୟାସ୍ତା ଲୀୟନ୍ତେ କୋଟିଶୋ ନୃଣାମ୍ ।
ବ୍ୟାତ୍ତାସ୍ୟଂ ଭୀମଦଶନମାପିଙ୍ଗଲ-ସଟାକୁଲମ୍ ।୯।
ଉଗ୍ରଂ ତ୍ରିନେତ୍ରଂ ଦୈତ୍ୟସ୍ୟ ସ୍ୱୋର୍ବୋରୁତ୍ତାନଶାୟିନଃ ।
ବକ୍ଷଃସ୍ଥଳଂ ଦାରୟନ୍ତଂ ନଖରୈର୍ବଜ୍ରଦାରୁଣୈଃ ।୧୦।

---

ଶ୍ୱାପଦଗଣ ସେହି ପର୍ବତରେ ଚିରବାସ ନିବନ୍ଧନ ବ୍ୟାଧମାନଙ୍କ ଦ୍ୱାରା ଶସ୍ତ୍ରାଘାତ ବେଦନା କୌଣସି ସମୟରେ ଅନୁଭବ କରନ୍ତି ନାହିଁ । ଏଣୁ ସେମାନେ ନିର୍ଭୟରେ ନୀଳପର୍ବତର ଚତୁର୍ଦ୍ଦିଗରେ ପରିଭ୍ରମଣ କରୁଥାଆନ୍ତି । ଅନ୍ୟାନ୍ୟ ବହୁବିଧ ମୃଗସମୂହ ଭୟଶୂନ୍ୟ ହୋଇ ସେଠାରେ ବାସ କରନ୍ତି । ୬ । ମହାରାଜ ଅନୁଚରମାନଙ୍କ ସହିତ ପ୍ରବେଶାର୍ଥୀ ହୋଇ ବହୁ ଚେଷ୍ଟା କରି ମଧ୍ୟ ଯେତେବେଳେ ତହିଁରେ ପଥପ୍ରାପ୍ତ ହୋଇ ପାରିଲେ ନାହିଁ, ସେତେବେଳେ ଦେବର୍ଷି ନାରଦ ଦିବ୍ୟଗତି ଦ୍ୱାରା ସେମାନଙ୍କୁ ସଙ୍ଗରେ ନେଇ ନୀଳପର୍ବତର ଶିଖର ଦେଶରେ ପ୍ରବେଶ କଲେ । ୭ । ଦେଖିଲେ, ସେହି ସ୍ଥାନରେ ଏକ କୃଷ୍ଣାଗୁରୁ ବୃକ୍ଷର ଅଧୋଭାଗରେ ଭଗବାନ ବିପଦ ଭଞ୍ଜନ ବିଭୁ ଦିବ୍ୟ ନରସିଂହ ମୂର୍ତ୍ତି ଧାରଣକରି ଅବସ୍ଥାନ କରିଅଛନ୍ତି । ତାଙ୍କୁ ଦର୍ଶନ କରିବା ମାତ୍ରେ କୋଟି କୋଟି ବ୍ରହ୍ମହତ୍ୟା ଜନିତ ପାପ ବିନଷ୍ଟ ହୁଏ । ସେହି ନରସିଂହ-ରୂପୀ ଭଗବାନ୍ ଭୟାନକ ଭାବରେ ମୁଖକୁ ବିସ୍ତାର କରି ରହି-ଅଛନ୍ତି । ୯ । ତାଙ୍କର ଦନ୍ତଗୁଡ଼ିକ ଅତ୍ୟନ୍ତ ଭୀଷଣାକୃତି, ସଟା-ସମୂହ ସମ୍ପୂର୍ଣ୍ଣ ପିଙ୍ଗଳବର୍ଣ୍ଣ, ତିନିଗୋଟି ନେତ୍ର ଉଗ୍ରଭାବାପନ୍ନ । ନିଜର ଉରୁଦ୍ୱୟ ଉପରେ ଉତ୍ତାନ ଭାବରେ ଶାୟିତ ହିରଣ୍ୟ-କଶିପୁ ଦୈତ୍ୟର ବକ୍ଷସ୍ଥଳ ବଜ୍ରସଦୃଶ ଦାରୁଣ ନଖଦ୍ୱାରା ସେ ବିଦାରଣ କରୁଅଛନ୍ତି । ୧୦ ।

ଅରୁଣାଭଲଲଜ୍ଜିହ୍ୱଂ ସାଟ୍ଟହାସମୁଖଂ ବିଭୁମ୍ ।
ଶଙ୍ଖଚଞ୍ଚଲସଦ୍‌ବାହୁଂ କିରୀଟମୁକୁଟୋଜ୍ଜ୍ୱଳମ୍ ।୧୧।

ବକ୍ତ୍ରୋଜ୍ଜ୍ୱଲଦ୍‌ବହ୍ନିଶିଖା ସନ୍ତାପିତଦିଗନ୍ତରମ୍
ପ୍ରଚଣ୍ଡାଘାତଭୂମ୍ୟନ୍ତଃପ୍ରବିଷ୍ଟପଦପଙ୍କଜମ୍ ।୧୨।

ତମାଦିମୂର୍ତ୍ତିଂ ତେ ଦୃଷ୍ଟ୍ୱା ନାରଦାଗ୍ରେ ତଦା ହରିମ୍ ।
ନିର୍ଭୟା ଦଦୃଶୁର୍ଦୂରାତ୍ ପ୍ରଣେମୁର୍ବିଗତକ୍ଲମାଃ ।୧୩।

ଇନ୍ଦ୍ରଦ୍ୟୁମ୍ନୋଽପି ତଂ ଦୃଷ୍ଟ୍ୱା ନାରଦୋକ୍ତୌ ବିଶଶ୍ୱସେ ।
ଭାବିକାର୍ଯ୍ୟେ ପ୍ରତ୍ୟୟବାନିଦମାହ ମହାମୁନିମ୍ ।୧୪।

ରାଜୋବାଚ

ମହର୍ଷେ କୃତକୃତ୍ୟୋଽସ୍ମି ତ୍ୱଂ ବିଜ୍ଞାନନିଧିଃ ପରମ୍ ।
ଦୁରାରାଧ୍ୟୋ ନୃସିଂହୋଽୟଂ ଦର୍ଶନେଽପି ଭୟାବହଃ ।୧୫।

---

ତାଙ୍କର ଶ୍ରୀଅଙ୍ଗ ଆଭା ରକ୍ତବର୍ଣ୍ଣ, ଜିହ୍ୱା ଲଲିତ । ଶ୍ରୀମୁଖରେ ଅଟ୍ଟହାସ୍ୟ, ଦୁଇଟି ବାହୁରେ ଚଞ୍ଚଳ ଚକ୍ର ଓ ଶଙ୍ଖ । ଶିରସ୍ଥିତ କିରୀଟ ଓ ଅପୂର୍ବ ମୁକୁଟ ତାଙ୍କୁ ଅତ୍ୟନ୍ତ ସମୁଜ୍ଜ୍ୱଳ କରୁଅଛି ।୧୧। ମୁଖରୁ ଉଦ୍‌ଗତ ଜ୍ୱଳନ୍ତ ବହ୍ନିଶିଖା ଦ୍ୱାରା ସମସ୍ତ ଦିଗ୍‌ବିଦିଗ ସନ୍ତାପିତ ହେଉଅଛି । ପ୍ରଚଣ୍ଡ ଆଘାତ ହେତୁ ପଦପଙ୍କଜ ଭୂ ମଧ୍ୟରେ ପ୍ରବିଷ୍ଟ ହୋଇଅଛି ।୧୨। ସେମାନେ ସମସ୍ତେ ନାରଦଙ୍କ ଅଗ୍ରଭାଗରେ ସେହି ଆଦିମୂର୍ତ୍ତି ସନାତନ ବିଷ୍ଣୁଙ୍କୁ ଦୂରରୁ ନିର୍ଭୟରେ ଦର୍ଶନ ଓ ପ୍ରଣାମ ପୂର୍ବକ ମାନସିକ କଷ୍ଟକୁ ଦୂରକଲେ ।୧୩। ରାଜା ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ଏହି ଅଦ୍ଭୁତ ରୂପକୁ ଦର୍ଶନ କରି ନାରଦଙ୍କ ପୂର୍ବୋକ୍ତ ବାକ୍ୟରେ ବିଶ୍ୱାସ ପୂର୍ବକ ଭବିଷ୍ୟତ କାର୍ଯ୍ୟ ସମ୍ପର୍କରେ ମୁନିବରଙ୍କୁ କହିଲେ— ହେ ମହର୍ଷେ ! ଆପଣଙ୍କ ଅନୁଗ୍ରହରେ ମୁଁ କୃତାର୍ଥ ହେଲି ।୧୫। ଆପଣ ଅଦ୍ୱିଷ୍ଠପୁ

ଭଵାଦୃଶୈଃ ସୁସେଵ୍ୟୋଽୟଂ ମାଦୃଶୈର୍ଦୂରତୋଽପି ସଃ ।
ଦର୍ଶନାତ୍ କୃତକୃତ୍ୟୋଽସ୍ମି ଫଲୀନାଶେଷପାତକଃ ।୧୬।
ତ୍ୱତ୍ ସନ୍ନିଧାନାଦେଵାତ୍ର ତଷ୍ଠାମୋ ନିର୍ଭୟା ମୁନେ ।
ଅତ୍ୟୁଗ୍ରମୂର୍ତ୍ତିର୍ଭଗଵାନ୍ ସ୍ୱଲ୍ପଵୀର୍ଯୈର୍ନୃଭିଃ କଥମ୍ ।୧୭।
ଆରାଧତେ ଦୈତ୍ୟରାଜଂ ତ୍ରୈଲୋକ୍ୟୈକଂ ଵଦାରଣ୍ଡନ୍ ।
ଯସ୍ୟ ନୀଲମୟୀ ମୂର୍ତ୍ତିଃ କୃପାସିନ୍ଧୋଃ ସ୍ଥିତୋଽତ୍ର ଵୈ ।୧୮।
କସ୍ମିନ୍ ସ୍ଥାନେ ମୁନିଶ୍ରେଷ୍ଠ ଦର୍ଶନାତ୍ ଯା ଵିମୁକ୍ତିଦା ।
ତନ୍ନୋ ଦର୍ଶୟ ଵିପ୍ରେନ୍ଦ୍ର ଯନ୍ନୋ ମୁକ୍ତିପ୍ରଦଂ ମତମ୍ ।୧୯।

ଶ୍ରୀ ଜୈମିନିରୁଵାଚ

ଇତ୍ୟୁକ୍ତୋ ନାରଦସ୍ତସ୍ମୈ ଦର୍ଶୟାମାସ ପାଵନମ୍ ।
ସ୍ଥାନଂ ଯତ୍ର ସ୍ଥିତୋ ଦେଵଃ ସ୍ୱର୍ଣ୍ଣଵାଲୁକୟା ଵୃତଃ ।୨୦।

---

ଜ୍ଞାନ ସାଗର ଅଟନ୍ତି । ଏହି ଦୁର୍ଦ୍ଧର୍ଷ ନରସିଂହ ଦେବଙ୍କ ଉପାସନା ଦର୍ଶନ ଓ ସନ୍ନିହିତ ଆପଣମାନଙ୍କ ପରି ମହାପୁରୁଷ ମାନଙ୍କର ସୁଖସେବ୍ୟ ନୁହେଁ । ଦୂରରୁ ଆମ୍ଭମାନଙ୍କ ପରି ସାଧାରଣଙ୍କ ପକ୍ଷରେ ମଧ୍ୟ ସୁଖସେବ୍ୟ ଅଟେ । ମୁଁ ଏହାଙ୍କ ଦର୍ଶନ ଦ୍ୱାରା ଅଶେଷ ପାତକରାଶି ଦୂରକରି କୃତକୃତ୍ୟ ହୋଇଅଛି । ୧୬। ହେ ମୁନି ! ଆପଣଙ୍କର ସନ୍ନିଧାନ ହେତୁ ଆଜ ଆମ୍ଭେମାନେ ଏଠାରେ ଉପୃଶୂନ୍ୟ ହୋଇ ଅବସ୍ଥାନ କରିବୁ । ତିନଲୋକର ଅଧିକାରୀ ଦୈତ୍ୟରାଜର ବିଦାରଣକାରୀ ଅତ୍ୟନ୍ତ ଉଗ୍ରମୂର୍ତ୍ତି ଏହି ନୃସିଂହ ଭଗବାନଙ୍କୁ କ୍ଷୀଣବୀର୍ଯ୍ୟ ମନୁଷ୍ୟମାନେ କି ପ୍ରକାରେ ଆରାଧନା କରିବାକୁ ସମର୍ଥ ହେବେ ? ।୧୭। ଅତଏବ ହେ ମୁନିବର ! ଏହି ସ୍ଥାନରେ ବା କେଉଁଠାରେ ସେହି ନୀଳକାନ୍ତମଣି-ନିର୍ମିତା-କୃପାମୟୀ ଭଗବାନ ମୂର୍ତ୍ତି ଅଛନ୍ତି, ଯାହାଙ୍କର ଦର୍ଶନମାତ୍ରେ ହିଁ ମୁକ୍ତି ହୋଇଥାଏ, ତାହା ଆମ୍ଭମାନଙ୍କୁ ଦର୍ଶନ କରାଇ ଦିଅନ୍ତୁ । ଶ୍ରୀଜୈମିନି କହୁଅଛନ୍ତି—ନାରଦଋଷି ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଉକ୍ତ ପ୍ରକାରେ ଅଭିହିତ ହୋଇ ତାହାଙ୍କୁ ସ୍ୱର୍ଣ୍ଣବାଲୁକାବୃତ ଶ୍ରୀଜଗନ୍ନାଥ ଦେବ ଯେଉଁ ସ୍ଥାନରେ ଅଛନ୍ତି, ସେହି ପରମ ପବିତ୍ର ସ୍ଥାନକୁ ଦର୍ଶନ କରାଇଦେଲେ ।୨୦।

ପଞ୍ଚୈକଯୋଜନାୟାମଂ ଯୋଜନଦ୍ୱୟମୁଚ୍ଛ୍ରିତମ୍ ।
କଳ୍ପାନ୍ତସ୍ଥାୟିନଂ ଭୂପ ନ୍ୟଗ୍ରୋଧଂ ମୁକ୍ତିଦଂ ମତମ୍ ।୨୧।
ଛାୟାସ୍ତସ୍ୟ କ୍ରମଣାଦ୍ ଯସ୍ୟ ମୁଚ୍ୟତେ ପାପକଞ୍ଚୁକାତ୍ ।
ଅସ୍ୟମୂଲେ ତ୍ୟଜନ୍ ପ୍ରାଣାନ୍ ନରୋ ମୁକ୍ତିମବାପ୍ନୁୟାତ୍ ।୨୨।
ନ୍ୟଗ୍ରୋଧରୂପଂ ଦୃଷ୍ଟ୍ୱାପି ନାରାୟଣମକଲ୍ମଷମ୍ ।
ନିଷ୍ପାପୋ ଜାୟତେ ମର୍ତ୍ତ୍ୟଃ କିମୁ ତଂ ପୂଜୟନ୍ ସ୍ତୁବନ୍ ।୨୩।
ଅସ୍ୟ ମୂଲାତ୍ ପ୍ରତୀଚ୍ୟାଂ ହି ନୃସିଂହସ୍ୟୋତ୍ତରେ ନୃପ ।
ଅଦ୍ଭୁତମାଧବୋ ହ୍ୟତ୍ର ଚତୁର୍ମୂର୍ତ୍ତିଧରୋ ବିଭୁଃ ।୨୪।
ଅନୁଗ୍ରହାତୁଂ ତ୍ୱାମେବ ପୁନରତ୍ର ଭବିଷ୍ୟତି ।
ଶ୍ୱେତଦ୍ୱୀପେ ଯଥା ବିଷ୍ଣୋର୍ଭୋଗ ଭୂମୌ ନିକାଲୟଃ ।୨୫।

---

ନାରଦ କହିଲେ—ହେ ଭୂପ ! ଏହି ଯେ ଏକ ଯୋଜନ ବିସ୍ତୃତ ଓ ଦୁଇ ଯୋଜନ ଉନ୍ନତ ବଟବୃକ୍ଷ ଦେଖୁଅଛନ୍ତି, ଏହା ମୁକ୍ତି-ଦାୟକ ଓ କଳ୍ପାନ୍ତସ୍ଥାୟୀ । ଏହାର ଛାୟା ସ୍ପର୍ଶ କରି ନରଗଣ ପାପରୂପ କଞ୍ଚୁକରୁ ମୁକ୍ତିଲଭ ପାଇଁ ସମର୍ଥ ହୁଅନ୍ତି । ଏହାର ମୂଳ ପ୍ରଦେଶରେ ପ୍ରାଣତ୍ୟାଗ କଲେ ମୁକ୍ତିଲଭ ହୁଏ ।୨୨। ଏହି ନିର୍ମଳ ବଟବୃକ୍ଷରୂପୀ ନାରାୟଣଙ୍କୁ ଦର୍ଶନ କଲେ ମର୍ତ୍ତ୍ୟବାସୀଗଣ ନିଷ୍ପାପ ହୁଅନ୍ତି ଏବଂ ତାହାଙ୍କୁ ପୂଜା ଓ ସ୍ତବ କଲେ ଯେ କେତେ ବଡ଼ ଫଳ ଲଭ ହୁଏ, ତାହା ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର । ହେ ରାଜନ୍ । ଏହି ତରୁବରଙ୍କ ମୂଳ ପ୍ରଦେଶରୁ ପଶ୍ଚିମ ଦିଗରେ ନୃସିଂହଦେବଙ୍କ ଉତ୍ତର ଅଂଶରେ ସେହି ପ୍ରଭୁ ମାଧବ ଚାରିଗୋଟି ମୂର୍ତ୍ତି ଧାରଣ କରି ଅବସ୍ଥାନ କରିଅଛନ୍ତି । ୨୪।

ବର୍ତ୍ତମାନ ତୁମ୍ଭଙ୍କୁ ଅନୁଗ୍ରହ କରିବା ନିମନ୍ତେ ସେ ପୁନର୍ବାର ଆବିର୍ଭୂତ ହେବେ । ଯେହି ବିଷ୍ଣୁଙ୍କର ଭୋଗଭୂମି ଶ୍ୱେତଦ୍ୱୀପରେ, ଯେପରି ଏକ ନିଜର ଆଳୟ, ଏହି କର୍ମଭୂମି

ଜମ୍ବୁଦ୍ୱୀପେ କର୍ମଭୂମୌ ନିଜସ୍ଥାନମିଦଂ ସ୍ମୃତମ୍ ।
ଅସ୍ୟୈବ ଚରହସ୍ୟତ୍ୱାନ୍ନ ପ୍ରକାଶୋଽସ୍ୟ ସମ୍ଭବଃ ।୨୬।
ମୋକ୍ଷାଧିକାରୀ ଜାନାତି ସ୍ଥାନମେତନ୍ମହାମତେ ।
ଅବିଶ୍ୱାସପଦଂ ନୃଣାଂ ଦୁଷ୍କୃତାଂ ହି ବିଶେଷତଃ ।୨୭।
ଅତ୍ର ଯାନ୍ୟା ପ୍ରତିକୃତଃ କ୍ଷେତ୍ରେ ବିଷ୍ଣୋଃ ପ୍ରତିଷ୍ଠିତା ।
ସାପି ମୁକ୍ତିପ୍ରଦା ଭୂପ କିଂ ପୁନଃ ସା ସ୍ୱୟମ୍ଭୁବା ।୨୮।
ଅନ୍ତର୍ଦ୍ଧାନ-ତିରୋଧାନେ ସଜ୍ଜନିଷ୍ଠେ ଜଗତ୍ପ୍ରଭୋଃ ।
ଅନୁଗ୍ରହାର୍ଥଂ ସାଧୂନାଂ ଜାୟତେ ଚ ଯୁଗେ ଯୁଗେ ।୨୯।
ନାନାବତାରୈର୍ଭଗବାନ୍ ମତ୍ସ୍ୟକୂର୍ମାଦିକୈର୍ନୃପ ।
ନିର୍ମିତନାଶେ ଚ ତିରୋଧତ୍ତେ ପରମେଶ୍ୱରଃ ।୩୦।

---

ଜମ୍ବୁଦ୍ୱୀପ ମଧ୍ୟରେ ଏହି ସ୍ଥାନଟି ତାଙ୍କ ନିଜର ଆଳୟ । ତାହାଙ୍କର ଏହି ସ୍ଥାନଟି ଅତ୍ୟନ୍ତ ଗୋପନୀୟ ହୋଇଥିବାରୁ ଏହାର ପ୍ରଚାର ହେବା ସମ୍ଭବ ନୁହେଁ ।୨୬। ହେ ମହାମତେ ! ଯେଉଁମାନେ ମୋକ୍ଷର ଅଧିକାରୀ ଅଟନ୍ତି, ସେହିମାନେ ହିଁ ଏହି ସ୍ଥାନକୁ ଜାଣିପାରନ୍ତି । ପାପିଷ୍ଠ ମନୁଷ୍ୟମାନଙ୍କର ଏହି ସ୍ଥାନ ପ୍ରତି କୌଣସି ପ୍ରକାରେ ବିଶ୍ୱାସ ନ ଥାଏ । ୨୭। ହେ ନୃପ ! ଏହି କ୍ଷେତ୍ରରେ ଅପରାଧର ଯେଉଁ ସମସ୍ତ ବିଷ୍ଣୁଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠିତ ଅଛି, ସେମାନେ ଯେତେବେଳେ ମୁକ୍ତି ପ୍ରଦାନ କରନ୍ତି, ସେତେବେଳେ ସାକ୍ଷାତ୍ ସ୍ୱୟମ୍ଭୂ ବ୍ରହ୍ମାଙ୍କ ଦ୍ୱାରା ସଂସ୍ଥାପିତ ସେହି ମୂର୍ତ୍ତିଙ୍କ ବିଷୟରେ ବା କଅଣ କହିବି ? ସେହି ଜଗତନାଥଙ୍କର ପ୍ରକଟ ଓ ଅପ୍ରକଟ କୌଣସି ଏକ ବିଶେଷ କାରଣରୁ ହୋଇଥାଏ । ହେ ନୃପ ! ସେ ସାଧୁମାନଙ୍କୁ ଅନୁଗ୍ରହ କରିବା ନିମନ୍ତେ ଯୁଗେ ଯୁଗେ ମତ୍ସ୍ୟ-କୂର୍ମାଦି ନାନା ଅବତାର ନେଇ ଜନ୍ମ ଗ୍ରହଣ କରନ୍ତି । ଦୁର୍ଦ୍ଦାନ୍ତ ଅସୁରମାନଙ୍କ ବିନାଶ ହେବା ପରେ ପୁନର୍ବାର ଅନ୍ତର୍ଦ୍ଧାନ ହୋଇଥାନ୍ତି ।୩୦।

ନନିର୍ମିତଂ ସ୍ଥିତୋ ନତ୍ୟମିହ କାରୁଣ୍ୟସାଗରଃ ।
ଶ୍ୱେତଦ୍ୱୀପାଦ୍ ଯଥା ବସ୍ତୁରନ୍ୟତ୍ରାବତରେତ୍ ପ୍ରଭୁଃ ।୩୧।
ଅତ୍ର ସ୍ଥିତୋ ହ ମନ୍ଦାରକାଞ୍ଚୀ-ପୁଷ୍କରକାଦଷୁ ।
ପ୍ରକାଶଂ ଯାତ କୃପୟା ତରୁମୂଳପ୍ରଦେହକତ୍ ।୩୨।
ନାନାତୀର୍ଥେଷୁ ଦେଶେଷୁ କ୍ଷେତ୍ରେଷ୍ୱାୟତନେଷୁ ଚ ।
ଅଂଶାବତାରାସ୍ତସ୍ୟୈବ ମା ଭୂତ୍ସେ ସଂଶୟୋଽନ୍ୟଥା । ୩୩।
କ୍ଷଣଂ ନ ତ୍ୟଜତୀଶାନଃ କ୍ଷେତ୍ରଂ କ୍ଷେତ୍ରମିଦ ସ୍ୱକମ୍ ।
ତ୍ୱଦ୍ୟଜ୍ଞସ୍ତୁ ଭୂପାଳ ପ୍ରକାଶୋଽନ୍ୟୋ ଭବିଷ୍ୟତି ।୩୪।
ଇତି ସନ୍ଦର୍ଶିତଂ ସ୍ଥାନଂ ନାରଦେନ ମହାତ୍ମନା ।
ସାଷ୍ଟାଙ୍ଗପାତଂ ଭୂମୌ ତଦନ୍ଦ୍ରଦ୍ୟୁମ୍ନୋ ନନାମ ହ ।
ମନ୍ୟାନସ୍ତତ୍ସ୍ଥିତଂ ଦେବଂ ପକାଶମିବ ତୁଷ୍ଟୁବେ ।୩୫।

---

ସେହି କରୁଣା ସାଗର ପରମେଶ୍ୱର ବିନା ପ୍ରୟୋଜନରେ ମଧ୍ୟ ସ୍ୱୟଂ ଏହି ପବିତ୍ର କ୍ଷେତ୍ର ଧାମରେ ଅବସ୍ଥାନ କରନ୍ତି । ସେ ଶ୍ୱେତଦ୍ୱୀପରେ ରହି ଯେଉଁ ଭାବ ନେଇ ସ୍ଥାନାନ୍ତରରେ ଅବତରଣ କରନ୍ତି, ଏହି ସ୍ଥାନରେ ରହି ମଧ୍ୟ ପୁନରାୟ ସେହି ରୂପେ ମନ୍ଦାର, ପୁଷ୍କର ଓ କାଞ୍ଚୀ ପ୍ରଭୃତି ଭିନ୍ନ ଭିନ୍ନ ସ୍ଥଳରେ କରୁଣାର ସହିତ ପ୍ରକଟ ହୋଇଥାଆନ୍ତି ।୩୨। ହେ ଭୂପ ! ଭିନ୍ନ ଭିନ୍ନ ତୀର୍ଥ, ଦେଶ-କ୍ଷେତ୍ର ଓ ଆୟତନ ତାହାଙ୍କ ଅଂଶାବତାର ମାତ୍ର, ଏ ବିଷୟରେ କିଛି ସନ୍ଦେହ କରନାହିଁ ।୩୩। ସେହି ଈଶାନଦେବ କ୍ଷଣକାଳକ ପାଇଁ ମଧ୍ୟ ନିଜର କଳେବର ରୂପ ଏହି କ୍ଷେତ୍ର ଧାମକୁ ପରିତ୍ୟାଗ କରନ୍ତି ନାହିଁ । ହେ ଭୂପାଳ ! ମୁଁ ଯେ ଏହା କହୁଅଛି, ଏପରି ନୁହେଁ । ଆପଣଙ୍କର ସମ୍ବନ୍ଧୀୟ ଏହି ବିଷୟର ଉପକ୍ରମ ପ୍ରକାରାନ୍ତରେ ପ୍ରକାଶିତ ହେବ ।୩୪। ମହାତ୍ମା ନାରଦ ଏକଥା କହି ତାଙ୍କୁ ସେହି କ୍ଷେତ୍ର ସ୍ଥାନଟିକୁ ଦେଖାଇ ଦେଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ସେହି ସ୍ଥାନରେ ପ୍ରଣାମ କଲେ ଏବଂ ଦେବ ଜଗନ୍ନାଥ ହିଁ ଉକ୍ତ ସ୍ଥାନରେ ରହି ଅଛନ୍ତି ବୋଲି ମନେକରି ସ୍ତବ କରିବାକୁ ଲାଗିଲେ ।୩୫।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ଦେବଦେବ ଜଗନ୍ନାଥ ପ୍ରପନ୍ନାର୍ତ୍ତିବିନାଶନ ।
ତ୍ରାହି ମାଂ ପୁଣ୍ଡରୀକାକ୍ଷ ପତିତଂ ଭବସାଗରେ ।୩୬।
ତ୍ୱମେକ ଏବ ଦୁଃଖୌଘଧ୍ୱଂସକଃ ପରମେଶ୍ୱରଃ ।
କ୍ଷୁଦ୍ରାଃ କ୍ଷୁଦ୍ରାନ୍ ହି ସେବନ୍ତେ ସୁଖଲେଶପରାୟଣାଃ ।୩୭।
ଅନାଦନ୍ତବିଷୌଘସ୍ୟ ସଂସାରସ୍ୟ ମହାଂହସଃ ।
ଦୁରୁଚ୍ଛେଦସ୍ୟ ସତତଂ ପ୍ରବୃଦ୍ଧ୍ୟମାଣସ୍ୟ ଜନ୍ମିନଃ ।୩୮।
ଅନାୟାସେନ ତ୍ୱନ୍ନାମକୀର୍ତ୍ତନଂ ତସ୍ୟ ନାଶନମ୍ ।
କିଂ ପୁନର୍ଭକ୍ତିଭାବେନ ସାକ୍ଷାନ୍ମୁକ୍ତିପ୍ରଦଂ ନୃଣାମ୍ ।୩୯।
କର୍ମାଧୀନଂ ହି ଯେ ମୂଢ଼ା ବଦନ୍ତି ତ୍ୱାଂ କୃପାନିଧିମ୍ ।
ତେ ନ ଜାନନ୍ତି ଭଗବନ୍ କର୍ମୈବ ପ୍ରେରିତଂ ତ୍ୱୟା ।୪୦।

---

ଇନ୍ଦ୍ରଦ୍ୟୁମ୍ନ କହିଲେ—ହେ ଦେବଦେବ ଜଗନ୍ନାଥ ! ହେ ପ୍ରପନ୍ନଜନ ଦୁଃଖନାଶକ ! ହେ ପୁଣ୍ଡରୀକାକ୍ଷ ! ମୁଁ ଏହି ଭବସାଗରରେ ନିମଗ୍ନ ହୋଇଅଛି, ମୋତେ ରକ୍ଷା କରନ୍ତୁ ।୩୬। ଏକମାତ୍ର ତୁମେ ହିଁ ଦୁଃଖରାଶିକୁ ବିନାଶ କରିଥାଅ ଏବଂ ତୁମେ ହିଁ ପରମେଶ୍ୱର । କ୍ଷୁଦ୍ର ବ୍ୟକ୍ତିମାନେ ସାମାନ୍ୟ ଲେଶ ସୁଖ ବାସନା ନେଇ କ୍ଷୁଦ୍ରଙ୍କର ଉପାସନା କରନ୍ତି ।୩୭। ଯଦୃଚ୍ଛାକ୍ରମେ ଆପଣଙ୍କର ଭୁବନପାବନ ନାମ କୀର୍ତ୍ତନ କରିବା ମାତ୍ରେ ଜନ୍ମଧାରୀମାନଙ୍କର ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ—ଏହି ତାପତ୍ରୟ ଏବଂ ଅନ୍ୟାନ୍ୟ ମହାପାପ ସମୂହ ବିନଷ୍ଟ ହୋଇଥାଏ । ଯଦି ଭକ୍ତି ଭାବରେ ଆପଣଙ୍କର ସେହି ନାମକୁ କୀର୍ତ୍ତନ କରାଯାଏ, ତେବେ ମନୁଷ୍ୟଗଣ ଯେ ସାକ୍ଷାତ୍ ମୁକ୍ତିଲାଭ କରିବେ, ଏଥିରେ ସନ୍ଦେହ କଅଣ ? ।୩୯। ହେ ଭଗବନ୍ ! ଯେଉଁ ମୂଢ଼ ବ୍ୟକ୍ତିମାନେ କୃପାମୟ ଆପଣଙ୍କୁ କର୍ମାଧୀନ ବୋଲି ବର୍ଣ୍ଣନ କରନ୍ତି, ସେମାନେ ଏକଥା ଜାଣନ୍ତି ନାହିଁ ଯେ କର୍ମ ହିଁ ଆପଣଙ୍କଦ୍ୱାରା ପ୍ରେରିତ ହୋଇଥାଏ ।୪୦।

ଅଜାମିଳେନ ବିପ୍ରେଣ ତ୍ୟକ୍ତ୍ୱା ବର୍ଣ୍ଣାଶ୍ରମୋଦ୍ଭବମ୍ ।
କିଂ ନ ପାପଂ କୃତଂ ସ୍ୱାମିନ୍ ସୋଽପି ତ୍ୱନ୍ନାମକୀର୍ତ୍ତିନାତ୍ ।୪୧।
ମୁକ୍ତୋଽଭୂତ୍ ସରଣାଦେବ ପାଶହସ୍ତାଦ୍ ବିମୋଚିତଃ ।
ସର୍ବେଽପ୍ୟୁପାୟା ଦେବେଶ କାଲ୍ପିତାସ୍ତବ ଦର୍ଶନେ ।୪୨।
ତ୍ୱୟି ଦୃଷ୍ଟେ ହି ଭିଦ୍ୟନ୍ତେ ସଂଶୟା ହୃଦି ସଂସ୍ଥିତାଃ ।
ନିଃସଂଶୟୋ ଭବେତ୍ ସଦ୍ୟଃ ପାପପୁଣ୍ୟକ୍ଷୟୋ ଧ୍ରୁବମ୍ ।୪୩।
ତ୍ୱମେବ ଶରଣଂ ଦୀନମନୁଗୃହ୍ଣୀଷ୍ୱ ମାଂ ପ୍ରଭୋ ।
ଲିଖିତାନି ତ୍ୱୟା ଦେବ ଗର୍ଭସ୍ଥସ୍ୟ ଚ ଯାନି ମେ ।
ଭୋକ୍ଷ୍ୟେଽହମେବ ମେ ଜନ୍ମ ଯାଚେ ତ୍ୱାଂ କେବଳଂ ତ୍ୱିଦମ୍ ।୪୪।
ଦୃଷ୍ଟୋ ମୁକ୍ତିଦା ମୂର୍ତ୍ତିଃ ସ୍ଥିତା ତେ ପାବନୀ ପୁନଃ ।
ଅନେନ ଚକ୍ଷୁଷା ପଶ୍ୟାମି ଶ ନାନ୍ୟତ୍ ପ୍ରୟୋଜନମ୍ ।୪୫।

---

ହେ ସ୍ୱାମିନ୍ ! ଅଜାମିଳ ବିପ୍ର, ବର୍ଣ୍ଣ ଆଶ୍ରମ ଆଦି ବିହିତ କ୍ରିୟା-କଳାପ ପରିତ୍ୟାଗ ପୂର୍ବକ କେଉଁ ପାପ କରି ନ ଥିଲା ? କିନ୍ତୁ ସେପରି ପାପୀ ମଧ୍ୟ ଆପଣଙ୍କ ସ୍ମରଣ ଓ ନାମ କୀର୍ତ୍ତନ କରି ପାଶହସ୍ତମାନଙ୍କର ହସ୍ତରୁ ବିମୋଚିତ ହୋଇ ମୁକ୍ତିଲାଭ କଲା ।୪୧। ହେ ଦେବେଶ୍ୱର ! ଆପଣଙ୍କର ଦର୍ଶନରେ ହିଁ ଜୀବମାନଙ୍କର ସମସ୍ତ ଉପାୟ ଉଦ୍ଭାବନ ହୁଏ ଏବଂ ଆପଣଙ୍କୁ ଦର୍ଶନ କଲେ ହୃଦୟସ୍ଥ ସଂଶୟ ବିଚ୍ଛିନ୍ନ ହୋଇଯାଏ ।୪୨। ଦର୍ଶନଦ୍ୱାରା ପାପ ଓ ପୁଣ୍ୟ ଉଭୟ କ୍ଷୀଣ ହେଲେ ସହସା ଜୀବଗଣ ସଂଶୟଶୂନ୍ୟ ହୋଇଯାଆନ୍ତି ।୪୩। ହେ ପ୍ରଭୁ ! ଆପଣ ମୋର ରକ୍ଷାକର୍ତ୍ତା । ଅତଏବ ଏହି ଦୀନକୁ ଅନୁଗ୍ରହ କରନ୍ତୁ । ହେ ଦେବ ! ଆପଣ ମୋର ଗର୍ଭବାସ ଅବସ୍ଥାରେ ଅଦୃଷ୍ଟରେ ଯାହା ଲିପିବଦ୍ଧ କରି ଅଛନ୍ତି, ତାହା ହିଁ ମୁଁ ଯାବଦ୍‌ଜୀବନ ଭୋଗ କରିବା ପାଇଁ ପ୍ରସ୍ତୁତ । କେବଳ ଏହି ମାତ୍ର ମୋର ପ୍ରାର୍ଥନା ଯେ, ସର୍ବକ ଜୀବର ମଧ୍ୟ ମୁକ୍ତିପ୍ରଦ ଆପଣଙ୍କ ଏହି ମନୋହର ପ୍ରତ୍ୟକ୍ଷ ମୂର୍ତ୍ତିକୁ ଏହି ଚର୍ମ-ଚକ୍ଷୁରେ ଯେପରି ଦର୍ଶନ କରିବାକୁ ପାଇବି, ଏହା ବ୍ୟତୀତ ମୋର ଅନ୍ୟ କୌଣସି ପ୍ରୟୋଜନ ନାହିଁ ।୪୫। ରାଜା ମଧୁସୂଦନଙ୍କୁ

କୃତାଞ୍ଜଳିପୁଟୋ ରାଜା ସ୍ତୁତ୍ୱୈବଂ ମଧୁସୂଦନମ୍ ।
ପୁନର୍ନନାମ ଧରଣୀପୃଷ୍ଠେ ସାଶ୍ରୁବିଲୋଚନଃ ।୪୬।
ତତୋଽନ୍ତରୀକ୍ଷଗା ବାଣୀ ସାମ-ସୁସ୍ୱର-ହର୍ଷିଣୀ ।
ଉଚଚାର ନଭୋ ମଧ୍ୟେ ଇନ୍ଦ୍ରଦ୍ୟୁମ୍ନସ୍ୟ ଶୃଣ୍ୱତଃ ।୪୭।
ମା ଚିନ୍ତାଂ କୁରୁ ଭୂପାଲ କୁରୁଷ୍ୱ ଦୃଷ୍ଟିଗୋଚରଃ ପଥମ୍ ।
ପୈତାମହଂ ବଚଃ ପ୍ରାହ ନାରଦୋ ଯତ୍ କୁରୁଷ୍ୱ ତତ୍ ।୪୮।
ତଚ୍ଛ୍ରୁତ୍ୱା ଦିବ୍ୟବଚନଂ ନାରଦସ୍ୟ ଚ ହର୍ଷିତମ୍ ।
ଶ୍ରଦ୍ଦଧେ ବାଜିମେଧାୟ ଭଗବତ୍-ପ୍ରୀତିକାରକଃ ।୪୯।
ନାରଦଞ୍ଚ ପୁନଃ ପ୍ରାହ ହର୍ଷଗଦ୍‌ଗଦୟା ଗିରା ।
ମୁନେ ତ୍ୱୟା ଯଦାଦିଷ୍ଟଂ ଚତୁର୍ମୁଖନିଦେଶତଃ ।
ଅଶରୀରା ହି ସ୍ୱଂ ବାଣୀ ଅନୁଜଜ୍ଞେ ତଦେବ ହି ।୫୦।

---

କୃତାଞ୍ଜଳି ପୁଟରେ ବହୁବିଧ ସ୍ତବ କରି ପୁନରାୟ ଗଳଦଶ୍ରୁ ହୋଇ ଧରଣୀର ପୃଷ୍ଠଭାଗରେ ପ୍ରଣାମ କରିବାକୁ ଲାଗିଲେ ।୪୬। ଏହି ସମୟରେ ଆକାଶମଣ୍ଡଳ ମଧ୍ୟରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଶ୍ରବଣ-ଯୋଗ୍ୟ ଏକ ସୁମଧୁର ଆକାଶବାଣୀ ଏହି ଭାବରେ ଉଚ୍ଚାରିତ ହେଲା—'ହେ ଭୂପାଳ ! ତୁମ୍ଭେ ଚିନ୍ତା କର ନାହିଁ । ମୁଁ ତୁମ୍ଭର ନୟନପଥର ପଥିକ ହେବି । ନାରଦ ତୁମ୍ଭ ନିକଟରେ ଯେଉଁ ବ୍ରହ୍ମବାକ୍ୟ କହିଅଛନ୍ତି, ତୁମ୍ଭେ ତାହା ଅନୁଷ୍ଠାନ କର' ।୪୮। ରାଜା ପୂର୍ବରୁ ନାରଦଙ୍କଠାରୁ ଯାହା ଶୁଣିଥିଲେ, ବର୍ତ୍ତମାନ ଏହି ଦିବ୍ୟବାକ୍ୟରେ ତାହା ହିଁ ଶ୍ରବଣ କରି ଭଗବାନଙ୍କ ପ୍ରୀତିକାରକ ଅଶ୍ୱମେଧ ଯଜ୍ଞ କରିବାକୁ ଶ୍ରଦ୍ଧାନ୍ୱିତ ହେଲେ ।୪୯। ରାଜା ପୁନର୍ବାର ନାରଦଙ୍କୁ ହର୍ଷ-ଗଦ୍‌ଗଦ ବାଣୀରେ କହିଲେ, ହେ ମୁନେ ! ତୁମ୍ଭେ ସେହି ବ୍ରହ୍ମାଙ୍କ ନିର୍ଦ୍ଦେଶକ୍ରମେ ଯାହା ଆଦେଶ କରିଅଛ, ଏହି ଅଶରୀରୀ ବାଣୀ ମଧ୍ୟ ତାହା ହିଁ ଅବଗତ କରାଇଅଛି ।୫୦।

ପିତାମହୋ ଜଗନ୍ନାଥୋ ଭେଦୋ ବୈ ନାନୟୋଃ କ୍ୱଚିତ୍ ।
ପଦ୍ମଯୋନେଃ ସୁତସ୍ତ୍ୱଂ ହି ବଚସ୍ତେ ଭଗବଦ୍‌ବଚଃ ।
ତତ୍ କର୍ତ୍ତବ୍ୟଂ ପ୍ରଯତ୍ନେନ ଯଚ୍ଛ୍ରେୟ-ଉପପାଦନମ୍ ।୫୧।

ଇତି ଶ୍ରୀ ସ୍କାନ୍ଦେ ଭଗବତଃ ପୁନଃପ୍ରାଦୁର୍ଭାବ-ବର୍ଣନେ ନରେନ୍ଦ୍ର-
ବଚନାକର୍ଣ୍ଣନେନେନ୍ଦ୍ରଦ୍ୟୁମ୍ନସ୍ୟ ଶୋକନାଶୋ
ନାମ ପଞ୍ଚଦଶୋଽଧ୍ୟାୟଃ ।୧୫।

———

ପିତାମହ ଓ ଜଗନ୍ନାଥ, ଏ ଉଭୟଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଆପଣ ମଧ୍ୟ ସେହି ପଦ୍ମଯୋନିଙ୍କର ସନ୍ତାନ । ଅତଏବ ଆପଣଙ୍କର ଯେ ବାକ୍ୟ, ତାହା ହିଁ ଭଗବାନଙ୍କର ବାକ୍ୟ । ଅତଏବ ଶ୍ରେୟ ସମ୍ପାଦକ ଯେଉଁ ଉପଦେଶ ଦେଇ-ଅଛନ୍ତି, ସମ୍ୟକ୍ ଯତ୍ନର ସହିତ ତାହା ହିଁ କରିବ ।୫୧।

॥ ପଞ୍ଚଦଶ ଅଧ୍ୟାୟ ସମାପ୍ତ ॥

## ଷୋଡ଼ଶୋଽଧ୍ୟାୟଃ

ଶ୍ରୀ ଜୈମିନିରୁବାଚ

ନୃପଂ ସୁମନସଂ ଦୃଷ୍ଟ୍ୱା ଶ୍ରଦ୍ଧାନଂ ମହାକ୍ରତୌ ।
ଉବାଚ ପରମପ୍ରୀତ୍ୟା ନାରଦୋ ଲୋକହର୍ଷଦଃ ।୧।

ଶ୍ରୀ ନାରଦ ଉବାଚ

ବ୍ୟବସାୟେଷୁ କୃତିନାଂ ଦେବା ଯାନ୍ତି ସହାୟତାମ୍ ।
ଅତୋଦାହରଣଂ ତ୍ୱଂ ହି ତ୍ୱତ୍ସହାୟଶ୍ଚତୁର୍ମୁଖଃ ।୨।

ତଦେହି ଯାବସ୍ତତ୍ରୈବ ନୀଳକଣ୍ଠସ୍ୟ ସନ୍ନିଧୌ ।
ସର୍ବରକ୍ଷସଂହାରଂ ସର୍ବବିଘ୍ନବିନାଶନମ୍ ।୩।

ସ୍ଥାପୟାମ୍ୟଗତୋ ରାଜନ୍ ନୃସିଂହଂ ବାରୁଣୀମୁଖମ୍ ।
ଅନ୍ତର୍ହିତୋ ହି ଭଗବାନ୍ ପ୍ରତ୍ୟକ୍ଷୋଽସୌ ନୃକେଶରୀ ।୪।

---

## ଷୋଡ଼ଶ ଅଧ୍ୟାୟ

ଶ୍ରୀ ଜୈମିନି କହିଲେ—ଲୋକହର୍ଷକାରୀ ନାରଦ ଋଷି ନରପତିଙ୍କୁ ସହସ୍ର ଅଶ୍ୱମେଧ ଯଜ୍ଞରେ ଶ୍ରଦ୍ଧାଳୁ ଓ ଆସକ୍ତମନା ଦେଖି ପରମପ୍ରୀତି ସହକାରେ କହିଲେ, ହେ ନରପାଳ ! କାର୍ଯ୍ୟକୁଶଳ ବ୍ୟକ୍ତିମାନଙ୍କ କାର୍ଯ୍ୟରେ ଦେବଗଣ ସାହାଯ୍ୟ ପ୍ରଦାନ କରନ୍ତି । ଉକ୍ତ ବିଷୟରେ ଆପଣ ନିଜେ ହିଁ ପ୍ରମାଣ । କାରଣ ସ୍ୱୟଂ ଚତୁର୍ମୁଖ ବ୍ରହ୍ମା ଆପଣଙ୍କର ସହାୟ ହୋଇଅଛନ୍ତି ।୨। ବର୍ତ୍ତମାନ ଆସନ୍ତୁ, ଆମ୍ଭେମାନେ ସେହି ନୀଳକଣ୍ଠଙ୍କ ନିକଟକୁ ଗମନ କରିବା । ହେ ରାଜନ୍ ! ସେହି ସର୍ବରାକ୍ଷସନାଶକ ସର୍ବବିଘ୍ନବିନାଶୀ ଶ୍ରୀ ନରସିଂହ ଦେବଙ୍କୁ ଏହି ମହାଦେବଙ୍କ ଅଗ୍ରଭାଗରେ ପଶ୍ଚିମାଭିମୁଖୀ କରି ସ୍ଥାପନ କରିବା । ଭଗବାନ୍ ଅନ୍ତର୍ଦ୍ଧାନ ହୋଇଅଛନ୍ତି ସତ୍ୟ, କିନ୍ତୁ ଏହି ନରକେଶରୀ ପ୍ରତ୍ୟକ୍ଷ ଭାବରେ ବିଦ୍ୟମାନ ଅଛନ୍ତି ।୪।

ସନ୍ନିଧାନସ୍ୟ ଯାଗସ୍ତେ ଫଲାତିଶୟବାନ୍ ଭବେତ୍ ।
ତ୍ୱମଗ୍ରତୋ ଗଚ୍ଛ ଶୀଘ୍ରଂ ପ୍ରାସାଦଂ ତତ୍ର କାରୟ ।୫।
ସ୍ମରଣାନ୍ମମ ବ୍ରହ୍ମତଃ ପୁତ୍ରୋ ବୈ ବିଶ୍ୱକର୍ମଣଃ ।
ପ୍ରତ୍ୟଙ୍ମୁଖନ୍ତୁ ପ୍ରାସାଦଂ ସତୂର୍ଣ୍ଣଂ ଘଟୟିଷ୍ୟତି ।୬।
ଦକ୍ଷିଣେ ନୀଳକଣ୍ଠସ୍ୟ ଯୋ ମହାଂଶ୍ଚନ୍ଦନଦ୍ରୁମଃ ।
ଧନୁଃ ଶତାନ୍ତରେ ରାଜନ୍ ଚିରରୂଢ଼ସ୍ତୁ ତିଷ୍ଠତି ।୭।
ତସ୍ୟ ପଶ୍ଚିମଦେଶେଽସ୍ୟ କ୍ଷେତ୍ରଂ ରାଜନ୍ ଭବିଷ୍ୟତି ।
ବାଜିମେଧ ସହସ୍ରେଣ ତସ୍ୟାଗ୍ରେ ଯଜତାଂ ଭବାନ୍ ।୮।
ଗଚ୍ଛ ତ୍ୱମହମତ୍ରୈବ ସ୍ଥାସ୍ୟାମି ଦିନପଞ୍ଚକମ୍ ।
ଆରାଧ୍ୟୈନଂ ଦବ୍ୟସିଂହଂ ଜ୍ୟୋତିରୂପମନନ୍ତକମ୍ ।୯।
ପ୍ରତ୍ୟର୍ଚ୍ଚାୟାଂ ପ୍ରତିଷ୍ଠାପ୍ୟ ପ୍ରାଣେନ୍ଦ୍ରିୟମନୋଯୁତମ୍ ।
ଦୀପାଦ୍ଦୀପଂ ଯଥା ରାଜନ୍ନୟିଷ୍ୟେ ଶୋଭନାକୃତିମ୍ ।୧୦।

---

ଏହାଙ୍କ ନିକଟରେ ଆପଣଙ୍କର ଯାଗାନୁଷ୍ଠାନ ଅତିଶୟ ଫଳପ୍ରଦ ହେବ । ଅତଏବ ଆପଣ ସର୍ବପ୍ରଥମେ ସେଠାକୁ ଯାତ୍ରା କରନ୍ତୁ ଏବଂ ସେହି ସ୍ଥାନରେ ଏକ ଦେବଗୃହ ପ୍ରସ୍ତୁତ କରାନ୍ତୁ । ମୋର ସ୍ମରଣକ୍ରମେ ବିଶ୍ୱକର୍ମାଙ୍କ ପୁତ୍ର ଆଗମନ କରି ଯଥାଶୀଘ୍ର ପଶ୍ଚିମ ଭାଗରେ ଏକ ପ୍ରାସାଦ ନିର୍ମାଣ କରିବେ ।୬। ହେ ରାଜନ୍ ! ନୀଳକଣ୍ଠଙ୍କ ଦକ୍ଷିଣରେ ଶତଶତ ହସ୍ତ ମଧ୍ୟରେ ଯେଉଁ ମହାନ୍ ଚନ୍ଦନଦ୍ରୁମ ଚିର ପ୍ରରୂଢ଼ ହୋଇ ରହିଅଛି, ତାହାର ପଶ୍ଚିମ ଦିଗରେ ଏହି ଦେବଙ୍କର କ୍ଷେତ୍ର ପ୍ରସ୍ତୁତ ହେବା ଉଚିତ ।୭। ତୁମ୍ଭେ ନରସିଂହଦେବଙ୍କ ସନ୍ନିଧାନରେ ସହସ୍ର ଅଶ୍ୱମେଧ ଯଜ୍ଞ ଆରମ୍ଭ କର । ମୁଁ ଏହି ସ୍ଥାନରେ ପାଞ୍ଚଦିନ ବ୍ୟାପୀ ଅବସ୍ଥାନ କରିବି । ତୁମ୍ଭେ ଯଥାଶୀଘ୍ର ଗମନ କର । ଏହି ଅନନ୍ତ ଜ୍ୟୋତିର୍ମୟ ନର-ସିଂହଦେବଙ୍କୁ ଆରାଧନା ପୂର୍ବକ, ପ୍ରତିମାରେ ପ୍ରାଣ ପ୍ରତିଷ୍ଠାଦି କରି ଏକ ଦୀପରୁ ଅପର ଦୀପ ଦୀପିତ କରିନେଲେ ଯେପରି ଶୋଭାପାଏ, ଆଣିଥିବା ଆକୃତିକୁ ସେହିପରି ଶୋଭାବିଶିଷ୍ଟ କରିବି ।୧୦।

ନାରଦସ୍ୟେତ ବଚନଂ ପ୍ରତଶ୍ରୁତ୍ୟ ନୃପୋତ୍ତମଃ ।
ଜଗାମ ତତ୍ର ବେଗେନ ଚନ୍ଦନଦ୍ରୁମସନ୍ନିଧିମ୍ ।୧୧।
ତତ୍ରାପଶ୍ୟତ୍ ପୁରଃ କଂ ଶିଳ୍ପଶାସ୍ତ୍ର-ବଶାରଦମ୍ ।
ନାରଦସ୍ୟାଜ୍ଞୟା ପ୍ରାପ୍ତଂ ପୁତ୍ରଂ ବୈ ଦେବଶିଳ୍ପିନଃ ।୧୨।
ମନୁଷ୍ୟରୂପମାସ୍ଥାୟ ଶସ୍ତ୍ରଯୁକ୍ତଧରଂ ସ୍ଥିତମ୍ ।
ରାଜା ନଂ ସ ତୁ ଦୃଷ୍ଟ୍ୱା ବୈ ଚକାର୍ଷନ୍ତଂ ସୁରାଳୟମ୍ ।୧୩।
କୃତାଞ୍ଜଳପୁଟଃ ପ୍ରୋଚେ ଦେବାହଂ ଶିଳ୍ପଶାସ୍ତ୍ରବତ୍ ।
ନରସିଂହାଳୟଂ ତାବଦ୍ ଘଟୟିଷ୍ୟାମି ଶୋଭନମ୍ ।୧୪।
ରାଜାପି ତମୁବାଚେଦଂ ପ୍ରହସନ୍ ଦ୍ୱେ ଦ୍ୱିଜୋତ୍ତମାଃ ।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ନୋ ଶିଲ୍ପୀ ତ୍ୱଂ ହ ସାମାନ୍ୟଃ ଶିଳ୍ପଶାସ୍ତ୍ରପ୍ରଣେତୃକଃ ।୧୫।
କଥିତୋ ନାରଦେନୈବ ତ୍ୱଷ୍ଟୁଃ ପୁତ୍ରୋ ମହାଯଶାଃ ।
ନର୍ଜନେଽସିନ୍ ମହାରଣ୍ୟେ ନେତଃ ପୂର୍ବଂ ଜନାଶ୍ରୟଃ ।୧୬।

---

ନରପତ ନାରଦଙ୍କ ଏହ ବାକ୍ୟ ଶ୍ରବଣ କର ଯଥାଶୀଘ୍ର ସେହ ସ୍ଥାନରେ ଅର୍ଥାତ୍, ଯେଉଁ ସ୍ଥାନରେ ଚନ୍ଦନଦ୍ରୁମ ରହଅଛି, ଉପସ୍ଥିତ ହେଲେ ।୧୧। ସେ ସେଠାରେ ଦେଖିବାକୁ ପାଇଲେ ଯେ, ଶିଳ୍ପ-ଶାସ୍ତ୍ର-ବଶାରଦ ନର୍ମାଣପଟୁ ବଶ୍ୱକର୍ମାଙ୍କ ପୁତ୍ର ନାରଦଙ୍କ ଆଦେଶକ୍ରମେ ମନୁଷ୍ୟାକୃତ ହୋଇ ଶସ୍ତ୍ର ଓ ସୂତ୍ରଧାରଣ ପୂର୍ବକ ଅବସ୍ଥାନ କରଅଛନ୍ତ ।୧୨। ସେ ରାଜାଙ୍କୁ ଦେବପ୍ରାସାଦ ନର୍ମାଣ କରବା ନମନ୍ତେ ଅଭଳାଷୀ ଦେଖି କୃତାଞ୍ଜଳପୁଟରେ ରାଜାଙ୍କ ସମୀପବର୍ତ୍ତୀ ହୋଇ କହବାକୁ ଲାଗିଲେ— ହେ ଦେବ ! ମୁଁ ଶିଳ୍ପଶାସ୍ତ୍ରବଶାରଦ । ଆପଣଙ୍କର ଅଭଳଷିତ ଏହ ନରସିଂହ ମନ୍ଦର ସୁନ୍ଦର ଭାବରେ ନର୍ମାଣ କରଦେବ ।୧୪। ନରପତ ଏ ଅତ୍ୟାଶ୍ଚର୍ଯ୍ୟ କଥା ଶ୍ରବଣ କର ସହାସ୍ୟ ମୁଖରେ ଏହ କଥା କହଲେ—ଆପଣ ତ ସାମାନ୍ୟ ଶିଳ୍ପବ୍ୟବସାୟୀ ନୁହନ୍ତ, ବରଂ ଶିଳ୍ପଶାସ୍ତ୍ରର ପ୍ରଣେତା । ଏ ବଷୟ ନାରଦ ମୋତେ କହଅଛନ୍ତ ଯେ, ଆପଣ ବଶ୍ୱକର୍ମାଙ୍କ ମହାଯଶସ୍ୱୀ ପୁତ୍ର, କଦାଚ ଏହ ନର୍ଜନ ଅରଣ୍ୟରେ ଏଥିପୂର୍ବେ ଜନସମାଗମ ନ ଥିଲା ।୧୬।

ବୟମଭ୍ୟାଗତାଃ ଶିଲ୍ପିନ ସମ୍ବନ୍ଧଃ କଂନମିତ୍ୟର୍ଥଃ ।
ଦେବଶିଲ୍ପୀ ଭବାନେବ ବିଷ୍ଣୋରମିତତେଜସଃ ।୧୭।
ସଦାନୁଧ୍ୟାୟିନା ତସ୍ୟ ନାରଦେନୋପଦେଶିତଃ ।
ଯେନ ସ୍ମୃତସ୍ତ୍ୱଂ ମୁନିନା ସ ଏବାତ୍ରାଗମିଷ୍ୟତି ।୧୮।
ପ୍ରତ୍ୟର୍ଚ୍ଚାଂ ନରସିଂହସ୍ୟ ଗୃହୀତ୍ୱା ତୁ ଦିନାନ୍ତରେ ।
ତଦାଶୁ ଘଟୟସ୍ୱ ସାଧୁ ସପ୍ରାକାରଂ ସତୋରଣମ୍ ।୧୯।
ପ୍ରାସାଦଂ ନରସିଂହସ୍ୟ ପ୍ରତୀଚୀବଦନଂ ଶୁଭମ୍ ।
ତଂ ପୂଜୟିତ୍ୱା ବିଧିବନ୍ନିଯୋଜ୍ୟ ଘଟନେ ନୃପଃ ।୨୦।
ଶିଳାସଞ୍ଚାୟକାନ୍ ଭୃତ୍ୟାନ୍ ବହୁବଚ୍ଚୈରଯୋଜୟତ୍ ।
ଚତୁର୍ଥଦିବସେ ବିପ୍ରାଃ ପ୍ରାସାଦୋଽଭୂଦନୁତ୍ତମଃ ।୨୧।

---

ଆମ୍ଭେମାନେ ବର୍ତ୍ତମାନ ଅଭ୍ୟାଗତ, ଆପଣଙ୍କ ସହିତ କାହିଁକି ଏ ସମ୍ବନ୍ଧ ବା ଘଟିବ ? ଅତଏବ ଆପଣ ହିଁ ନିଶ୍ଚୟ ଦେବଶିଳ୍ପୀ ଅଟନ୍ତି ।୧୭। ଅପରିମିତ ତେଜସ୍ୱୀ ବିଷ୍ଣୁଦେବଙ୍କର ନିତ୍ୟ ଉପାସକ ଏବଂ ମୁନିବର ନାରଦଙ୍କ ଦ୍ୱାରା ଉପଦିଷ୍ଟ ହୋଇ ଅଦ୍ୟ ଆପଣ ସ୍ମରଣୀୟ ହୋଇଅଛନ୍ତି । ସେ ମଧ (ନାରଦ) ନରସିଂହ ଦେବଙ୍କ ଶ୍ରୀବିଗ୍ରହକୁ ସଙ୍ଗରେ ନେଇ କିଛି ସମୟ ପରେ ଏଠାକୁ ଆଗମନ କରିବେ ।୧୮। ଆପଣ ଯଥାଶୀଘ୍ର ପ୍ରାକାର ଓ ତୋରଣ ବିଶିଷ୍ଟ ନରସିଂହ ଦେବଙ୍କର ଏକ ପ୍ରାସାଦ ପଶ୍ଚିମଦ୍ୱାରି କରି ଉତ୍ତମ ଭାବରେ ନିର୍ମାଣ କରନ୍ତୁ ।୧୯। ନରପତି ତାଙ୍କୁ ଯଥାବିଧିରେ ପୂଜନ କରି ପ୍ରାସାଦ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ପୂର୍ବକ ବହୁ ବିତ୍ତ ବ୍ୟୟ ସାଧନ କରି ଶିଳା ସଂଗ୍ରହ କରିପାରୁଥିବା ଭୃତ୍ୟମାନଙ୍କୁ ନିଯୁକ୍ତ କଲେ । ହେ ବିପ୍ରଗଣ ! ସେହି ଦିବ୍ୟଶିଳ୍ପୀଙ୍କ ମହିମାରେ ବହୁକାଳ ସାଧ୍ୟ ହେଲେ ମଧ ମାତ୍ର ଚତୁର୍ଥ ଦିନରେ ପ୍ରାସାଦଟି ସୁନ୍ଦର ଭାବରେ ପ୍ରସ୍ତୁତ ହୋଇଗଲା । ତଦନନ୍ତରଂ

ବହୁକାଳପ୍ରତୀକ୍ଷୋଽପି ମହାତ୍ମା ହରିଭକ୍ତିମାନ୍ ।
ତତଃ ପ୍ରଭାତେ ବିମଲେ କୃତନିତ୍ୟକର୍ମାବସାନତଃ ।୨୨।

ପ୍ରତିଷ୍ଠାବିଧିସମ୍ଭାରଂ ଗୃହୀତ୍ୱା ସପରିଚ୍ଛଦଃ ।
ନାରଦାଗମନଂ ପ୍ରେକ୍ଷ୍ୟ ହ୍ୟାବର୍ତ୍ତିଷ୍ଟତ ଭୂପତିଃ ।୨୩।

ତାବଚ୍ଛୁଶ୍ରୁବିରେ ଶଙ୍ଖା ମୃଦଙ୍ଗା ମୁରଜାସ୍ତଥା ।
ଗୀତମଙ୍ଗଳବାଦ୍ୟାନି ଘନାନି କଣ୍ଠୋ ସ୍ୱନାଃ ।୨୪।

ତଥା ଜୟଜୟସ୍ତୁତ୍ୟନ୍ତୈଃ ଶବ୍ଦା ଆକାଶମଣ୍ଡଳେ ।
ତାନ୍ଶ୍ରୁତ୍ୱା ବିସ୍ମୟାପନ୍ନା ଇନ୍ଦ୍ରଦ୍ୟୁମ୍ନପୁରୋଗମାଃ ।୨୫।

ରାଜାନଃ ଶ୍ରୋତ୍ରିୟା ବିପ୍ରା ବୈଷ୍ଣବାଶ୍ଚ ସହସ୍ରଶଃ ।
ଜଗଦୁରନ୍ୟୋନ୍ୟମେ ଶବ୍ଦା ଅଦ୍ଭୁତାନି ନ ସଂଶୟଃ ।୨୬।

---

ପଞ୍ଚମ ଦିବସର ପ୍ରାତଃ କାଳରେ ନରପାଳ ନିତ୍ୟକର୍ମ ସମ୍ପାଦନାନ୍ତର ପରିଚ୍ଛଦ ସହିତ ପ୍ରତିଷ୍ଠା ଦ୍ରବ୍ୟଜାତ ଆୟୋଜନ ପୂର୍ବକ ନାରଦଙ୍କ ଆଗମନକୁ ଅପେକ୍ଷା କରି ରହିଛନ୍ତି ।୨୩। ଏହି ସମୟରେ ଆକାଶ ମଣ୍ଡଳରୁ ଶଙ୍ଖ, ମୃଦଙ୍ଗ, ମୁରଜ ପ୍ରଭୃତିର ଘନବାଦ୍ୟ ଓ ମଙ୍ଗଳଗୀତ ଧ୍ୱନି ଏବଂ ସ୍ତ୍ରୀଙ୍କ ଶତ୍କାର ଓ ପୁନଃ ପୁନଃ ଜୟଜୟ ଧ୍ୱନି ଶୁଣିବାକୁ ପାଇଲେ । ଏହା ଶ୍ରବଣ କରିବା ପରେ ଇନ୍ଦ୍ରଦ୍ୟୁମ୍ନ ପ୍ରମୁଖ ସହସ୍ର ସହସ୍ର ରାଜଗଣ ଓ ଶ୍ରୋତ୍ରିୟ ବ୍ରାହ୍ମଣ ଓ ବୈଷ୍ଣବ ସମୂହ ବିସ୍ମୟାପନ୍ନ ହୋଇଗଲେ । ତଦନନ୍ତର ଏହି ଅଦୃଶ୍ୟଶୂନ୍ୟ ଶବ୍ଦସମୂହ ଯେ ଅଦ୍ଭୁତ, ଏକଥା କହି ତର୍କ ବିତର୍କ କରିବାକୁ ଲାଗିଲେ ।୨୬।

ବବୃରସ୍କନ୍ତସ୍ତେ ଯାବସ୍ତ୍ରବଦ୍ଧକ୍ଷିଣ-ମାରୁତଃ ।
ଗନ୍ଧାନ୍ୱିତା ଦ୍ୱିରେଫୌଘଗଞ୍ଜିତାଃ ପୁଷ୍ପବୃଷ୍ଟିୟଃ ।୨୭।
ଆବଭୂର୍ତ୍ତାସ୍ତ୍ରିପଥଗା ବାଶଣାଦ୍ରୀକୃତା ଦ୍ୱିଜାଃ ।
ତଦନନ୍ତରମେବାସୌ ନାରଦୋ ବ୍ରହ୍ମଣଃ ସୁତଃ ।୨୮।
ତପଃପ୍ରଭବଦନ୍ଦିର୍ଯ୍ୟୈତ୍ତବମାନବରଗାମିନାମ୍ ।
ରତ୍ନସ୍ତମରହସ୍ତାଭର୍ଦ୍ଦିବ୍ୟସ୍ତ୍ରୀଭିଃ ସୁଶୋଭିତାମ୍ । ୯।
ଅଲଂକୃତାଂ ବହୁବିଧୈର୍ମଣିରତ୍ନପସାଧନୈଃ ।
ଦିବ୍ୟମାଲ୍ୟାମ୍ବରଧରାଂ ଦିବ୍ୟଗନ୍ଧାନୁଲେପନାମ ।୩୦।
ରମ୍ୟାଂ ପ୍ରତିଷ୍ଠିତପ୍ରାଣାଂ ଘଟିତାଂ ବିଶ୍ୱକର୍ମଣା ।
ତେଜୋମଣ୍ଡଳସଂବୀତାଂ ପରତୋ ଦୃଷ୍ଟିଦାମପି ।
ଆଦାୟ ନରସିଂହସ୍ୟ ମୂର୍ତ୍ତ୍ୟର୍ଚ୍ଚାଂ ସମୁପସ୍ଥିତଃ ।୩୧।

---

ଏହି ସମୟରେ ଦକ୍ଷିଣ ଦିଗରୁ ଗନ୍ଧବହ ବାୟୁ ପ୍ରବାହିତ ହେଲା । ଭ୍ରମରମାନଙ୍କର ଗୁଞ୍ଜିତ-ଧ୍ୱନି ସହଯୋଗରେ ଆକାଶମଣ୍ଡଳରୁ ଗଙ୍ଗାଜଳ ଦ୍ୱାରା ସୁଶୀତଳ ପୁଷ୍ପବୃଷ୍ଟି ହେବାକୁ ଲଗିଲା ।୨୭। ତଦନନ୍ତର ବ୍ରହ୍ମାପୁତ୍ର ନାରଦ ନରସିଂହ ଦେବଙ୍କ ରମଣୀୟ ପ୍ରତିମାକୁ ତପଃପ୍ରଭବୋତ୍ପନ୍ନ ମନୋରମ ରଥରେ ଆରୋହଣ କରାଇଲେ । ଏହି ପ୍ରତିମାଙ୍କ ଦୁଇପାର୍ଶ୍ୱରେ ଦିବ୍ୟ ରମଣୀଗଣ ରତ୍ନ ସ୍ତମର ହସ୍ତରେ ଶୋଭା ପାଉଥିଲେ ।୨୯। ଏହି ନରସିଂହ ମୂର୍ତ୍ତି ବିବିଧ ମଣିମୟ ରତ୍ନ ଅଳଙ୍କାରରେ ବିଭୂଷିତ, ଗଳାରେ ଦିବ୍ୟ-ମାଳା, କଟିଭାଗରେ ଦିବ୍ୟବସନ, ସର୍ବାଙ୍ଗ ଦିବ୍ୟଗନ୍ଧ ଦ୍ୱାରା ଅନୁ-ଲିପ୍ତ, ଅପୂର୍ବ ତେଜଃପୁଞ୍ଜରେ ପରିବ୍ୟାପ୍ତ ମୂର୍ତ୍ତିଟି ଦୂରରୁ ଦର୍ଶନ କଲେ ଅନ୍ତରରେ ଏକ ଅନିର୍ବଚନୀୟ ଆନନ୍ଦ ଉପଲବ୍ଧି ହୁଏ । ନାରଦ ଏହି ବିଶ୍ୱକର୍ମା ବିନିର୍ମିତ ପ୍ରତିମାଙ୍କୁ ସଙ୍ଗରେ ନେଇ ପ୍ରାସାଦ ନିକଟରେ ଉପସ୍ଥିତ ହେଲେ ।୩୧।

ତାଂ ଦୃଷ୍ଟ୍ୱା ହର୍ଷିତାଃ ସର୍ବେ ରାଜା ରାଜାନୁବର୍ତ୍ତିନଃ ।୩୨।
ଅନ୍ତର୍ହିତଗତୋ ଦେବୋ ନାରଦେନାହୃତଃ କିମୁ ।
ମେନିରେ ଭୂଷିତାତ୍ମାନଃ ପ୍ରଶଶଂସୁଶ୍ଚ ତଂ ମୁନିମ୍ ।୩୩।
ନରୂପ୍ୟ ସନ୍ନିଧିସ୍ଥାଂ ତୁ ନରସିଂହାକୃତିଂ ଦ୍ୱିଜାଃ ।
ଆଦ୍ୟମୂର୍ତ୍ତେର୍ନୃସିଂହସ୍ୟ ପ୍ରତିମାମଥ ମେନିରେ ।୩୪।
ପ୍ରତ୍ୟୁତ୍ଥାୟ ତତୋ ରାଜା ପ୍ରହୃଷ୍ଟେନାନ୍ତରାତ୍ମନା ।
ପ୍ରଦକ୍ଷିଣୀକୃତ୍ୟ ହରିଂ ଜଗାମ ଶିରସା ମହୀମ୍ ।୩୫।
ଶ୍ରଦ୍ଧାସମନ୍ୱିତୋଯୋଗ୍ୟେନ ସମ୍ଭାରେଣ ନୃପ ଜ୍ଞୟା ।
ସ୍ଥାପୟାମାସ ମୁନିଃ ପ୍ରାସାଦେ ଶୁଭଲକ୍ଷଣାମ୍ ।୩୬।
ପ୍ରତିମାଂ ଦେବଦେବସ୍ୟ ସୁମୁହୂର୍ତ୍ତେ ଦ୍ୱିଜୋତ୍ତମାଃ ।
ଧର୍ମପରାଭ୍ୟାଂ ସହିତାଂ ରତ୍ନବେଦ୍ୟାଂ ପ୍ରତିଷ୍ଠିତାମ୍ ।୩୭।

---

ତାଙ୍କ-ଦର୍ଶନରେ ରାଜା ଓ ରାଜାନୁଗତ ଜନଗଣ ଆହ୍ଲାଦିତ ହୋଇଗଲେ ଏବଂ କହିବାକୁ ଲାଗିଲେ ଯେ, ସେହି ଅନ୍ତର୍ହିତ ଦେବଙ୍କୁ କଅଣ ନାରଦ ନେଇ ଆସିଲେ କି ? ଏହା କହି ସମସ୍ତେ ଆତ୍ମାକୁ କୃତାର୍ଥଜ୍ଞାନ ଓ ମୁନିଙ୍କୁ ବହୁତର ପ୍ରଶଂସା କରିବାକୁ ଲାଗିଲେ । ହେ ଦ୍ୱିଜଗଣ ! ତଦନନ୍ତର ସେହି ପ୍ରତିମାଙ୍କ ସମୀପରେ ସ୍ଥାପିତ ହୁଅନ୍ତେ ସମସ୍ତେ ନରସିଂହଙ୍କ ଆକୃତି ନିରୂପଣ କରି ସେହି ଆଦ୍ୟମୂର୍ତ୍ତି ନୃସିଂହଦେବଙ୍କ ପ୍ରତିମା ବୋଲି ନିଶ୍ଚୟ କଲେ ।୩୪। ତାହାପରେ ଇନ୍ଦ୍ରଦ୍ୟୁମ୍ନ ଅତ୍ୟନ୍ତ ଆନନ୍ଦିତ ହୃଦୟରେ ପ୍ରତ୍ୟୁତ୍ଥାନ କରି ଶ୍ରୀନରସିଂହରୂପୀ ହରିଙ୍କୁ ପ୍ରଦକ୍ଷିଣ ପୂର୍ବକ ଭୂଲୁଣ୍ଠିତ ହୋଇ ମସ୍ତକରେ ପ୍ରଣାମ କଲେ ।୩୫। ହେ ବିପ୍ରୋତ୍ତମ-ଗଣ, ତାହା ପରେ ନାରଦ ଋଷି ନରପତିଙ୍କ ଅନୁମତି କ୍ରମେ ବିଶେଷ ଶ୍ରଦ୍ଧାର ସହିତ ଦେବ ସେବା ଉପଯୋଗୀ ବହୁବିଧ ଉପକରଣ ଦ୍ୱାରା ସେହି ଶୁଭଲକ୍ଷଣା ଦେବଦେବଙ୍କ ପ୍ରତିମାଙ୍କୁ ଶୁଭ ମୁହୂର୍ତ୍ତରେ ପାସାଦ ମଧ୍ୟବର୍ତ୍ତୀ ରତ୍ନବେଦୀ ଉପରେ ପ୍ରତିଷ୍ଠିତ କରି ପରିଚର୍ଯ୍ୟା ନିମିତ୍ତ ଦୁଇଜଣ ବ୍ରାହ୍ମଣଙ୍କ ସହିତ ସ୍ଥାପନ କଲେ ।୩୬।

ଯୋଗାରୂଢ଼ତନ୍ତୁଂ ରାଜା ଇନ୍ଦ୍ରଦ୍ୟୁମ୍ନୋଽଥ ତୁଷ୍ଟୁବେ ।
ବୈଷ୍ଣବୈ ବ୍ରାହ୍ମଣୈ ର୍ଭୂପୈନାରଦେନ ଚ ଧୀମତା ।
ଗୁହ୍ୟୋପନିଷଦୈଃ ସୂକ୍ତୈଃ
ସ୍ତୋତ୍ରୈଃ ଶାସ୍ତ୍ରୈର୍ମୁଦାନ୍ୱିତୈଃ ।୩୮।
ଇନ୍ଦ୍ରଦ୍ୟୁମ୍ନ ଉବାଚ
ଏକାନେକସ୍ଥୂଳସୂକ୍ଷ୍ମାଣୁମୂର୍ତ୍ତେ
ବ୍ୟୋମାତୀତବ୍ୟୋମରୂପୈକରୂପ ।
ବ୍ୟୋମାକାର ବ୍ୟାପକ ବ୍ୟୋମସଂସ୍ଥ
ବ୍ୟୋମାରୂଢ଼ ବ୍ୟୋମକେଶାବ୍ଜଯୋନେ ।୩୯।
ଦୁଃଖାମ୍ଭୋଧେସ୍ତାହି ମାଂ ଦିବ୍ୟସିଂହ
ପ୍ରାଦୁର୍ଭୂତାନେକକୋଟ୍ୟର୍କଧାମନ୍ ।
ନିତ୍ୟାସନ୍ନୋ ଦୂରସଂସ୍ଥୋ ନ ଦୂରେ
ନାସନ୍ନୋ ବା ବୋଧାବୋଧାତ୍ମଭାବଃ ।୪୦।

---

ତଦନନ୍ତର ରାଜା-ଇନ୍ଦ୍ରଦ୍ୟୁମ୍ନ ବୈଷ୍ଣବ, ବ୍ରାହ୍ମଣଗଣ ଓ ଶ୍ରୀ ନାରଦଙ୍କ ସହିତ ଗୁହ୍ୟ ଉପନିଷଦ୍ ଓ ସୂକ୍ତ ଶାସ୍ତ୍ର-ବର୍ଣ୍ଣିତ ସ୍ତୋତ୍ରଦ୍ୱାରା ପରମାନନ୍ଦ ସହକାରେ ସେହି ଯୋଗସ୍ଥିତ ମୂର୍ତ୍ତିଙ୍କୁ ସ୍ତବ କରିବାକୁ ଲାଗିଲେ ।୩୮। ରାଜା ଇନ୍ଦ୍ରଦ୍ୟୁମ୍ନ କହିଲେ, ହେ ଦେବ ! ଆପଣ ଏକ ହୋଇ ମଧ୍ୟ, ଅନେକରୂପୀ ସ୍ଥୂଳରୂପୀ ହୋଇ ମଧ୍ୟ, ଅଣୁପରି ସୂକ୍ଷ୍ମ ମୂର୍ତ୍ତି । ଆପଣ ଆକାଶରୁ ଅତୀତ କିନ୍ତୁ ଆକାଶରୂପୀ, ଆପଣ ଆକାଶତୁଲ୍ୟ ସର୍ବବ୍ୟାପୀ ଅଟନ୍ତି । ଆକାଶ ହିଁ ଆପଣଙ୍କ ଠାରୁ ଉତ୍ପନ୍ନ । ହେ ଦିବ୍ୟସିଂହରୂପିନ୍ ! ଆପଣ ଅନନ୍ତ କୋଟି ସୂର୍ଯ୍ୟ ତେଜପୁଞ୍ଜ ସ୍ୱରୂପ; ଆପଣ ସର୍ବଦା ସନ୍ନିହିତ ହେଲେ ମଧ୍ୟ (ଅଭକ୍ତ ନିକଟରେ ଦୂରସ୍ଥିତ) ଫଳତଃ ଆପଣ ସାଧନାର ନିକଟବର୍ତ୍ତୀ । ଅଳ୍ପ ଅଭ୍ୟାସରେ ସନ୍ନିହିତ ମଧ୍ୟ ନୁହନ୍ତି । ଆପଣ ଜ୍ଞେୟ ଓ ଜ୍ଞାନ ସ୍ୱରୂପ । ଦୟାକରି ମୋତେ ଦୁଃଖ ସାଗରରୁ ପରିତ୍ରାଣ କରନ୍ତୁ ।୪୦।

ଜ୍ଞେୟାଜ୍ଞେୟୋ ଜ୍ଞାନଗମ୍ୟୋଽପ୍ୟଗମ୍ୟୋ
ମାୟାତୀତୋ ମାନମେୟୋଽନୁମାନାତ୍ ।
କୃତ୍ସ୍ନସ୍ୟାଦିଃ କୃତ୍ସ୍ନକର୍ତ୍ତାନୁମନ୍ତା
ପାତା ହର୍ତ୍ତା ବିଶ୍ୱସାକ୍ଷିନ୍ନମସ୍ତେ ।୪୧।
ଦୁଃଖଧ୍ୱଂସସ୍ୟୈକହେତୁଂ ନ ହେତୁଂ
ଭେତ୍ତୁଂ ଛେତ୍ତୁଂ ସଂଶୟାନଗ୍ରଜାତମ୍ ।
ଜ୍ୟୋତିରୂପ ଜ୍ଞାନରୂପ ପ୍ରକାଶ
ବ୍ୟୋମବ୍ୟୂହାକାର ନିର୍ମାଣହେତୋ ।୪୨।
ତ୍ୱତ୍ପାଦାବ୍ଜେ ଭକ୍ତିମଗ୍ର୍ୟାଂ ସଦା ମେ
ଦେହି ସ୍ୱାମିନ୍ ମୂଳଭୂତାଂ ଚତୁର୍ଣ୍ଣମ୍ ।
ଶ୍ରୌତୈଃ ସ୍ମାର୍ତ୍ତୈର୍ନିତ୍ୟଯୁକ୍ତା ଜନାସ୍ତେ
ଦୀନାନ୍ତିଷ୍ଠନ୍ତ୍ୟତ୍ର ବଦ୍ଧା ଭବାବ୍ଧୌ ।୪୩।

---

ଆପଣ ଜ୍ଞେୟ ବସ୍ତୁ ଦ୍ୱାରା ଜ୍ଞେୟ ଏବଂ ଜ୍ଞାନଗମ୍ୟ ହୋଇ ମଧ୍ୟ ଅଗମ୍ୟ, ଆପଣ ମାୟାର ଅତୀତ ହୋଇ ମଧ୍ୟ ମାୟା ବିମୋହିତ ବ୍ୟକ୍ତିମାନଙ୍କର ଅନୁମାନର ଅନୁମେୟ ।୪୧। ଆପଣ ସମସ୍ତଙ୍କର ଆଦି ସର୍ବସ୍ରଷ୍ଟା, ସମସ୍ତଙ୍କ ଅନୁମୋଦନ କର୍ତ୍ତା, ରକ୍ଷିତା ଓ ସଂହର୍ତ୍ତା, ହେ ବିଶ୍ୱସାକ୍ଷିନ୍ ! ଆପଣଙ୍କୁ ନମସ୍କାର କରୁଅଛୁ । ଆପଣ ଦୁଃଖ ଧ୍ୱଂସର ଏକମାତ୍ର ହେତୁ । କିନ୍ତୁ ଆପଣଙ୍କର କୌଣସି ହେତୁ ନାହିଁ । ଆପଣ ସଂସାର ବନ୍ଧନ, ଓ ସଂଶୟ ସମୂହର ଉଚ୍ଛେଦକ । ଆପଣ ସମସ୍ତଙ୍କର ଅଗ୍ରଜାତ, ଏବଂ ଜ୍ୟୋତିଃ ସ୍ୱରୂପ, ଜ୍ଞାନରୂପ ଓ ପ୍ରକାଶ ସମ୍ପନ୍ନ ରୂପ, ଆପଣ ବ୍ୟୂହକାରନିର୍ମାଣର ହେତୁ, ଅତଏବ ଆପଣଙ୍କୁ ନମସ୍କାର ।୪୨। ଆପଣଙ୍କ ପାଦପଦ୍ମରେ ଭକ୍ତି—ଧର୍ମ, ଅର୍ଥ, କାମ ଓ ମୋକ୍ଷର ମୂଳୀଭୂତ, ହେ ସ୍ୱାମିନ୍ ! ମୋତେ ସେହି ପରମା ଭକ୍ତି ପ୍ରଦାନ କରନ୍ତୁ । ଯେଉଁମାନେ ଆପଣଙ୍କ ପ୍ରତି ଭକ୍ତି ଶୂନ୍ୟ ହୋଇ ଶ୍ରୌତ ଓ ସ୍ମାର୍ତ୍ତ କର୍ମ କରନ୍ତି, ସେମାନଙ୍କର ସେ କର୍ମ ଯନ୍ତ୍ରଣାପ୍ରଦ, ତଦ୍‌ଦ୍ୱାରା ସେମାନେ ସଂସାର ସାଗରରେ ବଦ୍ଧ ହୋଇ ଦୀନହୀନ ଭାବରେ ଅବସ୍ଥାନ କରନ୍ତି ।୪୩।

ଅନନ୍ତପାଦଂ ବହୁହସ୍ତନେତ୍ରମନନ୍ତକର୍ଣ୍ଣଂ ନଭୌଘସ୍ତ୍ରମ୍ ।
ଦିବାନିଶାନାଥସୁକୁଣ୍ଡଳାଢ୍ୟାଂ ନକ୍ଷତ୍ରମାଳାକୃତକଣ୍ଠହାରମ୍ ।୪୪।
ତ୍ୱାମଦ୍ଭୁତଂ ଦିବ୍ୟନୃସିଂହମୂର୍ତ୍ତିଂ ଭକ୍ତେଷ୍ଟ-
ପୂର୍ତ୍ତିଂ ଶରଣଂ ପ୍ରପଦ୍ୟେ ।
ଯତ୍ପାଦପଦ୍ମଂ ହି ପିତାମହସ୍ୟ କଣ୍ଠରନ୍ଧ୍ରେ ବିକଚତ୍ୱମେତି ।୪୫।
ଯଦୀୟପାଦାବ୍ଜଯୁଗାନ୍ତଭୂମୌ ଲୁଠନ୍ତି ବୈ ଯସ୍ୟ ହି ପାଞ୍ଚଭୌତମ୍ ।
ତଦ୍ଦିବ୍ୟପାଦଂ ଶିରସା ବହନ୍ତି
ସୁରେନ୍ଦ୍ରନାର୍ଯ୍ୟସ୍ତୁ ତଂ ନମାମି ।୪୬।
ତଦ୍ଦିବ୍ୟସିଂହଂ ହୃତପାପସଙ୍ଘ
ପଦାଶ୍ରିତାନାଂ କରୁଣାବ୍ଧିସିଂହମ୍ ।
ପାଦାବ୍ଜସଙ୍ଘଟ୍ଟ ବିଘଟ୍ଟ ମାନ-
ବ୍ରହ୍ମାଣ୍ଡ ଖଣ୍ଡଂ ପ୍ରଣମାମି ଚଣ୍ଡମ୍ ।୪୭।

---

ହେ ଦେବ, ଆପଣଙ୍କର ଅନନ୍ତପାଦ, ଅନନ୍ତହସ୍ତ, ଅନନ୍ତନେତ୍ର, ଅନନ୍ତ କର୍ଣ୍ଣ । ଗଗନମ୍ ହିଁ ଆପଣଙ୍କର ବସ୍ତ୍ର ସ୍ୱରୂପ । ଚନ୍ଦ୍ର ସୂର୍ଯ୍ୟ ଦୁଇ କର୍ଣ୍ଣର କୁଣ୍ଡଳ ସ୍ୱରୂପ । ନକ୍ଷତ୍ରମାଳା ଆପଣଙ୍କର ମନୋହର କଣ୍ଠହାର । ଆପଣଙ୍କର ଏହି ଅଦ୍ଭୁତ ଦିବ୍ୟ ନୃସିଂହମୂର୍ତ୍ତି ଭକ୍ତମାନଙ୍କର ବାଞ୍ଛା ପୂରକ । ମୁଁ ଆପଣଙ୍କ ଏହି ମୂର୍ତ୍ତିର ଶରଣାପନ୍ନ । ଆପଣଙ୍କର ଯେଉଁ ପାଦପଦ୍ମ ବ୍ରହ୍ମାଙ୍କ କଣ୍ଠ ରନ୍ଧ୍ରରେ ସୁଶୋଭିତ ହୁଏ ଏବଂ ଯେଉଁ ପାଦପଦ୍ମ ପ୍ରାନ୍ତ ଭାଗରେ ନିଖିଳ ପାଞ୍ଚ ଭୌତିକ ଜୀବର ମସ୍ତକ ବିଲୁଣ୍ଠିତ, ସୁର କାମିନୀଗଣ ଯାହା ମସ୍ତକରେ ବହନ କରନ୍ତି, ମୁଁ ଆପଣଙ୍କ ସେହି ପାଦପଦ୍ମରେ ପ୍ରଣାମ କରୁଛି ।୪୬। ଆପଣଙ୍କର ଏହି ଦିବ୍ୟ ନୃସିଂହମୂର୍ତ୍ତି ପାପୀମାନଙ୍କ ପକ୍ଷରେ ପ୍ରଚଣ୍ଡ; ଏବଂ ପାପ ସମୂହର ବିନାଶକ । ପଦାଶ୍ରିତ ବ୍ୟକ୍ତିଙ୍କ ପକ୍ଷରେ ଦୟା ସାଗର । ଆପଣଙ୍କର ଏହି ମୂର୍ତ୍ତି ପାଦ ପଦ୍ମ ସଂଘଟନରେ ବ୍ରହ୍ମାଣ୍ଡ ଖଣ୍ଡ ଭଗ୍ନ ହୁଏ । ଆପଣଙ୍କର ଏହି ମୂର୍ତ୍ତିଙ୍କୁ ପ୍ରଣାମ କରୁଅଛି ।୪୭।

ସଟାଚ୍ଛଟାକମ୍ପନଶୀର୍ଣମାଣଘନୌଘବିଦ୍ରାବିତପାପସଙ୍ଘମ୍ ।
ଚଣ୍ଡାଟ୍ଟହାସାକ୍ରାନ୍ତଶତାବଧିଶବ୍ଦଂ ତ୍ରିଲୋକଗର୍ଭଂ ନୃହରିଂ ନମାମି ।୪୮।
ନମସ୍ତେ ନମସ୍ତେ ନମସ୍ତେଽସ୍ତୁ ବିଷ୍ଣୋ ସଦାନନ୍ଦ ଯାନାନୁକମ୍ପିନ୍ ନାଥମ୍
ଭବନ୍ତଂ ସମାସାଦ୍ୟ ମେ ଦେବଦେବ

ମୁରାରେ ନ ସଂସାର କାରାଗୃହେଽସ୍ତୁ ।୪୯।

ହୟମେଧ ସହସ୍ରାନ୍ତେ ଯଥା ତ୍ୱାଂ ଚର୍ମଚକ୍ଷୁଷା ।
ଦିବ୍ୟରୂପଂ ପ୍ରପଶ୍ୟାମି ତଥାନୁକ୍ରୋଶସ୍ୱ ପ୍ରଭୋ ।୫୦।
ଯଥା ମେଽଶ୍ୱସହସ୍ରଂ ମେ ନିର୍ବିଘ୍ନଂ ତତ୍ର ସମାପ୍ୟତେ ।
ଯଜ୍ଞେଶ ତ୍ୱତ୍ ପ୍ରସାଦାନ୍ନେ ତଥା ସାନ୍ନିଧ୍ୟମସ୍ତୁ ତେ ।୫୧।
ଧର୍ମାର୍ଥକାମା ହ୍ୟସ୍ପୃଷ୍ଟା ନୈଷାଂ ଶଙ୍ଖଂ ସ୍ତୁବନ୍ତି ଯେ ।
ମୋକ୍ଷସ୍ୟ ଭାଜନଂ ବିଷ୍ଣୋ ତେ ନରା ଯେ ତବାଶ୍ରୟାଃ ।୫୨।

---

ଜଟା ସମୂହ କମ୍ପନଦ୍ୱାରା ମେଘସମୂହ ଅପସାରଣ ଛଳରେ ଯେ ପାପରାଶିକୁ ବିତାଡ଼ିତ କରନ୍ତି, ଯାହାଙ୍କର ପ୍ରଚଣ୍ଡ ଅଟ୍ଟହାସ୍ୟ ଦ୍ୱାରା ସମୁଦ୍ର ଗର୍ଜନ ପରିଭୂତ, ସମସ୍ତ ତ୍ରୈଲୋକ୍ୟ ଯାହାଙ୍କ ଉଦର ମଧ୍ୟରେ ଅବସ୍ଥିତ, ସେହି ଶ୍ରୀ ନରହରିଙ୍କୁ ନମସ୍କାର ।୪୮। ହେ ବିଷ୍ଣୋ ! ଆପଣଙ୍କୁ ମୁଁ ବାରମ୍ବାର ପ୍ରଣାମ କରୁଛି । ହେ ଯାନଦସ୍ୟାଳୁ ! ମୁଁ ଅନାଥ, ମୋତେ ରକ୍ଷା କରନ୍ତୁ । ହେ ମୁରାରେ ! ମୁଁ ଯେପରି ଆପଣଙ୍କ ସାକ୍ଷାତ୍‌କାର ପ୍ରାପ୍ତ ହୋଇ ସଂସାର କାରାଗାରରେ ଆଉ ଆବଦ୍ଧ ନ ହେବି ।୪୯। ହେ ପ୍ରଭୋ ! ସହସ୍ର ଅଶ୍ୱମେଧ ଯଜ୍ଞ ପରେ ଆପଣଙ୍କୁ ମୁଁ ଚକ୍ଷୁଦ୍ୱାରା ଦର୍ଶନ କରିପାରିବି, ଅନୁଗ୍ରହ ପୂର୍ବକ ତାହା ହିଁ କରନ୍ତୁ ।୫୦। ହେ ଯଜ୍ଞେଶ୍ୱର ! ମୋର ସଂକଳ୍ପିତ ସହସ୍ର ଅଶ୍ୱମେଧ ଯେପରି ନିର୍ବିଘ୍ନରେ ପରିସମାପ୍ତି ହେବ, ଆପଣ ସନ୍ନିହିତ ହୋଇ ତାହା ହିଁ କରନ୍ତୁ ।୫୧। ହେ ବିଷ୍ଣୋ ! ଯେଉଁମାନେ ଅନନ୍ୟ ଆଶ୍ରିତ ଏବଂ ଆପଣଙ୍କର ଏହି ଅଦ୍‌ଭୁତ ମୂର୍ତ୍ତିଙ୍କୁ ସ୍ତବ କରନ୍ତି; ସେମାନେ ଧର୍ମ, ଅର୍ଥ ଓ କାମକୁ ତୁଚ୍ଛ ଜ୍ଞାନକରି ମୁକ୍ତିର ପାତ୍ର ହୁଅନ୍ତି ।୫୨।

ସ୍ତୁତ୍ୱେତ୍ଥଂ ଦାରୁସିଂହଂ ତଂ ଭୂପତିର୍ହୃଷ୍ଟମାନସଃ ।
ଦଣ୍ଡପାତପ୍ରଣାମେନ ଜଗାମ ଧରଣୀଂ ମୁହୁଃ ।୫୩।

ଶ୍ରୀ ଜୈମିନିରୁବାଚ

କ୍ଷେତ୍ରଂ ତନ୍ନରସିଂହସ୍ୟ ବ୍ରହ୍ମଣା ନିର୍ମିତଂ ପୁରା ।
ଇନ୍ଦ୍ରଦ୍ୟୁମ୍ନାନୁଗ୍ରହାୟ ସର୍ବଲୋକହିତାୟ ଚ ।୫୪।
ପଶ୍ୟନ୍ତି ଯେ ନୃସିଂହଂ ତଂ ଶମ୍ଭୁନା ସହ ସଂସ୍ଥିତମ୍ ।
ନ ଦେହବନ୍ଧଂ ତେ ବିପ୍ରାଃ ପ୍ରାପ୍ନୁବନ୍ତି ନ ସଂଶୟଃ ।୫୫।
ମନସା ବାଞ୍ଛିତଂ ଯଦ୍ୟତ୍ର ପ୍ରାପ୍ନୁବନ୍ତି ତତୋଽଧିକମ୍ ।
ସ୍ତୋତ୍ରେଣାନେନ ଯେ ଦାରୁସିଂହରୂପଂ ସ୍ତୁବନ୍ତି ବୈ ।୫୬।
ସର୍ବକାମପ୍ରଦୋ ଦେବସ୍ତେଷ୍ୟ ମୁକ୍ତିଂ ପ୍ରଯଚ୍ଛତି ।
ଜ୍ୟୈଷ୍ଠଶୁକ୍ଳଦ୍ୱାଦଶୀ ଯା ସ୍ୱାତିନକ୍ଷତ୍ରସଂଯୁତା ।୫୭।
ତସ୍ୟାଂ ପ୍ରତିଷ୍ଠିତଃ କ୍ଷେତ୍ରେ ଦାରୁସିଂହୋ ମହର୍ଷିଣା ।
ସୁତେନ ବ୍ରହ୍ମଣଃ ସାକ୍ଷାତ୍ତ୍ତଂ ତୁ ପଶ୍ୟନ୍ତି ତତ୍ର ଯେ ।୫୮।

---

ନରପତି ଏହାପରେ ହୃଷ୍ଟଚିତ୍ତରେ ସେହି ଦାରୁ ନୃସିଂହ ମୂର୍ତ୍ତିଙ୍କୁ ସ୍ତବ କରି ଭୂତଳରେ ବାରମ୍ବାର ଦଣ୍ଡବତ-ପ୍ରଣାମ କରିବାକୁ ଲାଗିଲେ ।୫୩। ଶ୍ରୀ ଜୈମିନି କହିଲେ—ଏଥି ପୂର୍ବରେ ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ଅନୁଗ୍ରହ କରି ଓ ସମସ୍ତ ଲୋକଙ୍କ ହିତ ନିମିତ୍ତ ଏହି ନୃସିଂହ କ୍ଷେତ୍ର ନିର୍ମାଣ କରିଥିଲେ ।୫୪। ହେ ବିପ୍ରଗଣ ! ଶମ୍ଭୁଙ୍କ ସହିତ ସେହି ନରସିଂହଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ଦେହରୂପ ବନ୍ଧନ ପ୍ରାପ୍ତ ହୁଅନ୍ତି ନାହିଁ ।୫୫। ସେମାନେ ମନଦ୍ୱାରା ଯେଉଁ ଯେଉଁ ବାଞ୍ଛା କରନ୍ତି, ତତୋଧିକ ଫଳ ପ୍ରାପ୍ତ ହୁଅନ୍ତି । ଯେଉଁମାନେ ଏହି ସ୍ତବଦ୍ୱାରା ଦାରୁ ନୃସିଂହ ରୂପକୁ ସ୍ତବ କରନ୍ତି, ସର୍ବାଭୀଷ୍ଟପୂରକ ନୃସିଂହ ଦେବ ସେମାନଙ୍କୁ ମୁକ୍ତି ଦାନ କରନ୍ତି ।୫୬। ମହର୍ଷି ନାରଦ ଜ୍ୟେଷ୍ଠମାସୀୟ ଶୁକ୍ଳା ଦ୍ୱାଦଶୀରେ ସ୍ୱାତି ନକ୍ଷତ୍ର ଯୋଗେ କ୍ଷେତ୍ର ଧାମରେ ଏହି ଦାରୁ ନୃସିଂହ ଦେବଙ୍କୁ ପ୍ରତିଷ୍ଠା କରିଥିଲେ । ଯେଉଁମାନେ ସେହି ସ୍ଥାନକୁ ଗମନ

ବାଜିମେଧସହସ୍ରସ୍ୟ ଫଳଂ ପ୍ରାପ୍ନୁଂ ଲଭନ୍ତି ତେ ।
ପଞ୍ଚାମୃତେନବା କ୍ଷୀରେଣ ନାରିକେଳରସେନ ବା ।୫୯।
ସ୍ନାପୟନ୍ତି ନରା ଯେ ବୈ ଅଥବା ଗନ୍ଧବାରିଣା ।
ପୂଜୟିତ୍ୱା ମହାସିଂହମୁପଚାରୈଃ ସପାଦ୍ୟକୈଃ ।୬୦।
ଜବାକୁସୁମମାଲ୍ୟୈଶ୍ଚ ଗନ୍ଧମାଲ୍ୟୈଃ ସୁଶୋଭନୈଃ ।
ଧୂପୈର୍ଦୀପୈଃ ସକର୍ପୂରୈସ୍ତାମ୍ବୁଲୈରତିଶୋଭନୈଃ ।୬୧।
ସୁଗୀତସ୍ତୁତିପାଠୈଶ୍ଚ ଜୟଶବ୍ଦୈସ୍ତଥୋଚକୈଃ ।
ପ୍ରଦକ୍ଷିଣପ୍ରଣାମୈଶ୍ଚ ଦାନୈର୍ବ୍ରାହ୍ମଣତର୍ପଣୈଃ ।୬୨।
ସନ୍ତୋଷ୍ୟ ନରସିଂହନ୍ତୁ ବ୍ରହ୍ମଲୋକମବାପ୍ନୁୟାତ୍ ।
ବୈଶାଖସ୍ୟ ଚତୁର୍ଦ୍ଦଶ୍ୟାଂ ସୌରବାରେଽନିଳର୍କ୍ଷକେ ।
ଆଦ୍ୟାବତାରଃ ସିଂହସ୍ୟ ପ୍ରଦୋଷସମୟେ ଦ୍ୱିଜା ।୬୩।
ତସ୍ୟାଂ ସମ୍ପୂଜ୍ୟ ବିଧିବନ୍ନ ନରସିଂହଂ ସମାହିତଃ ।
ଜନ୍ମକୋଟିସହସ୍ରୈସ୍ତୁ ପାପରାଶିଃ ସୁସଞ୍ଚିତା ।୬୪।

---

କରି ତାଙ୍କୁ ସାକ୍ଷାତ୍ ଦର୍ଶନ କରନ୍ତି, ସେମାନେ ସହସ୍ର ଅଶ୍ୱମେଧ ଯଜ୍ଞର ସମ୍ପୂର୍ଣ୍ଣ ଫଳ ଲାଭ କରନ୍ତି । ଯେଉଁମାନେ ପଞ୍ଚାମୃତ ବା ଦୁଗ୍ଧ କମ୍ବା ନାରିକେଳ ଜଳ ଅଥବା ଗନ୍ଧ ବାରି ଦ୍ୱାରା ମହାସିଂହରୂପୀ ସେହି ଦେବଦେବଙ୍କୁ ସ୍ନାନ ଓ ପାଦ୍ୟାଦି ଉପଚାର-ଦ୍ୱାରା ପୂଜନ ଏବଂ ଜବା ପୁଷ୍ପମାଲ୍ୟ, ସୁଶୋଭନ ଗନ୍ଧମାଲ୍ୟ, ଧୂପ, ଦୀପ, କର୍ପୂର, ତାମ୍ବୁଳ, ସୁନ୍ଦର ସ୍ତୁତିପାଠ, ଅତ୍ୟୁଚ୍ଚ ଜୟଶବ୍ଦ, ପ୍ରଦକ୍ଷିଣ, ପ୍ରଣାମ, ଦାନ ଓ ବ୍ରାହ୍ମଣମାନଙ୍କର ସନ୍ତୋଷ ବିଧାନ କରନ୍ତି, ସେମାନେ ସର୍ବୋତ୍ତମ ବ୍ରହ୍ମଲୋକକୁ ଗମନ କରନ୍ତି । ଏହି ନୃସିଂହ ଦେବଙ୍କ ଆଦ୍ୟାବତାର ବୈଶାଖ ଶୁକ୍ଳା ଦଶମୀ ଶନିବାର ସ୍ୱାତି ନକ୍ଷତ୍ର ପ୍ରଦୋଷ ସମୟରେ ହୋଇଥିଲା ।୬୩। ଉକ୍ତ ଦିବସରେ ସମାହିତ ହୋଇ ଯଥାବିଧାନରେ ଶ୍ରୀ ନୃସିଂହଙ୍କୁ ପୂଜା କଲେ ତତ୍କ୍ଷଣାତ୍ ସହସ୍ର କୋଟି ଜନ୍ମାର୍ଜିତ ସଞ୍ଚିତ ପାପରାଶି ଅଗ୍ନିରେ

ଦହ୍ୟତେ ତତ୍‌କ୍ଷଣାଦେବ ତୂଳରାଶିରବାଗ୍ନିନା ।
ଦୃଷ୍ଟ୍ୱା ସ୍ପୃଷ୍ଟ୍ୱା ନମସ୍କୃତ୍ୟ ପ୍ରଣିପତ୍ୟ ଚ ଭକ୍ତିତଃ ।୬୫।
ସ୍ତୁତ୍ୱା ବିମୁଚ୍ୟତେ ପାପୈର୍ନିର୍ମୋକେଣ ଭୁଜଙ୍ଗବତ୍ ।
ନ ତସ୍ୟ ବ୍ୟାଧୟଃ ସନ୍ତି ନ ଶୋକା ନାଧୟସ୍ତଥା ।୬୬।
ସର୍ବାନ୍ କାମାନବାପ୍ନୋତି ହ୍ୟଶ୍ୱମେଧଫଳଂ ତଥା ।
ସମୀପେ ତସ୍ୟ ଭୋ ବିପ୍ରା ଯଜନଂ ଦାନମେବ ଚ ।୬୭।
ଅନ୍ୟାନ୍ୟପି ପୁଣ୍ୟକର୍ମାଣି କୃତାନି ଚ ସଜ୍ଜନୈଃ ।
କୋଟିକୋଟିଗୁଣାନି ସ୍ୟୁର୍ନରସିଂହପ୍ରସାଦତଃ ।୬୮।

ଇତି ଶ୍ରୀ ସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନସ୍ୟ ନୃସିଂହମୂର୍ତ୍ତି ପ୍ରତିଷ୍ଠା
ନାମ ଷୋଡ଼ଶୋଽଧ୍ୟାୟଃ ।୧୬।

---

ତୂଳାରାଶିତୁଲ୍ୟ ଭସ୍ମ ହୋଇଯାଏ । ନରସିଂହଙ୍କୁ ଦର୍ଶନ ବା ସ୍ପର୍ଶନ, ନମସ୍କାର, ପ୍ରଣତି ଓ ସ୍ତୋତ୍ର ଭକ୍ତି ସହିତ କଲେ ଭୁଜଙ୍ଗ କଞ୍ଚୁକ ତ୍ୟାଗ କଲା ପରି ପାପର ଆବରଣ ମୁକ୍ତ ହୁଏ । ତାହାର କୌଣସି ପୀଡ଼ା, ଶୋକ ବା ମନଃକ୍ଲେଶ ହୁଏନାହିଁ । ନିଖିଳ ଅଭୀଷ୍ଟ ସାଧନ, ଏପରିକି ଅଶ୍ୱମେଧ ଯଜ୍ଞଫଳ ଲାଭ କରେ । ହେ ବିପ୍ରଗଣ ! ନୃସିଂହଙ୍କ ପ୍ରସାଦରେ ତତ୍କୃତ ଯାଗ, ଯଜ୍ଞ, ଦାନ ଓ ଅନ୍ୟାନ୍ୟ ପୁଣ୍ୟକର୍ମସମୂହ କୋଟି କୋଟି ଗୁଣ ଫଳ ପ୍ରଦାନ କରିଥାଏ ।୬୮। ।

॥ ଷୋଡ଼ଶ ଅଧ୍ୟାୟ ସମାପ୍ତ ॥

## ସପ୍ତଦଶୋଽଧ୍ୟାୟଃ

ମୁନୟ ଊଚୁଃ

ପ୍ରତିଷ୍ଠିତେ ନାରସିଂହେ କ୍ଷେତ୍ରେ ତସ୍ମିନ୍ନୃପାଧିପଃ ।
କିଞ୍ଚକାର ମୁନେ ବ୍ରୂହି ପରଂ କୌତୂହଳ ହି ନଃ ।୧।

ଶ୍ରୀ ଜୈମିନିରୁବାଚ

ଇନ୍ଦ୍ରାଦୀଂସ୍ତ୍ରିଦଶାନ୍ ବିପ୍ରାନାମନ୍ତ୍ରସ୍ତତ ପୂର୍ବତଃ ।
ତତଃ ସମନ୍ତ୍ରୟାମାସ ଋଷୀନ୍ ବିପ୍ରାନ୍ ସହସ୍ରଶଃ ।୨।
ଅଧେତୃଂଶ୍ଚତୁରୋ ବେଦାନ ସ୍ୱଷଡ଼ଙ୍ଗପଦକ୍ରମୈଃ ।
ଯଜ୍ଞବିଦ୍ୟାସୁ କୁଶଳାନ୍ ମୀମାଂସାପରିନିଷ୍ଠିତାନ୍ ।୩।
ସଭିଷ୍ୟକଳ୍ପସମ୍ପନ୍ନ ପରିନିଷ୍ଠିତକର୍ମିଣଃ ।
ଅଷ୍ଟାଦଶସୁ ବିଦ୍ୟାସୁ କୁଶଳାନ୍ ଧର୍ମକୋବିଦାନ୍ ।୪।
ସଦାଗ୍ରରତାଂଶ୍ଚୈବ କୁଲୀନାନ୍ ସତ୍ୟବାଦିନଃ ।
ବୈଷ୍ଣବାଂଶ ବିଶେଷେଣ ମନ୍ତ୍ରୟାମାସ ସାଦରମ୍ ।୫।

---

## ସପ୍ତଦଶ ଅଧ୍ୟାୟ

ମୁନିଗଣ ପ୍ରଶ୍ନ କରୁଛନ୍ତି ଯେ, ହେ ମୁନେ ! ସେହି କ୍ଷେତ୍ର ଧାମରେ ନରସିଂହ ଦେବ ପ୍ରତିଷ୍ଠିତ ହେଲେ, ନରରାଜ ଇନ୍ଦ୍ରଦ୍ୟୁମ୍ନ ତାହା ପରେ କି କାର୍ଯ୍ୟ କଲେ ? ଏହା ଶ୍ରବଣ କରିବା ପାଇଁ ଆମ୍ଭମାନଙ୍କର ଅତିଶୟ କୌତୂହଳ ଜନ୍ମିଅଛି । ୧ । ଜୈମିନି କହିଲେ—ହେ ବିପ୍ରଗଣ ! ସେହି ନୃପବର ସର୍ବ ପ୍ରଥମ ଇନ୍ଦ୍ରାଦି ଦେବତାଙ୍କୁ ନିମନ୍ତ୍ରଣ କଲେ । ତଦନନ୍ତର ସହସ୍ର ସହସ୍ର ବିପ୍ର ଏବଂ ଷଡ଼ଙ୍ଗ ପଦକ୍ରମସହକୃତ ଚତୁର୍ବେଦାଧ୍ୟାୟୀ, ଯଜ୍ଞବିଦ୍ୟା-ପାରଦର୍ଶୀ ମୀମାଂସା ଶାସ୍ତ୍ରନିପୁଣ, ସଭିଷ୍ୟକଳ୍ପକୁଶଳ, ପରିନିଷ୍ଠିତକର୍ମା ଋଷିଗଣ ଏବଂ ଅଷ୍ଟାଦଶ ବିଦ୍ୟା ବିଶାରଦ ଧର୍ମ କୋବିଦ ସଦାଗ୍ରରପରାୟଣ ସତ୍ୟବାଦୀ ସତ୍‌କୁଳସମ୍ଭୂତ ବ୍ୟକ୍ତିଗଣ ଓ ବିଶେଷଭାବେ ବୈଷ୍ଣବମାନଙ୍କୁ ସମାଦର ସହକାରେ ନିମନ୍ତ୍ରଣ କଲେ । ୫ ।

ତୈର୍ଲୋକ୍ୟେ ଯେ ଚ ରାଜାନଃ ସିଦ୍ଧାଶ୍ଚ ଋଷୟୋ ଦ୍ୱିଜାଃ ।
ସଚ୍ଛୂଦ୍ରା ବଣିଜୋ ଦ୍ୱୀପପତୟସ୍ତେ ନିମନ୍ତ୍ରିତାଃ ।୬।
କ୍ରୋଶଦ୍ୱୟମିତା ବପ୍ରାଃ ସଭାସୀତସ୍ୟ ଭୂପତେଃ ।
ପାଷାଣଘଟିତା ପ୍ରୋଚ୍ଚା ସୁଧୟା ସାଧୁ ଲେପିତା ।୭।
କ୍ୱଚିଦ୍ରତ୍ନମୟୀ ଭୂମିଃ କ୍ୱଚିତ୍ କାଞ୍ଚନନିର୍ମିତା ।
ସ୍ଫାଟିକୀ ରାଜତୀ ଚୈବ ଯଥାଯୋଗ୍ୟ କୃତାସ୍ଥଳୀ ।୮।
ସ୍ତମ୍ଭୈ ରତ୍ନମୟୈଃ ପ୍ରୋଚ୍ଚୈର୍ଦୁକୂଲପରିବେଷ୍ଟିତୈଃ ।
ଚାରୁଚନ୍ଦ୍ରାତପାଢ୍ୟା ସା ଗନ୍ଧମାଲ୍ୟୈଃ ସଚାମରୈଃ ।୯।
ଯଜ୍ଞଶାଳା ମରୁତସ୍ୟ ଯଥାସୀଦ୍ ଭୋ ଦ୍ୱିଜୋତ୍ତମାଃ ।
ତଥେନ୍ଦ୍ରଦ୍ୟୁମ୍ନଭୂପସ୍ୟ ରଚିତା ବିଶ୍ୱକର୍ମଣା ।୧୦।

---

ହେ ଦ୍ୱିଜଗଣ ! ଅଧିକ କ'ଣ କହିବି ? ଏହି ତ୍ରୈଲୋକ୍ୟ ମଧ୍ୟରେ ଯେଉଁ ସମସ୍ତ ରାଜା ଓ ସିଦ୍ଧ ଋଷି ଏବଂ ସତ୍ ଶୂଦ୍ର, ବଣିକ (ବୈଶ୍ୟ) ଓ ଦ୍ୱୀପାଧିପ ଥିଲେ, ସେମାନେ ମଧ୍ୟ ନିମନ୍ତ୍ରିତ ହେଲେ ।୬। ହେ ବିପ୍ରଗଣ ! ସେହି ନରପତିଙ୍କ ସଭାସ୍ଥଳ ଦୁଇକ୍ରୋଶ ପରିମାଣ ପ୍ରଶସ୍ତ ହୋଇଥିଲା । ଏହି ସଭା ପାଷାଣ ନିର୍ମିତ ଉଚ୍ଚତା ବିଶିଷ୍ଟ ଏବଂ ସୁଧାଲେପ ଦ୍ୱାରା ଅତ୍ୟନ୍ତ ରମଣୀୟ ହୋଇଥିଲା ।୭। ଠାଏଠାଏ ଏହାର କୌଣସି କୌଣସି ସ୍ଥଳଭୂମି ରତ୍ନମୟୀ, କୌଣସିଟି ସ୍ଥଳ କାଞ୍ଚନ ନିର୍ମିତ । କେଉଁଠାରେ ସ୍ଫଟିକ ଓ ରଜତ ଦ୍ୱାରା ଶୋଭିତ ହୋଇ ସ୍ଥାନଟି ଯଥାଯୋଗ୍ୟ ସୁନ୍ଦର ହୋଇଥିଲା ।୮। ଏହାର ସ୍ତମ୍ଭଗୁଡ଼ିକ ରତ୍ନମୟ ଉଚ୍ଚ ଏବଂ ବସ୍ତ୍ରଦ୍ୱାରା ପରିବେଷ୍ଟିତ । ଉପର ଭାଗରେ ମନୋରମ ଚନ୍ଦ୍ରାତପ ଏବଂ ତହିଁରେ ଚାମର ବ୍ୟଜନ ଓ ଗନ୍ଧମାଲ୍ୟ ବିତରଣ ହେଉଥିଲା ।୯। ହେ ଦ୍ୱିଜଗଣ ! ଯେପରି ମରୁତ ରାଜାଙ୍କର ଯଜ୍ଞଶାଳା ଥିଲା, ସେହିପରି ଇନ୍ଦ୍ରଦ୍ୟୁମ୍ନ ନରପତିଙ୍କ ଯଜ୍ଞସ୍ଥଳୀ ମଧ୍ୟ ବିଶ୍ୱକର୍ମା ଯଥାଯୋଗ୍ୟ ଭାବରେ ରଚନା କରିଥିଲେ ।୧୦।

ଶୁଭେଽହ୍ନି ଶୁଭନକ୍ଷତ୍ରେ ବାସୟିତ୍ୱା ସଭାସଦଃ ।
ରାଜ୍ଞଃ ସିଂହାସନାସୀନାନ୍ ବୃଷ୍ୟାସୀନାନ୍ ଋଷୀନାଥ ।୧୧।
ସସିଦ୍ଧାନ୍ ବ୍ରହ୍ମର୍ଷିଗଣାନ୍ ବହୁମୂଲ୍ୟକୁଶସ୍ଥିତାନ୍ ।
ଦେବାନ୍ କାଞ୍ଚନପୀଠସ୍ଥାନ୍ ଯଥାଯୋଗ୍ୟମଥ ଦ୍ୱିଜାନ୍ ।୧୨।
ବରାସନସ୍ଥାନନ୍ୟାଂଶ୍ଚ ଯଥାଦେଶଂ ସୁଖସ୍ଥିତାନ୍ ।
ମଧ୍ୟେ ନୃପାଣାଂ ଦେବାନା ମୃଷୀଣାଞ୍ଚ ଶଚୀପତିମ୍ ।୧୩।
ସାମ୍ରାଜ୍ୟଲକ୍ଷଣେ ହ୍ୟସ୍ୟ ଚନ୍ଦ୍ରସିଂହାସନେ ସ୍ଥିତମ୍ ।
ଦିବ୍ୟୈର୍ମାଲ୍ୟୈସ୍ତଥା ଗନ୍ଧୈର୍ବାସୋଭିର୍ବିଷ୍ଟରାଦିଭିଃ ।୧୪।
ପୁରୋଧସା ସମଂ ପୂର୍ବମର୍ଚ୍ଚୟାମାସ ଋଦ୍ଧିମତ୍ତ୍ୱ ।
ବିମୀତୋ ଯାନବାହସ୍ୟ ତତ୍ରେ ପୂଜାଂ ତଥା ନୃପଃ ।୧୫।
ତତଃ ସିଦ୍ଧାନ୍ ଦିବ୍ୟମୁନୀନର୍ଚ୍ଚୟିତ୍ୱନ୍ଦ୍ରବଦ୍ଧିଆ ।
ବସୁସ୍ୱଂ ଜନୟାମାସ କୁବେରସ୍ୟାପଧର୍ଷିଣଃ ।୧୬।

---

ନରପତି ଶୁଭଦିନ ତଥା ଶୁଭ ନକ୍ଷତ୍ରରେ ସଭାସଦ୍‌ମାନଙ୍କୁ ନିଜ ନିଜ ମର୍ଯ୍ୟାଦାରେ ନିର୍ଦ୍ଦିଷ୍ଟ କରି ଯଥାଯୋଗ୍ୟ ଆସନରେ ଉପବେଶନ କରାଇଲେ । ରାଜାମାନଙ୍କୁ ସିଂହାସନ, ଋଷିମାନଙ୍କୁ ବୃଷ୍ୟାସନ, ସିଦ୍ଧ ଓ ବ୍ରହ୍ମର୍ଷିଗଣଙ୍କୁ ବହୁମୂଲ୍ୟ କୁଶାସନ, ଦେବତାମାନଙ୍କୁ କାଞ୍ଚନପୀଠ ଏବଂ ଅନ୍ୟାନ୍ୟ ସଭ୍ରାନ୍ତମାନଙ୍କୁ ବରାସନରେ ସଂସ୍ଥାପନ ପୂର୍ବକ ଦେବଗଣ, ଋଷିଗଣ ଭୂପାଳମାନଙ୍କ ମଧ୍ୟରେ ଶଚୀପତିଙ୍କୁ ବିଷ୍ଟରାଦି ପ୍ରଦାନ ପୂର୍ବକ ଦିବ୍ୟ ମାଲ୍ୟ ଓ ଗନ୍ଧ ବସ୍ତ୍ର ପ୍ରଭୃତି ଦ୍ୱାରା ପୁରୋଧାଙ୍କ ସହିତ ସର୍ବପ୍ରଥମେ ସମୃଦ୍ଧି ସହକାରେ ଅର୍ଚ୍ଚନା କଲେ । ରାଜା, ଯାନଗବାହନ ବ୍ୟକ୍ତିମାନଙ୍କୁ ଅତି ବିନୀତ ଭାବରେ ଧନଦାନ ପୂର୍ବକ ପୂଜା କରିବାକୁ ଲାଗିଲେ ।୧୫। ତଦନନ୍ତର ସିଦ୍ଧ ଓ ଦେବର୍ଷିମାନଙ୍କୁ ଇନ୍ଦ୍ରତୁଲ୍ୟ ସମୃଦ୍ଧି ସହିତ ପୂଜା କରନ୍ତେ ଧନାଧୀଶ କୁବେର ମଧ୍ୟ ବିସ୍ମୟୋତ୍ପାଦନ କଲେ ।୧୬।

ତତୋ ଦେବାନ୍ ସମାନର୍ଚ୍ଚ ପ୍ରକୃତାର୍ଥସ୍ୟ ସମ୍ପଦୈଃ ।୧୭।
ତତୋ ବିପ୍ରାନ୍ ବାହୁଜକାନ୍ ବୈଶ୍ୟାନ୍ ମୁନିପୁରଃସରାନ୍ ।
ସ ସମ୍ୟକ୍ ପୂଜୟାମାସ ସନ୍ତୋଷୋଦ୍ରିକ୍ତୋ ମହୀପତିଃ ।୧୮।
ଅନ୍ୟାଂଶ୍ଚ ହରିବଦ୍ଦ୍ୱାରା ପୂଜୟିତ୍ୱା ସସମ୍ଭ୍ରମଃ ।
ହୃଷ୍ଟଃ ସ ବିନୟାନ୍ନମ୍ରଃ କୃତାଞ୍ଜଳିପୁଟସ୍ତଦା ।୧୯।
ମହେନ୍ଦ୍ରମୂର୍ତ୍ତେଃ ପ୍ରାହେଦଂ ନାରଦେନ ପୁରୋଧସା ।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ତବ ପ୍ରସାଦାଦ୍ଦେବେଶ ଇଚ୍ଛାମୀଦଂ ପ୍ରସୀଦ ମେ ।୨୦।
କ୍ରତୁନା ହ୍ୱଶ୍ୱମେଧେନ ପ୍ରଯକ୍ଷ୍ୟେ ଯଜ୍ଞପୁରୁଷମ ।୨୧।
ଅନୁଜାନୀହି ମାଂ ଦେବ କ୍ରତୂନାମୀଶ୍ୱରୋ ଭବାନ୍ ।
ତ୍ୱଦାଜ୍ଞାପାଲକାଃ ସର୍ବେ ତ୍ରୈଲୋକ୍ୟେ ନିବସନ୍ତି ଯେ ।୨୨।

---

ତାହାପରେ ଅନ୍ୟାନ୍ୟ ଦେବତାମାନଙ୍କୁ ଯଥା ବିଧାନରେ ସ୍ୱକୀୟ ସମ୍ପ୍ରଦାୟାନୁଯାୟୀ ଅର୍ଚ୍ଚନା କରି ମୁନିଗଣ, ବ୍ରାହ୍ମଣ ଗଣ ଏବଂ କ୍ଷତ୍ରିୟ ଓ ବୈଶ୍ୟମାନଙ୍କୁ ଯଥାଯୋଗ୍ୟ ପୂଜା କରିବାକୁ ଲାଗିଲେ ।୧୭। ରାଜା ଅନ୍ୟାନ୍ୟ ବ୍ୟକ୍ତିମାନଙ୍କୁ ସସମ୍ଭ୍ରମରେ ହରିବ ଦ୍ୱାରା ପୂଜା କରଣାନନ୍ତର ହୃଷ୍ଟାନ୍ତଃକରଣରେ ବିନୀତ ଓ ନମ୍ର ଭାବ ନେଇ କୃତାଞ୍ଜଳି ପୁଟରେ ନାରଦ ସମଭିବ୍ୟାହାରେ ମହେନ୍ଦ୍ରଙ୍କ ନିକଟକୁ ଯାଇ ଉଚ୍ଚସ୍ୱରରେ ଏହି ପ୍ରକାର ନିବେଦନ କରିବାକୁ ଲାଗିଲେ ।୧୮। ରାଜା କହିଲେ, ହେ ଦେବେଶ୍ୱର ! ଆପଣଙ୍କ ପ୍ରସାଦରୁ ମୁଁ ଏହି ସହସ୍ର ଅଶ୍ୱମେଧ ଯଜ୍ଞ କରିବା ପାଇଁ ଇଚ୍ଛା କରିଅଛି । ଅତଏବ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।୨୦। ମୁଁ ଅଶ୍ୱମେଧ ଯଜ୍ଞଦ୍ୱାରା ଯଜ୍ଞ ପୁରୁଷଙ୍କୁ ପୂଜା କରିବ ।୨୧। ହେ ଦେବ ! ଆପଣ କ୍ରତୁମାନଙ୍କ ଈଶ୍ୱର । ଏଣୁ ମୋତେ ଅନୁମତି କରନ୍ତୁ । ହେ ଦେବ ! ଏହି ତିନି ଲୋକ ମଧ୍ୟରେ ଯେଉଁମାନେ ବାସ କରିଅଛନ୍ତି, ସମସ୍ତେ ହିଁ ଆପଣଙ୍କର ଆଜ୍ଞା ପ୍ରତିପାଳନ କରିଥାଆନ୍ତି ।୨୨।

ଯାବନ୍ନ କ୍ରତୁ ସହସ୍ରସ୍ୟ ସଂସ୍ଥା ଭବତି ମେ ପ୍ରଭୋ ।
ତାବତ୍ତ୍ୱଂ ତ୍ରିଦଶୈଃ ସାର୍ଦ୍ଧଂ ସଦୋ ମଧ୍ୟଗତୋ ବସ ।୨୩।
ଯଷ୍ଟୁମିଚ୍ଛାମି ଦେବେଶ ନାହଂ ତ୍ୱତ୍ତ ପଦାଲିପ୍ସୟା ।
ସର୍ବେଷାଂ ବେତ୍ସି ଦେବେନ୍ଦ୍ର ମନୋବୃତ୍ତିଂ ସଦା ପ୍ରଭୋ ।୨୪।
ଯୁଷ୍ମାକଂ ପୂର୍ବଦୃଷ୍ଟୋଽତ୍ର ବପୁଷ୍ମାନ୍ମାଧବଃ ପ୍ରଭୁଃ ।
ଉପାସନାସ୍ଥାଂ ସୋଽସ୍ତଂ ଯୋ ବାଲୁକାଭିସ୍ତିରୋଦଧେ ।୨୫।
ତସ୍ୟ ଭୂୟଃ ପ୍ରକାଶାର୍ଥଂ ବାଜିମେଧସହସ୍ରକମ୍ ।
କରିଷ୍ୟେ ବଚନାଦସ୍ୟ ଚତୁରାସ୍ୟସ୍ୟ ଶାସନାତ୍ ।୨୬।
ପୁନଃ ପ୍ରକାଶିତେ ତସ୍ମିନ୍ ଶ୍ରେୟୋ ବୋଽପି ଭବିଷ୍ୟତି ।
ଇତି ବିଜ୍ଞାପିତେ ରାଜ୍ଞା ମହେନ୍ଦ୍ରପ୍ରମୁଖାଃ ସୁରାଃ ।
ଅନ୍ତର୍ଦ୍ଧାନାନ୍ତରଂ ଯାଂ ତୁ ଶ୍ରୁତପୂର୍ବାଂ ସରସ୍ୱତୀମ୍ ।
ଅଶରୀରାଂ ସ୍ମରନ୍ତସ୍ତାଂ ଭୂପଂ ପ୍ରୋଚୁଃ ପ୍ରହର୍ଷିତାଃ ।୨୭।

---

ହେ ପ୍ରଭୋ ! ଯେ ପର୍ଯ୍ୟନ୍ତ ମୋର ଏହି ସହସ୍ର ଯଜ୍ଞ ସଂପୂର୍ଣ୍ଣ ନ ହୋଇଛି, ସେ ପର୍ଯ୍ୟନ୍ତ ଆପଣ ଦେବତାମାନଙ୍କ ସହିତ ଏହି ସଭା ମଧ୍ୟରେ ଅବସ୍ଥାନ କରନ୍ତୁ ।୨୩। ମୁଁ ଆପଣଙ୍କ ପଦ ବାସନାରେ ଦେବେଶ୍ୱରଙ୍କ ଯାଗ ଇଚ୍ଛା କରନାହିଁ । ହେ ପ୍ରଭୋ ! ହେ ଦେବେନ୍ଦ୍ର ! ଆପଣ ତ ସର୍ବଦା ସମସ୍ତଙ୍କ ମନୋବୃତ୍ତି ଜାଣୁଛନ୍ତି ।୨୪। ଏହି ସ୍ଥାନରେ ଆପଣଙ୍କ ପ୍ରଭୁ ମାଧବଙ୍କୁ ବପୁଷ୍ମାନ୍ ଦେଖିଥିଲେ । ସେ ବର୍ତ୍ତମାନ ଉପାସନା ଦ୍ୱାରା ବାଲୁକାରାଶିରେ ଅନ୍ତର୍ହିତ ହୋଇଅଛନ୍ତି ।୨୫। ହେ ଇନ୍ଦ୍ର ! ମୁଁ ତାହାଙ୍କର ପୁନଃ ପ୍ରକାଶ ନିମନ୍ତେ ଚତୁରାନନ ବ୍ରହ୍ମାଙ୍କ ଅନୁମତି କ୍ରମେ ସହସ୍ର ଅଶ୍ୱମେଧ ଯଜ୍ଞ କରିବି ।୨୬। ନରପତି ଏହି ପ୍ରକାର ବିଜ୍ଞାପନ କରନ୍ତେ, ମହେନ୍ଦ୍ର ପ୍ରଭୃତି ଦେବଗଣ ଶ୍ରୀମାଧବଙ୍କ ଅନ୍ତର୍ଧାନୋ-ତ୍ତର ସେହି ଶ୍ରୁତପୂର୍ବ ଅଶରୀରୀ ବାଣୀ ସ୍ମରଣ ପୂର୍ବକ ଆନନ୍ଦରେ ନରପତିଙ୍କୁ କହିଲେ ହେ ଇନ୍ଦ୍ରଦ୍ୟୁମ୍ନ ! ତୁମ୍ଭେ ମହାତ୍ମା ଏବଂ

ଇନ୍ଦ୍ରଦ୍ୟୁମ୍ନ ମହାତ୍ମାପି ସତ୍ୟଂ ସତ୍ୟବ୍ରତୋ ଭୁବି ।
ତ୍ୱଚ୍ଚେଷ୍ଟିତଂ ପୁରାସ୍ମାଭିରନ୍ୱଭାବ ଭବିଷ୍ୟକମ୍ ।୨୮।
ସହାୟାସ୍ତେ ଭବିଷ୍ୟାମଃ କାର୍ଯ୍ୟେ ତ୍ରୈଲୋକ୍ୟପାବନେ ।
ସ୍ରଷ୍ଟାପି ଜଗତାଂ ଯତ୍ର ଯଦ୍ୟୁକ୍ତଃ ସ୍ୱୟମେବ ହି ।୨୯।
ଅତ୍ରୈବୋବାଚ ଭଗବାନସ୍ମାକମପି ଭୂତଲେ ।
ପ୍ରବେଶଂ ତ୍ୱଦନୁକ୍ରୋଶବଶାଦ୍ ଭୂୟଃ ପ୍ରକାଶନମ୍ ।
କରିଷ୍ୟେ ଦାରବଂ ଦେହମିତ୍ୟେତତ୍ର ପରିନିଷ୍ଠିତମ୍ ।୩୦।
ନାସ୍ମାକଂ ବ୍ୟଲୀକନ୍ତୁ ନେନ୍ଦ୍ରସ୍ୟ ଚ ମହୀପତେ ।
ଅସ୍ମଦର୍ଥେ ସମୁଦ୍ୟୋଗସ୍ତବ ନଃ ପ୍ରୀତିକାରକଃ ।
ତୁଷ୍ଟଂ ଯଜସ୍ୱ ରାଜେନ୍ଦ୍ର ବୈକୁଣ୍ଠଂ ଭକ୍ତବତ୍ସଳମ୍ ।୩୧।
କ୍ରତୁନା ହୟମେଧେନ ସହସ୍ରମଶବର୍ତ୍ତିନା ।
ଦୁରାରାଧ୍ୟୋ ହି ଭଗବାନସ୍ମାକଂ ଭକ୍ତବତ୍ସଳଃ ।୩୨।

---

ପୃଥିବୀରେ ଯଥାର୍ଥ ସତ୍ୟବ୍ରତାବଲମ୍ବୀ । ତୁମ୍ଭର ଏହି ଭବିଷ୍ୟତ ଚେଷ୍ଟିତ ବିଷୟ ପୂର୍ବରୁ ଆମ୍ଭେମାନେ ଅନୁଭବ କରିଅଛୁ ।୨୮। ଅତଏବ ତୁମ୍ଭର ଏହି ତ୍ରୈଲୋକ୍ୟପାବନ କାର୍ଯ୍ୟରେ ଆମ୍ଭେମାନେ ସାହାଯ୍ୟ କରିବୁ । ସେହି ଜଗତ୍ସ୍ରଷ୍ଟା ଜଗଦୀଶ୍ୱର ସ୍ୱୟଂ ଉକ୍ତ କାର୍ଯ୍ୟରେ ଉଦ୍ୟୋଗୀ ଅଛନ୍ତି ।୨୯। ଭଗବାନ ଏହି ସ୍ଥାନରେ ଆମ୍ଭମାନଙ୍କୁ କହିଥିଲେ ଯେ, ପାତାଳ ପ୍ରବେଶାନନ୍ତର ଇନ୍ଦ୍ର-ଦ୍ୟୁମ୍ନଙ୍କୁ ଦୟା କରିବା ନିମନ୍ତେ ପୁନର୍ବାର ପୃଥିବୀରେ ଦାରୁମୟ ଦେହ ଗ୍ରହଣ କରି ପ୍ରକାଶିତ ହେବ । ଏହା ମୋର ନିଶ୍ଚୟ ହୋଇଅଛି ।୩୦। ସୁତରାଂ ହେ ମହୀପତେ ! ଏ ବିଷୟରେ ଆମ୍ଭ-ମାନଙ୍କର ବା ଦେବେନ୍ଦ୍ରଙ୍କର କୌଣସି ଅସନ୍ତୋଷ ନାହିଁ । ଆମ୍ଭମାନଙ୍କ ଉଦ୍ଦେଶ୍ୟରେ ଯାଗାନୁଷ୍ଠାନ ତୁମ୍ଭର କୌଣସି ଅପ-କାରକ ହେବ ନାହିଁ । ଅତଏବ ହେ ପରମ ଭକ୍ତବତ୍ସଳ ବୈକୁଣ୍ଠନାଥଙ୍କୁ ଯାଗଯଜ୍ଞାଦି ଦ୍ୱାରା ପରିତୁଷ୍ଟ କର ।୩୧। ଭଗବାନ ଦୁରାରାଧ୍ୟ ହେଲେ ମଧ୍ୟ ଆମ୍ଭେମାନେ ବହୁ ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରି ତାଙ୍କର ପ୍ରୀତି ବିଧାନ କରିବା ।୩୨।

ବୟମପ୍ୟତ୍ର ଦେବତ୍ୱଂ ତ୍ୟକ୍ତ୍ୱା ଭକ୍ତିପରାୟଣାଃ ।
ଆରାଧୟାମଃ କ୍ଷେତ୍ରେଽସ୍ମିନ୍ ବନୀତା ନରରୂପିଣଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ କର୍ମ ସିଦ୍ଧତି ବୈକୃତମ୍ ।୩୩।

ଶ୍ରୀ ଜୈମିନିରୁବାଚ

ଇତ୍ୟୁକ୍ତେ ତ୍ରିଦଶୈଃ ସେନ୍ଦ୍ରୈଃ ପରିତୁଷ୍ଟାନ୍ତରାତ୍ମନା ।
ଆରମ୍ଭାର୍ଥଂ କ୍ରତୋ ରାଜା ଭଗବନ୍ତମପୂଜୟତ୍ ।
ଉପଚାରସହସ୍ରୈସ୍ତୁ ଯଥାବଦ୍ଧ୍ରୁ ପ୍ରତିପାଦିତୈଃ ।
ତତଃ ପିତୃଗଣାନ୍ ରାଜା ନିରୂପ୍ୟ ଶ୍ରଦ୍ଧୟାନ୍ୱିତ୍ୟ ।୩୪।
ସଦୋ ଗୃହଗତାନ୍ ବିପ୍ରାନ୍ ଯାଜ୍ଞିକାନ୍ ସମଲଙ୍କୃତାନ୍
କୃତ୍ୱେଷ୍ଟଦେବଂ ପୁରତୋ ବୈକୁଣ୍ଠଂ ସାଗ୍ନିହୋତ୍ରକମ୍ ।
ଆକାଙ୍କ୍ଷନ୍ କଳ୍ପିତଂ ଲଗ୍ନଂ ସବୃତ୍ତେ ସ୍ୱସ୍ତିବାଚନେ ।୩୫।

---

ଆମ୍ଭେମାନେ ଏହି କ୍ଷେତ୍ରରେ ଦେବତ୍ୱଗ୍ରହ ପରିତ୍ୟାଗ ପୂର୍ବକ ନରରୂପୀ ହୋଇ ତନ୍ମୟ ଭକ୍ତି ସହକାରେ ଭଗବାନଙ୍କୁ ଆରାଧନା କରିବା । କାରଣ ଏହି ଲୋକରେ ଯଥାବିଧାନ କୃତକର୍ମ ହେଲେ ସିଦ୍ଧି ହୋଇଥାଏ ।୩୩। ଜୈମିନି କହିଲେ— ଇନ୍ଦ୍ରାଦି ଦେବଗଣ ଆନ୍ତରିକ ଯତ୍ନ ସହିତ ସନ୍ତୁଷ୍ଟ ହୋଇ ଏହି କଥା କହିଲେ, ନରପତି ଯଜ୍ଞ ଆରମ୍ଭାର୍ଥେ ଯଥାବିଧି ସହସ୍ର ସହସ୍ର ଉପଚାର ଦ୍ୱାରା ଭଗବାନଙ୍କର ପୂଜା ଓ ପିତୃଗଣଙ୍କ ନାନ୍ଦୀଶ୍ରାଦ୍ଧ ଶ୍ରଦ୍ଧା ସହକାରେ ସମ୍ପାଦନ କଲେ ।୩୪। ତଦନନ୍ତର ସଭାଗୃହ ସମାଗତ ଯାଜ୍ଞିକ ବ୍ରାହ୍ମଣମାନଙ୍କୁ ସମ୍ୟକ ଅଲଙ୍କୃତ କରି ଅଗ୍ନିହୋତ୍ରଙ୍କ ସହିତ ଅଭୀଷ୍ଟଦେବ ବୈକୁଣ୍ଠନାଥଙ୍କୁ ଅଗ୍ରଭାଗରେ ରଖି ନିର୍ଦ୍ଦିଷ୍ଟ ଶୁଭଲଗ୍ନ ସମୟକୁ ପ୍ରତୀକ୍ଷା କରି ରହିଲେ । ସ୍ୱସ୍ତିବାଚନର (ମଙ୍ଗଳାଚରଣ) ଯୋଗ୍ୟ କାଳ ଉପସ୍ଥିତ ହୁଅନ୍ତେ, ସେ (ରାଜା) ସସ୍ତ୍ରୀକ ବିଶୁଦ୍ଧ ମାଙ୍ଗଲ୍ୟ ବେଶ ଧାରଣ ପୂର୍ବକ ଶୁଦ୍ଧାଗୃହୀ ବ୍ରାହ୍ମଣମାନଙ୍କ ଦ୍ୱାରା

ଉପସ୍ଥିତଃ ସପତ୍ନୀକଃ ଶୁଭମାଙ୍ଗଲ୍ୟବେଶଧୃକ୍ ।
ସ୍ୱସ୍ତିବାଚ୍ୟ ଦ୍ୱିଜାନ୍ ଶୁଦ୍ଧାନ୍ ପୁଣ୍ୟାହବୃଦ୍ଧିକର୍ମ ଚ ।
ତତଃ ସମ୍ଭୃତସମ୍ଭାରୋ ବରୟାମାସ ଋତ୍ୱିଜଃ ।୩୬।
କୃତାନ୍ତେ ତୁ ସପତ୍ନୀକଂ ଦୀକ୍ଷୟନ୍ତୋ ନୃପୋତ୍ତମମ୍ ।
ବିକୃତ୍ୟ ଦୀକ୍ଷଣୀୟେଷ୍ଟ୍ୟା ଅଯଜନ୍ ସଭ୍ୟଗ୍ରେଦତାଃ ।
ପ୍ରଣୀୟ ତଂ ପ୍ରଜ୍ୱଳନ୍ତଂ ବେଦ୍ୟାମାହବନୀୟକମ୍ ।
ତ୍ରୈଲୋକ୍ୟମଙ୍ଗଳକରଂ କଂ ସାକ୍ଷାତ୍ ବୈଷ୍ଣବଂ ମହଃ ।
ସୁପ୍ରୋକ୍ଷିତଞ୍ଚାନୁମନ୍ତ୍ର୍ୟାନୁଜ୍ଞାପ୍ୟ ଦ୍ୱିଜାଧୀଶ୍ୱରାନ ।୩୭।
ମୁମୁଚୁସ୍ତେ ହୟଂ ମୁଖ୍ୟମଙ୍ଗେଷୁ ଶୁଭଲକ୍ଷଣମ୍ ।୩୮।
ତତଃ ସ ଦୀକ୍ଷିତୋ ରାଜା ବାଗ୍ୟତୋ ରୌରବୀଂ ତ୍ୱଚମ୍ ।
ଅଧିଷ୍ଠାୟ ସଦୋମଧ୍ୟେ ମୃତ୍ୟୁଞ୍ଜୟ ଇବ ସ୍ଥିତଃ ।୩୯।
ନିମନ୍ତ୍ରିତାନାଂ ଭୁକ୍ତ୍ୟର୍ଥଂ ଚକ୍ଷୁଷା ସନ୍ଦଦେଶ ବୈ ।୪୦।

---

ପୁଣ୍ୟାହ ବୃଦ୍ଧି ଓ ସ୍ୱସ୍ତିବାଚନ ପୂର୍ବକ ରାଜଯୋଗ୍ୟ ଉପକରଣ ପ୍ରଦାନ ସହକାରେ ଋତ୍ୱିକମାନଙ୍କୁ ବରଣ କଲେ ।୩୬। ତଦନନ୍ତର ସେହି ସତ୍ୟବ୍ରତ ଋତ୍ୱିକଗଣ ସପତ୍ନୀକ ନୃପୋତ୍ତମଙ୍କୁ ଯଜ୍ଞରେ ଦୀକ୍ଷିତ କରାଇ ବେଦୀର ଉପରଭାଗରେ ତ୍ରୈଲୋକ୍ୟ ମଙ୍ଗଳକର ସାକ୍ଷାତ୍ ବୈଷ୍ଣବ ତେଜ ପୁଞ୍ଜାଧିକ ଜ୍ୱଳନ୍ତ ଆହବନୀୟ ବହ୍ନିର ପ୍ରଣୟନ, ପ୍ରୋକ୍ଷଣ, ଅନୁମନ୍ତ୍ରଣ ଓ ଦ୍ୱିଜପାଳମାନଙ୍କୁ ଅନୁଜ୍ଞାପନ ପୂର୍ବକ ଦୀକ୍ଷଣୀୟ ଅଶ୍ୱମେଧ ଯଜ୍ଞରେ ଅଭୀଷ୍ଟ ଦେବଙ୍କୁ ବିଶେଷ କରି ଯାଗ କଲେ, ଅର୍ଥାତ୍ ଯଜନା କଲେ ।୩୭। ପରେ ଶୁଭ-ଲକ୍ଷଣାଙ୍କ ଗୋଟିଏ ପ୍ରଧାନ ଅଶ୍ୱକୁ ଛାଡ଼ିଦେଲେ ।୩୮। ଏଣେ ନରପତି ଦୀକ୍ଷିତ ହୋଇ ବାକ୍ୟ ସଂଯମନପୂର୍ବକ ସଭା ମଧ୍ୟରେ ରୌରବ ଚର୍ମାସନରେ ଅବସ୍ଥାନ କରି ସାକ୍ଷାତ୍ ମୃତ୍ୟୁଞ୍ଜୟତୁଲ୍ୟ ଶୋଭା ପାଇବାକୁ ଲଗିଲେ । ରାଜା ନିମନ୍ତ୍ରିତ ବ୍ୟକ୍ତିମାନଙ୍କର ଭୋଜନ ନିମନ୍ତେ ତତ୍ତ୍ୱାବଧାରକମାନଙ୍କୁ ନୟନ ଇଙ୍ଗିତ ଦ୍ୱାରା ଆଦେଶ କଲେ ।୪୦।

ସୁରାଣାଂ ରତ୍ନପାତ୍ରାଣି ମହାର୍ଘାଣି ନୃପାଜ୍ଞୟା ।
ସତତଃ କାରୟାମାସ ଭୋଜନାୟ ସମୃଦ୍ଧିମତ୍ ।
ଶୁଦ୍ଧସୌବର୍ଣ୍ଣପାତ୍ରାଣି ମୁନୀନାଞ୍ଚ ମହୀକ୍ଷିତାମ୍ ।
ଦ୍ୱିଜାନାଂ ଭୋଜନାର୍ଥାୟ ନବାନ୍ନ ପ୍ରତ୍ୟହଂ ଦ୍ୱିଜାଃ ।
କ୍ଷତ୍ରସ୍ୟାଣାଂ ବିଶାଂ ବିପ୍ରା ରଜତାନ୍ ଶୁଭାନ୍ ଚ ।
କାଂସ୍ୟନିର୍ମଳପାତ୍ରାଣି ଶୂଦ୍ରାଣାଂ ଭୋଜନାୟ ବୈ ।୪୧।
ଅହନ୍ୟହନି ପାତ୍ରାଣି ଭୋଜନାନ୍ତେ ଦ୍ୱିଜୋତ୍ତମାଃ ।
ଆକରେଷୁ ପ୍ରସଦ୍ୟନ୍ତେ ଯୋଚ୍ଛିଷ୍ଟଦଲବର୍ଜନୈଃ ।୪୨।
ତସ୍ମିନ୍ ଯଜ୍ଞୋତ୍ସବେ ଯେ ବୈ ଭୋଜନାୟ ନିମନ୍ତ୍ରିତାଃ ।
ତେଷାଂ ପୁତ୍ରାଶ୍ଚ ପୌତ୍ରାଶ୍ଚ ପ୍ରପୌତ୍ରାଶ୍ଚୈବ ସନ୍ତତଃ ।
ନିତ୍ୟଂ ପଞ୍ଚଶତାବ୍ଦାନ୍ ବହୁମାନପୁରଃସରମ୍ ।
ଆଦୃତ୍ୟ ଭୋଜିତା ରାଜ୍ଞ ଇନ୍ଦ୍ରଦ୍ୟୁମ୍ନସ୍ୟ ଶାସନାତ୍ ।
କୁଟୁମ୍ବବନ୍ତ୍ସ୍ଥିତାସ୍ତତ୍ର ଯଜ୍ଞା ଯାବନ୍ନୁହାନ୍ତତୋଃ ।୪୩।

---

ରାଜସଚିବ ନରପତିଙ୍କ ଅନୁମତି ପାଇ ଭୋଜନ ନିମିତ୍ତ ଦେବତାମାନଙ୍କୁ ମହାର୍ଘ ରତ୍ନପାତ୍ର ସମୃଦ୍ଧ; ମୁନିଗଣ, ବ୍ରାହ୍ମଣଗଣ ଏବଂ ରାଜାମାନଙ୍କ ନିମନ୍ତେ ବିଶୁଦ୍ଧ ସୁବର୍ଣ୍ଣ ପାତ୍ର ସମୃଦ୍ଧ, କ୍ଷତ୍ରିୟ-ବୈଶ୍ୟମାନଙ୍କ ପାଇଁ ନିର୍ମଳ ରୌପ୍ୟପାତ୍ର, ଶୁଦ୍ରମାନଙ୍କ ନିମନ୍ତେ କାଂସ୍ୟ ନିର୍ମିତ ପରିଷ୍କୃତ ପାତ୍ରରାଶି ଦୈନନ୍ଦିନ ସମୃଦ୍ଧି ସହକାରେ ଆହରଣ କରିବାକୁ ଲାଗିଲେ ।୪୧। ହେ ଦ୍ୱିଜଗଣ ! ପ୍ରତ୍ୟହ ଭୋଜନ ଶେଷରେ ସେମାନେ ଏହି ସମସ୍ତ ବହୁମୂଲ୍ୟ ପାତ୍ର ଉଚ୍ଛିଷ୍ଟ କଦଳୀପତ୍ର ତୁଲ୍ୟ ରାଶି ରାଶି ପରିତ୍ୟାଗ କରନ୍ତି ।୪୨। ସେହି ଯଜ୍ଞୋତ୍ସବରେ ଭୋଜନ ନିମିତ୍ତ ଯେଉଁ ଯେଉଁମାନେ ନିମନ୍ତ୍ରିତ ହୋଇଥିଲେ, ସେମାନଙ୍କର ପୁତ୍ର ପୌତ୍ରାଦି କ୍ରମେ ସନ୍ତାନଗଣ ପଞ୍ଚଶତ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟହ ବହୁ ସମ୍ମାନ ସହକାରେ ସମାଦୃତ ହୋଇ ଭୋଜନ କରୁଥାନ୍ତି । ଅଧିକନ୍ତୁ ଇନ୍ଦ୍ରଦ୍ୟୁମ୍ନ ନରପତିଙ୍କ ଶାସନ ବଳରେ ସେମାନେ ସେହି ମହାଯଜ୍ଞ ସମାପ୍ତିକାଳ ପର୍ଯ୍ୟନ୍ତ ନିଜ ପରିବାର ପରି ଅବସ୍ଥାନ କରୁଥିଲେ ।୪୩।

ନାନାଦେଶୀୟା ଜନାସ୍ତେଷାମଧିଷ୍ଠାତା ଚ ତାନ୍ ନୃପଃ ।
ନୃପାଣାମନୁସନ୍ଧାତା ଇନ୍ଦ୍ରଦ୍ୟୁମ୍ନ ପ୍ରଯାଚତଃ ।
ନାରଦଃ ସମଦର୍ଶୀ ଚ ପରୋପକୃତଲୋଲୁପ ।୪୪।
ଇନ୍ଦ୍ରାଦୀନାଂ ସୁରେନ୍ଦ୍ରାଣାଂ ଦେବର୍ଷୀଣାଂ ନୃପୋତ୍ତମଃ ।
ସ୍ୱୟନ୍ତୁ ନୃପତିଶ୍ଚର୍ଯ୍ୟାଂ ଚକାର ବହୁପ୍ରୀତିଯୁକ୍ ।୪୫।
ନରାଣାଂ ଦୁର୍ଲଭଂ ମର୍ତ୍ତ୍ୟଂ ଇନ୍ଦ୍ରଦ୍ୟୁମ୍ନଗୃହେଽଶନମ୍ ।
ଇନ୍ଦ୍ରଦ୍ୟୁମ୍ନସ୍ୟ ଚେନ୍ଦ୍ରସ୍ୟ ବିଶେଷୋ ମର୍ତ୍ତ୍ୟବାସିତା ।୪୬।
ଅତ୍ୟଦ୍ଭୁତକରସ୍ତେ ହ୍ୟେତତ୍ ପ୍ରତ୍ୟହଞ୍ଚ ନବଂ ନବମ୍ ।
ସମ୍ମାନନାଦରୈ ବୃଦ୍ଧି ର୍ଭୋଜ୍ୟସ୍ୟ ଦ୍ୱିଜସତ୍ତମାଃ ।୪୭।
ଅନ୍ୟୋନ୍ୟସ୍ପର୍ଦ୍ଧ୍ୟୈବାସ ପ୍ରବର୍ତ୍ତନ୍ତେ ପରସ୍ପରମ୍ ।
ସୁଗନ୍ଧସୁମନୋମାଲ୍ୟକସ୍ତୁରୀଚନ୍ଦନଲେପନମ୍ ।୪୮।

---

ବହୁ ଦେଶୀୟ ନିମନ୍ତ୍ରିତ ବହୁ ବହୁ ବ୍ୟକ୍ତିମାନଙ୍କ ତତ୍ତ୍ୱାବଧାନ ନିର୍ବିଘ୍ନରେ ସମ୍ପନ୍ନ ହେବ ବୋଲି ଏହିପରି କରି ଯାଇଥିଲି ଯେ, ଯେଉଁମାନେ ଯେଉଁ ଦେଶର ବ୍ୟକ୍ତି, ସେମାନଙ୍କର ତତ୍ତ୍ୱାବଧାରକ ସେହି ଦେଶର ନରପତି । ସେ ସମସ୍ତ ନରପାଳମାନଙ୍କ ତତ୍ତ୍ୱାବଧାନ ଭାର, ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାର୍ଥନା କ୍ରମେ ପରୋପକାର-ଲୋଲୁପ, ସର୍ବସମାନଦର୍ଶୀ, ଦେବର୍ଷି ନାରଦ ହିଁ ବହନ କରୁଥିଲେ ।୪୪। ଯଜ୍ଞସିଦ୍ଧି ହେତୁ ଇନ୍ଦ୍ରାଦି ଦେବଗଣ ଓ ଦେବର୍ଷି-ମାନଙ୍କ ପରିଚର୍ଯ୍ୟା ନରପତି ସ୍ୱୟଂ କରୁଥାନ୍ତି ।୪୫। ମର୍ତ୍ତ୍ୟଲୋକରେ ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କ ଗୃହରେ ଯେଉଁ ଆହାର୍ଯ୍ୟ ପଦାର୍ଥ, ତାହା ମନୁଷ୍ୟ ପକ୍ଷରେ ଅତି ଦୁର୍ଲଭ । ଏହି ରାଜା ଇନ୍ଦ୍ରଦ୍ୟୁମ୍ନ ଏବଂ ଦେବରାଜ ଇନ୍ଦ୍ରଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥାଏ, କେବଳ ଏ ମର୍ତ୍ତ୍ୟ ଲୋକରେ ବାସ କରନ୍ତି ଏବଂ ଇନ୍ଦ୍ର ସ୍ୱର୍ଗରେ ବାସ କରନ୍ତି—ଏହିମାତ୍ର ପାର୍ଥକ୍ୟ ।୪୬। ସେତେବେଳେ ରାଜାଙ୍କ ଗୃହରେ ପ୍ରତ୍ୟହ ଅଭିନବ ସମ୍ମାନ ତଥା ସମାଦର, ନବନବ ଭୋଜ୍ୟ ସମସ୍ତ ବିବର୍ଦ୍ଧିତ ହେବାକୁ ଲାଗିଲା ।୪୭। ସୁଗନ୍ଧ ପୁଷ୍ପ-

ଚନ୍ଦନ୍ ସୂକ୍ଷ୍ମଦୁକୂଲାନି ସୋପାଧାନାସନାନି ଚ ।
ରତ୍ନପର୍ଯ୍ୟଙ୍କିକା ଶଯ୍ୟା ରତ୍ନଦଣ୍ଡପ୍ରକୀର୍ଣ୍ଣକମ୍ ।୪୯।

ଜାତୀଲବଙ୍ଗକର୍ପୂରୈର୍ନାଗବଲ୍ଲୀଦଲାନି ଚ ।
ମନୋହରାଣି ଗୀତାନି ନୃତ୍ୟାନି ବିବିଧାନି ଚ ।୫୦।

ଭରତସ୍ୟ ମୁନେଃ ଶିକ୍ଷାପଣ୍ଡିତୈ ରଚିତାନି ଚ ।
ସ୍ୱ ସ୍ୱ ବଂଶଯଶୋଽଭିଜ୍ଞଃ ଶତଶଃ ସୂତମାଗଧାଃ ।୫୧।

ଏତାନ୍ୟନ୍ୟାନି ବସ୍ତୁନି ଦୁର୍ଲଭାନ୍ୟପି ଯାନିବୈ ।
ତ୍ରିଦଶାଶ୍ଚାପି ମର୍ତ୍ତ୍ୟାସ୍ତାନ୍ୟଭୁଞ୍ଜନ୍ତ ସୁସାଦରମ୍ ।୫୨।

ଏକତୋଽନ୍ୟତ ଚାଣି ନ ଚ ସ୍ୱାନାନି କୃତଚନ୍ଦ୍ର ।
ପାତାଳବାସିନାଞ୍ଚାପି ଭୋଜନଂ ବୈ ସୁଧାଧିକମ୍ ।୫୩।

---

ମାଲ୍ୟ କସ୍ତୁରୀ ଆଦି ବିଲେପନ ଦ୍ରବ୍ୟ, ବିଚିତ୍ର ସୂକ୍ଷ୍ମ ବସନ, ଉପାଧାନ (ତକିଆ) ସମନ୍ୱିତ ଶଯ୍ୟାରେ ରତ୍ନପଲଙ୍କ, ରତ୍ନଦଣ୍ଡଯୁକ୍ତ ଚାମର, ଜାଈ, ଲବଙ୍ଗ, କର୍ପୂର, ତାମ୍ବୂଳ ପ୍ରଭୃତି ମନୋହର ଦ୍ରବ୍ୟ, ମନୋହର ଗୀତ ଓ ବିବିଧ ପ୍ରକାର ନୃତ୍ୟ, ପରସ୍ପର ସ୍ପର୍ଦ୍ଧା କରି ସମସ୍ତେ ସ୍ୱ ସ୍ୱ ଗୁଣ ଭାବରେ ବିବର୍ଦ୍ଧିତ ହୋଇ ବିଚରିତ ହେବାକୁ ଲାଗିଲେ ।୫୧। ସ୍ୱର୍ଗଲୋକରେ ଯାହା ଅତ୍ୟନ୍ତ ଦୁର୍ଲଭ, ମର୍ତ୍ତ୍ୟବାସୀଗଣ ଶ୍ରୀ ଇନ୍ଦ୍ରଦ୍ୟୁମ୍ନଙ୍କ ଗୃହରେ ତାହା ପରମାଦୃତ ହୋଇ ଉପଭୋଗ କଲେ । ଏକତ୍ର ଏପରି ଅଦ୍ଭୁତ ଉପଚାର ସମବାୟ ଅନ୍ୟତ୍ର ବିରଳ ।୫୨। ରାଜାଙ୍କର ଧନବ୍ୟୟ ଓ ସମାଦର ସମ୍ପର୍କରେ ତ୍ରୁଟି ନ ଥିଲା । ପାତାଳବାସୀଗଣ ଆସି ସୁଧା ଅପେକ୍ଷା ଅତ୍ୟନ୍ତ ମଧୁର ଖାଦ୍ୟ-ସାମଗ୍ରୀ ଭୋଜନ କରିବାକୁ ଲାଗିଲେ ।୫୩।

ସ୍ମୃତିକାରାଃ କଳ୍ପକାରାସ୍ତଥା ଶାସ୍ତ୍ରପ୍ରଣେତୃକାଃ ।
ଯଜ୍ଞାନୁଷ୍ଠାନକୁଶଳାଃ ସଦାଚାରାବତଂସକାଃ ।
ଅଗ୍ନ୍ୟାଧାନାଦ୍ୟବଭୃଥପ୍ରଚାରମନୁପୂର୍ବଶଃ ।
ଚକ୍ରୁଃ ସଦସ୍ୟାନୁମତେ ନୃପତେଃ ପ୍ରୀତୟେ ଦ୍ୱିଜାଃ ।୫୪।
ନ ମନ୍ତ୍ରାଃ ସ୍ୱରତୋ ହୀନା ବର୍ଣ୍ଣତୋ ବାପି କର୍ହିଚିତ୍ ।
ଯେ ବୈ ବିଧିବିଧାତାରସ୍ତେ ବୈ କର୍ମପ୍ରବର୍ତ୍ତକାଃ ।୫୫।
ଇତ୍ଥଂ ପ୍ରବର୍ତ୍ତିତୋ ଯଜ୍ଞସ୍ତ୍ରୈଲୋକ୍ୟପ୍ରୀତିକାରକଃ ।
ଇନ୍ଦ୍ରଦ୍ୟୁମ୍ନସ୍ୟ ନୃପତେଃ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ ।୫୬।
ଜଗଦୀଶପ୍ରସାଦାଚ୍ଚ ପିତାମହନିଦେଶତଃ ।
ଏକୋନଂ କ୍ରମଶଃ ସଂଖ୍ୟାମବାପ ପୃଥିବୀପତେ ।
ସହସ୍ରଂ ହୟମେଧସ୍ୟ ଯଥାବଦ୍ ବିଧିଚୋଦିତମ୍ ।୫୭।

---

ହେ ଦ୍ୱିଜଗଣ ! ଏହି ମହାଯଜ୍ଞରେ ଯଜ୍ଞାନୁଷ୍ଠାନ କୁଶଳ, ସଦାଚାରପରିପୂର୍ଣ୍ଣ, ସ୍ମୃତିକାର, କଳ୍ପକାର ପ୍ରଭୃତି ଶାସ୍ତ୍ରପ୍ରଣେତା-ଗଣ ନରପତିଙ୍କ ସନ୍ତୋଷ ନିମନ୍ତେ ସଦସ୍ୟଂକ ଅନୁମତି କ୍ରମେ ଅଗ୍ନି ଆଧାନଠାରୁ ଅବଭୃଥସ୍ନାନ ପର୍ଯ୍ୟନ୍ତ ସମସ୍ତ କର୍ମ କ୍ରମାନୁ-ସୂରେ ସମ୍ପନ୍ନ କଲେ ।୫୪। ଯଜ୍ଞୀୟ ମନ୍ତ୍ର ସମୂହ, ଉଦାତ୍ତ-ହିସ୍ୱର ଓ ବର୍ଣ୍ଣରେ କୌଣସି ଅଂଶରେ ହୀନାଙ୍ଗ ହୋଇ ନ ଥିଲା । କାରଣ ଯେଉଁମାନେ ସ୍ୱୟଂ ହିଁ ମନ୍ତ୍ରର ବିଧାନକର୍ତ୍ତା, ସେହିମାନେ ଏହି ଯଜ୍ଞରେ କର୍ମ ପ୍ରବର୍ତ୍ତକ ହୋଇ ଅଛନ୍ତି ।୫୫। ବର୍ତ୍ତମାନ ପୁରୁଷୋତ୍ତମ କ୍ଷେତ୍ରରେ ଇନ୍ଦ୍ରଦ୍ୟୁମ୍ନ ନରପତିଂକ ଯଜ୍ଞ ପ୍ରବର୍ତ୍ତିତ ହୋଇ ତ୍ରୈଲୋକ୍ୟର ପ୍ରୀତି ଉତ୍ପାଦନ କରିବାକୁ ଲାଗିଲା ।୫୬। ଏହାପରେ ଶ୍ରୀଜଗଦୀଶ୍ୱରଂକ ପ୍ରସନ୍ନତା ହେତୁ ବ୍ରହ୍ମାଂକ ନିର୍ଦ୍ଦେଶାନୁରୂପ ନରପତିଂକ ହୟମେଧ ଯଜ୍ଞରେ କ୍ରମଶଃ ଏକୋନସହସ୍ର ସଂଖ୍ୟା ଯଥାବିଧି ବିଧାନରେ ସଂପୂର୍ଣ୍ଣ ହେଲା ।୫୭।

ତତଃ ସାହସ୍ରିକେ ଯଜ୍ଞେ ବାଜିମେଧେ ସ ଦୀକ୍ଷିତଃ ।
ଦିନେ ଦିନେ ଦିବ୍ୟଗନ୍ଧଙ୍ଗଭୂବ ନୃପତିସ୍ତଦା । ୫୮ ।
ସ୍ନାତ୍ୟା ସପ୍ତଦିନାତ୍ ପୂର୍ବଂ ଯା ରାତ୍ରିରଭବଦ୍ଧି ତାଃ ।
ତସ୍ୟା ସୁଖାସ୍ତସଦ୍ବରେ ଧ୍ୟାୟତେ ବିଷ୍ଣୁମବ୍ୟୟମ୍ ।
ଧ୍ୟାନେ ତସ୍ମିନ ଦଦର୍ଶାସୌ ମହାଭାଗ୍ୟବଶାନ୍ନୃପଃ । ୫୯ ।
ପ୍ରତ୍ୟକ୍ଷମେବ ସ ଶ୍ୱେତଦ୍ୱୀପଂ ସ୍ଫଟିକନିର୍ମିତମ୍ ।
ସମନ୍ତାତ୍ ପରିବାର୍ଯ୍ୟୈନଂ ଉଷ୍ଣନ୍ତଂ କ୍ଷୀରସାଗରମ୍ । ୬୦ ।
ମହାକଲ୍ପଦ୍ରୁମୈଃ ପୁଷ୍ପଗନ୍ଧାମୋଦିଦିଗନ୍ତରୈଃ ।
ଫଳପଲ୍ଲବ ବଲ୍କଳେଷୁ ବହିରନ୍ତଶ୍ଚ ସର୍ବତଃ ।
ଶଙ୍ଖଚକ୍ରାନ୍ୱିତୈଃ ଶୁଭ୍ରୈଃ ସର୍ବାଲଙ୍କାରଭୂଷିତୈଃ ।
ମହାମାଞ୍ଜିଷ୍ଠବର୍ଣ୍ଣୈଶ୍ଚ ମୂର୍ତ୍ତିଭେଦୈର୍ମୁରଦ୍ୱିଷଃ । ୬୧ ।

---

ତଦନନ୍ତର ରାଜା ଯେତେବେଳେ ସାହସ୍ରିକ ଅଶ୍ୱମେଧ ଯଜ୍ଞରେ ଦୀକ୍ଷିତ ହେଲେ, ସେତେବେଳେ ପ୍ରତିଦିନ କ୍ରମଶଃ ଦିବ୍ୟଗନ୍ଧ ଲାଭ କରିବାକୁ ଲାଗିଲେ ।୫୮। ଯେଉଁଦିନ ଯଜ୍ଞ ସମାପ୍ତି ପରେ ଅବଭୃଥ ସ୍ନାନ କରାହେବ, ତାର ସପ୍ତଦିନ ପୂର୍ବ ରାତ୍ରିର ଶେଷ ପ୍ରହରରେ ନରପତି ଧ୍ୟାନଯୋଗରେ ସୌଭାଗ୍ୟବଶତଃ ଅବ୍ୟୟ ବିଷ୍ଣୁ ମୂର୍ତ୍ତିଙ୍କୁ ପ୍ରତ୍ୟକ୍ଷ କଲେ ଏବଂ ପୁନର୍ବାର ଦେଖିଲେ ଯେ ସ୍ଫଟିକ ନିର୍ମିତ ଶ୍ୱେତଦ୍ୱୀପ ଓ ଏହାର ଚତୁର୍ଦ୍ଦିଗ ବ୍ୟାପୀ କ୍ଷୀର ସମୁଦ୍ର ଅବସ୍ଥିତ ଅଛି । ୬୦ । ତହିଁରେ ବୃହତ୍ କଳ୍ପଦ୍ରୁମ ସକଳ ପୁଷ୍ପଗନ୍ଧ ଦ୍ୱାରା ଦିଗ ଦିଗନ୍ତକୁ ଆମୋଦିତ କରୁଅଛି ଏବଂ ଏହାର ଫଳ, ପଲ୍ଲବ ଓ ବଲ୍କଳ ସମୂହ ଅନ୍ତଃ ତଥା ବହିର୍ଭାଗୀୟ ସର୍ବାବୟବ ଶଙ୍ଖ ଚକ୍ର ଚିହ୍ନ ବିଶିଷ୍ଟ ହୋଇ ଯେପରି ସର୍ବାଳଙ୍କାରରେ ବିଭୂଷିତ ଓ ମହାମଞ୍ଜିଷ୍ଠ, ବର୍ଣ୍ଣ ଦ୍ୱାରା ସେହି ମୁରାରିପୁଙ୍କର କଳ୍ପତରୁ ମୂର୍ତ୍ତିଗୁଡ଼ିକ ସାତିଶୟ ଉତ୍ତମ ଶୋଭା ଧାରଣ କରିଅଛନ୍ତି । ୬୧ ।

ତନ୍ମଧ୍ୟେ ଘଟିତଂ ଦିବ୍ୟମଣିଭିର୍ମଣ୍ଡପୋତ୍ତମମ୍
ମଧ୍ୟସ୍ଥଂ ସୂର୍ଯ୍ୟବଦ୍ଭାସି ରତ୍ନସିଂହାସନୋଜ୍ଜ୍ୱଳମ୍ ।
କ୍ଷୀରାବ୍ଧିଶୀତକଲ୍ଲୋଲମନ୍ଦବାତମନୋହରମ୍ । ୭୨ ।
ତନ୍ମଧ୍ୟେ ଦଦୃଶେ ଦେବଂ ଶଙ୍ଖଚକ୍ରଗଦାଧରମ୍ ।
ଦକ୍ଷପାର୍ଶ୍ୱସ୍ଥିତଂ ତସ୍ୟ ଅନନ୍ତଂ ଧରଣୀଧରମ୍ ।
ସବ୍ୟେ ପାର୍ଶ୍ୱେ ସ୍ଥିତାଂ ବକ୍ଷୋର୍ଲକ୍ଷ୍ମୀଂ ତାଂ ଶୁଭଲକ୍ଷଣାମ୍ ।
ପିତାମହଞ୍ଚ ଦଦୃଶେ ପୁରତୋଽସ୍ୟ କୃତାଞ୍ଜଳିମ୍ । ୭୩ ।
ବାମପାର୍ଶ୍ୱସ୍ଥିତଂ ଚକ୍ରଂ ସର୍ବଜ୍ଞାନମୟଂ ବିଭୋଃ ।
ସନକାଦିମୁନୀନ୍ଦ୍ରୈସ୍ତୁ ସ୍ତୂୟମାନଂ ଜଗଦ୍ଗୁରୁମ୍ । ୭୪ ।
ଦୃଷ୍ଟ୍ୱା ସ୍ୱପ୍ନେ ନୃପବରଃ ସମ୍ପ୍ରହୃଷ୍ଟୋ ଦ୍ୱିଜୋତ୍ତମାଃ ।
ଅଦୃଷ୍ଟପୂର୍ବରୂପଂ ତଂ ଜ୍ୟୋତିର୍ମୟମନନ୍ତକମ୍ ।
ତୁଷ୍ଟାବ ତତ୍ର ଧ୍ୟାନସ୍ଥୋ ହର୍ଷଗଦ୍ଗଦୟା ଗିରା । ୭୫ ।

---

ଏହି ଦ୍ୱୀପର ମଧ୍ୟଭାଗରେ ଦିବ୍ୟ ମଣି ବିନିର୍ମିତ ଉତ୍କୃଷ୍ଟ ମଣ୍ଡପ, ଏହାର ମଧ୍ୟସ୍ଥିତ ସୂର୍ଯ୍ୟକିରଣ ସଦୃଶ ଆଭାଯୁକ୍ତ ରତ୍ନସିଂହାସନ ସମୁଜ୍ଜ୍ୱଳ । ସନ୍ନିହିତ କ୍ଷୀର ସାଗରର ଜଳକଲ୍ଲୋଳ ଓ ମୃଦୁବାୟୁ ସଂସର୍ଗରେ ଏହା ଅତ୍ୟନ୍ତ ମନୋରମ ହୋଇଅଛି । ୭୨ । ତାର ମଧ୍ୟ ଭାଗରେ ସିଂହାସନୋପରି ଶଙ୍ଖଚକ୍ର ଗଦାଧର ଦେବଙ୍କୁ ରାଜା ଦର୍ଶନ କଲେ । ଧରଣୀଧର ଶ୍ରୀ ଅନନ୍ତଦେବ ତାଙ୍କ ଦକ୍ଷିଣ ପାର୍ଶ୍ୱରେ, ଶୁଭଲକ୍ଷଣା ଲକ୍ଷ୍ମୀ ବାମ ଭାଗରେ ଏବଂ ପିତାମହ ବ୍ରହ୍ମା କୃତାଞ୍ଜଳି ହୋଇ ତଦୀୟ ଅଗ୍ରଭାଗରେ ଅବସ୍ଥାନ କରି ଅଛନ୍ତି । ୭୩ । ବିଷ୍ଣୁଙ୍କ ବାମ ପାର୍ଶ୍ୱରେ ସର୍ବଜ୍ଞାନସମ୍ପନ୍ନ ଚକ୍ରରାଜ ରହିଅଛନ୍ତି । ସନକ ସନନ୍ଦାଦି ମୁନୀନ୍ଦ୍ରଗଣ ସେହି ଜଗଦ୍ଗୁରୁ ଜଗଦୀଶ୍ୱରଙ୍କ ସ୍ତବ କରୁଅଛନ୍ତି । ୭୪ । ହେ ଦ୍ୱିଜୋ-ତ୍ତମଗଣ ! ନୃପବର ସ୍ୱପ୍ନାବସ୍ଥାରେ ଏହି ରୂପ ସନ୍ଦର୍ଶନ କରି ସାତିଶୟ ଆନନ୍ଦିତ ହେଲେ ଏବଂ ସେହି ଅନନ୍ତ ଜ୍ୟୋତିର୍ମୟ ଅଦୃଷ୍ଟପୂର୍ବ ବୈକୁଣ୍ଠନାଥଙ୍କୁ ହର୍ଷଗଦ୍ଗଦ ବାକ୍ୟରେ ଧ୍ୟାନସ୍ଥ ହୋଇ ସ୍ତବ କରିବାକୁ ଲାଗିଲେ । ୭୫ ।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ନମସ୍ତେ ଜଗଦାଧାର ଜଗଦାତ୍ମନ୍ନମୋଽସ୍ତୁ ତେ ।
କୈବଲ୍ୟଦ ଗୁଣାତୀତଗୁଣାତ୍ମନ ନମୋଽସ୍ତୁ ତେ । ୬୬ ।
ଶୁଦ୍ଧନିର୍ମଳଜ୍ଞାନସ୍ୱରୂପାୟ ନମୋଽସ୍ତୁ ତେ ।
ଶବ୍ଦବ୍ରହ୍ମାଭିଧାନାୟ ଜଗଦ୍ରୂପାୟ ତେ ନମଃ । ୬୭ ।
ସଂସାରପଥତପ୍ତାନାଂ ଦୁଃଖଧ୍ୱଂସ ନମୋଽସ୍ତୁ ତେ ।
ଦୁର୍ଭେଦ୍ୟହୃଦୟଗ୍ରନ୍ଥିଭେଦକାୟ ନମୋଽସ୍ତୁ ତେ । ୬୮ ।
ଦ୍ୱିସପ୍ତଭୁବନାଗାରମୂଳସ୍ତମ୍ଭାୟ ତେ ନମଃ ।
ବ୍ରହ୍ମାଣ୍ଡକୋଟି-ଘଟନାଟିଳିନେ ଚକ୍ରିଣେ ନମଃ । ୬୯ ।
କରୁଣାମୃତପାଥୋଧିସୁଧାଧାମ୍ନେ ନମୋ ନମଃ ।
ଦୀନୋଦ୍ଧାରୈକଗୁହ୍ୟାୟ କୃପାପାଥୋଧୟେ ନମଃ । ୭୦ ।

---

ଇନ୍ଦ୍ରଦ୍ୟୁମ୍ନ କହିଲେ--ହେ ଜଗଦାଧାର ! ହେ ଜଗଦ୍ରୂପିନ୍ ! ଆପଣଙ୍କୁ ନମସ୍କାର । ହେ ଦେବ ! ଆପଣ ଗୁଣମୟ ହୋଇ ମଧ୍ଯ ଗୁଣାତୀତ; ଆପଣ କୈବଲ୍ୟରୂପୀ, ଆପଣଙ୍କୁ ନମସ୍କାର କରୁଅଛୁ ।୬୬। ଆପଣ ପରିଶୁଦ୍ଧ ନିର୍ମଳ ଜ୍ଞାନସ୍ୱରୂପ, ଅତଏବ ଆପଣଙ୍କୁ ନମସ୍କାର । ଆପଣ ଶବ୍ଦବ୍ରହ୍ମ (ବେଦ) ରୂପୀ, ଆପଣ ଜଗଦ୍ରୂପୀ, ଆପଣଙ୍କୁ ନମସ୍କାର । ୬୭ । ଆପଣ ସଂସାରର ପଥିତ ଶ୍ରାନ୍ତ ବ୍ୟକ୍ତିମାନଙ୍କ ଦୁଃଖ ଦୂର କରନ୍ତି—ଏଣୁ ଆପଣଙ୍କୁ ନମସ୍କାର । ଆପଣ ଦୁର୍ଭେଦ୍ୟ ହୃଦୟଗ୍ରନ୍ଥି ଭେଦ କରନ୍ତି—ଏଣୁ ଆପଣଙ୍କୁ ନମସ୍କାର । ୬୮ । ଆପଣ ଚତୁର୍ଦ୍ଦଶ ଭୁବନ ରୂପ ଗୃହର ମୂଳ ସ୍ତମ୍ଭ ଅଟନ୍ତି—ଏଣୁ ଆପଣଙ୍କୁ ନମସ୍କାର । ହେ ଚକ୍ରିନ୍ ! ଆପଣ କୋଟି କୋଟି ବ୍ରହ୍ମାଣ୍ଡ ନିର୍ମାଣ କରିଅଛନ୍ତି—ଅତଏବ ଆପଣଙ୍କୁ ନମସ୍କାର । ଆପଣ ଦୟାରୂପ ସୁଧାସାଗରର ବିଶୁଦ୍ଧ ଭଣ୍ଡାର ଏବଂ ଦୀନଜନମାନଙ୍କର ଉଦ୍ଧାର କର୍ତ୍ତା, ଅତ୍ୟନ୍ତ ଗୁହ୍ୟବସ୍ତୁ ଦୟା-ସାଗର—ଏଣୁ ଆପଣଙ୍କୁ ବାରମ୍ବାର ନମସ୍କାର କରୁଛୁ । ୭୦ ।

ପ୍ରକାଶକାନାଂ ସୂର୍ଯ୍ୟାଦିଜ୍ୟୋତିଷାଂ ଜ୍ୟୋତିଷେ ନମଃ ।
ପ୍ରତିସ୍ଵସ୍ଵଜନସ୍ୱାନ୍ତ ଅନ୍ତ୍ରପାପାଘ୍ନୟେ ନମଃ । ୭୧ ।
ପାବକାୟ ପବିତ୍ରାୟ ପବିତ୍ରାଣାଂ ନମୋ ନମଃ । ୭୨ ।
ଗରିଷ୍ଠାୟ ବରିଷ୍ଠାୟ ଦ୍ରାଘିଷ୍ଠାୟ ନମୋ ନମଃ ।
ନେଦିଷ୍ଠାୟ ଦବିଷ୍ଠାୟ କ୍ଷୋଦିଷ୍ଠାୟ ନମୋ ନମଃ ।
ବରେଣ୍ୟାୟ ସୁପୁଣ୍ୟାୟ ନାରାୟଣ ନମୋଽସ୍ତୁ ତେ । ୭୩ ।

ପରିତ୍ରାହି ଜଗନ୍ନାଥ ଦୀନବନ୍ଧୋ ନମୋଽସ୍ତୁ ତେ ।
ନସ୍ତୀର୍ଣ୍ଣୋଽହଂ ଭବାମ୍ଭୋଧିଂ ପ୍ରାପ୍ୟ ତ୍ୱାଂ ତରଣିଂ ସୁଖାମ୍ । ୭୪ ।

ତ୍ୱୟି ଦୃଷ୍ଟେ ରମାନାଥ କ୍ଳେଶା ବ୍ୟପଗତା ମମ ।
ଚିଦାନନ୍ଦସ୍ୱରୂପଂ ତ୍ୱାଂ ପ୍ରାପ୍ତାନାଂ ଦୁଃଖନକ୍ଷୟଃ । ୭୫ ।

---

ଆପଣ ଆଲୋକଦାତା ସୂର୍ଯ୍ୟ ପ୍ରଭୃତି ଜ୍ୟୋତିର୍ମୟ ବସ୍ତୁର ଜ୍ୟୋତି ସ୍ୱରୂପ, ଲୋକମାନଙ୍କ ହୃଦୟସ୍ଥ ପାପ ଦହନ ପାଇଁ ଅନଳ ସ୍ୱରୂପ । ଆପଣ ପବିତ୍ର ବସ୍ତୁର ପବିତ୍ରକାରୀ, ଅତି ପବିତ୍ର । ଏଣୁ ଆପଣଙ୍କୁ ବାରମ୍ବାର ପ୍ରଣାମ କରୁଛୁ ।୭୨। ଆପଣ ବରିଷ୍ଠ, ଦୀର୍ଘତମ, ଆପଣ ଅତିନିକଟସ୍ଥ ହୋଇ ମଧ୍ୟ ଦୂରସ୍ଥିତ ଏବଂ ଗୁରୁତମ ହୋଇ କ୍ଷୁଦ୍ରତମ । ଏଣୁ ଆପଣଙ୍କୁ ନମସ୍କାର । ହେ ନାରାୟଣ ! ଆପଣ ସମସ୍ତଙ୍କ ବରେଣ୍ୟ ପୁଣ୍ୟତମ । ୭୩ । ହେ ଜଗନ୍ନାଥ ! ମୋତେ ପରିତ୍ରାଣ କରନ୍ତୁ । ହେ ଦୀନବନ୍ଧୋ ! ଆପଣଙ୍କୁ ବାରମ୍ବାର ପ୍ରଣାମ କରୁଅଛୁ । ଆପଣ ସଂସାର ସାଗର ପାର ନିମନ୍ତେ ସୁଖକର ତରଣୀ ସ୍ୱରୂପ । ଆପଣଙ୍କୁ ପ୍ରାପ୍ତ ହୋଇ ମୁଁ ଅନାୟାସରେ ସଂସାର ସାଗର ଉତ୍ତୀର୍ଣ୍ଣ ହେଲି । ହେ ରମାନାଥ ! ଆପଣଙ୍କ ସାକ୍ଷାତକାର ପ୍ରାପ୍ତ ହେବା ଫଳରେ ଯାବତୀୟ କ୍ଳେଶ ଦୂର ହେଲା । ଆପଣ ଚିଦାନନ୍ଦରୂପୀ । ଆପଣଙ୍କୁ ପ୍ରାପ୍ତ ହେଲେ ଆଉ କି ଦୁଃଖ ଥାଏ ? ୭୫ ।

ଧ୍ରୁବଂ ନାଥ ସମୁତ୍ପନ୍ନଃ ପରମାନନ୍ଦହେତୁକମ୍ ।
ଜାହି ଜାହି ଭବାମ୍ଭୋଧିମଗ୍ନଂ ମାଂ ଦୀନଚେତସମ୍ ।
ମଧ୍ୟାହ୍ନକୋଦ୍ଧତେ ହ୍ୟେ ସ୍ମିନ୍ କୁତଃ ସନ୍ତମସୋଦୟଃ ।୭୬।
ଧ୍ୟାନସ୍ଥିତଃ ସ୍ତୁବନ୍ନେବଂ ପ୍ରଣମ୍ୟ ଜଗଦୀଶ୍ୱରମ୍ ।
ଧ୍ୟାନାବସାନେ ଚ ପୁନଃ ସ୍ୱସ୍ଥଂ ଜାଗ୍ରଦବୁଧ୍ୟତ ।
ସ୍ୱପ୍ନାନ୍ତେ ଇନ୍ଦ୍ରଦ୍ୟୁମ୍ନୋଽପି ସସ୍ମାର ସ୍ୱାନମାତ୍ମନା ।୭୭।
ଅତ୍ୟଦ୍ଭୁତମିବ ସ୍ୱପ୍ନଂ ଦୃଷ୍ଟ୍ୱା ଚ ନୃପକୁଞ୍ଜରଃ ।
ମେନେ କୃତାର୍ଥମାତ୍ମାନଂ ହୟମେଧକ୍ରତୋସ୍ତଥା ।୭୮।
ସହସ୍ରଂ ସଫଲଞ୍ଚୈବ ସୁଭଗ୍ୟଂ ସମୁପସ୍ଥିତମ୍ ।୭୯।
ନ ହି ଦେବର୍ଷିବଚନଂ ବୃଥା ଭବତି କର୍ହିଚିତ୍ ।
ପ୍ରତ୍ୟକ୍ଷୋ ମେ କଥଂ ନାଥଃ ସ୍ୱୟମତ୍ର ଭବିଷ୍ୟତି ।
ଇତି ଚିନ୍ତାକୁଲୋ ରାଜନ୍ନିଃଶେଷଂ ମତ୍ୱା ବିଶାମ୍ପତିଃ ।
ଶଶଂସ ନାରଦସ୍ୟାଗ୍ରେ ଯଥା ସ୍ୱପ୍ନୋଽନ୍ୱଭୂୟତ ।୮୦।

---

ହେ ନାଥ ! ଆପଣଙ୍କ ଦର୍ଶନ ହିଁ ପରମାନନ୍ଦର ହେତୁ । ହେ ଦେବ ! ମୁଁ ସଂସାର ସାଗରରେ ମଗ୍ନ, ଅତ୍ୟନ୍ତ ଦୀନ, ଅତଏବ ମୋତେ ପରିତ୍ରାଣ କରନ୍ତୁ । ମଧ୍ୟାହ୍ନ ରବି ଉଦୟ ହେଲେ ଆକାଶରେ କି ଅନ୍ଧକାର ରହିପାରେ ? ଏହି ଭାବରେ ସେ ଧ୍ୟାନ ଯୋଗଦ୍ୱାରା ସ୍ତବ ଓ ପ୍ରଣାମ ପୂର୍ବକ ଧ୍ୟାନାନ୍ତେ ସ୍ୱପ୍ନାବସ୍ଥାରୁ ଜାଗ୍ରତ ଅବସ୍ଥା ଲାଭ କରି ଚୈତନ୍ୟ ପ୍ରାପ୍ତ ହେଲେ । ସ୍ୱପ୍ନ ଶେଷରେ ରାଜା ଇନ୍ଦ୍ରଦ୍ୟୁମ୍ନ ଆତ୍ମାଦ୍ୱାରା ପରମାତ୍ମାଙ୍କୁ ସ୍ମରଣ କଲେ ।୭୭। ନୃପ କୁଞ୍ଜର ଏହି ଅତ୍ୟାଶ୍ଚର୍ଯ୍ୟ ସ୍ୱପ୍ନ ଦର୍ଶନ କରିବା ପରେ ନିଜକୁ କୃତାର୍ଥ ଜ୍ଞାନ କଲେ ଏବଂ ସହସ୍ର ଅଶ୍ୱମେଧ ଯଜ୍ଞ ମଧ୍ୟ ସଫଳ ହେଲା ।୭୮। ନରପତିଙ୍କ ସୌଭାଗ୍ୟ ଆସି ଉପସ୍ଥିତ ହେଲା । ସ୍ୱର୍ଗୀୟ ଋଷିମାନଙ୍କ ବଚନ କଦାପି ବୃଥା ହୁଏନାହିଁ । ବର୍ତ୍ତମାନ ନରପତିଙ୍କ ଏହା ହିଁ ଚିନ୍ତା କରିବାକୁ ଲାଗିଲେ ଯେ ସ୍ୱୟଂ ଦେବ-ନାଥ କେତେବେଳେ କି ପ୍ରକାର ଏହି ସ୍ଥଳକୁ ଆସି ମୋର ପ୍ରତ୍ୟକ୍ଷ ହେବେ ? ଏହି ପ୍ରକାର ଚିନ୍ତାରେ ରାତ୍ରି ଶେଷ କରି ଅଦ୍ୟପ୍ରାନ୍ତ ସ୍ୱପ୍ନ ବୃତ୍ତାନ୍ତ ନାରଦଙ୍କ ନିକଟରେ ଯଥାବିଧି କୀର୍ତ୍ତନ କଲେ ।୮୦।

ସ ଗୃପି ନାରଦଃ ପ୍ରାହ ଶୋକସ୍ତେ ବିଗତୋ ନୃପ ।
ଅରୁଣୋଦୟକାଲେ ହି ଭଗବନ୍ତଂ ଦଦର୍ଶ ଯତ୍ ।
ଦଶାହାନ୍ତ ଫଳଦଃ ସ୍ୱପ୍ନସ୍ତସ୍ମିନ୍ କାଳେ ନୃପୋତ୍ତମ ।
ହୟମେଧେ ଭଗବାନସ୍ତ ପ୍ରତ୍ୟକ୍ଷସ୍ତେ ଭବିଷ୍ୟତି ।୮୧।
ଯଦାହ ମଦ୍‌ଗିରା ତ୍ୱାଂ ହି ଚରାଚରଗୁରୁର୍ବିଧିଃ ।
ସୋଽଦ୍ୟୈବ ଜଗତଃ ସ୍ରଷ୍ଟା ସ୍ୱପ୍ନେଽସ୍ମିନ୍ନବଲୋକିତଃ ।
ତଦନୁଷ୍ଠିତଂ ଯଜ୍ଞଂ ପରାଗ୍ରେ ନ ପ୍ରକାଶୟ ।୮୨।
ସ୍ୱପ୍ନୋଽୟଂ ନୃପଶାର୍ଦ୍ଦୂଲ ଦୁର୍ବୋଧଂ ଚରିତଂ ହରେଃ ।
କିନ୍ତୁ ଭାଗ୍ୟବଶାଦେବ ସ୍ୱପ୍ନସ୍ତାଦୃକ୍ ପ୍ରଜାୟତେ ।୮୩।
ଇତି ଶ୍ରୀସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନସ୍ୟ ସହସ୍ରାଶ୍ୱମେଧାନୁଷ୍ଠାନେନ
ଭଗବଦ୍ଦର୍ଶନଂ ନାମ ସପ୍ତଦଶୋଽଧ୍ୟାୟଃ ।୧୭।

---

ଏ ସମସ୍ତ ଶ୍ରବଣ କରି ନାରଦ କହିଲେ, ହେ ନୃପ ! ବର୍ତ୍ତମାନ ତୁମ୍ଭର ସେହି ଶୋକ ବିଦୂରିତ ହେଲା । ଯେତେବେଳେ ଅରୁଣୋଦୟ କାଳରେ ଭଗବାନଙ୍କୁ ଦର୍ଶନ ଲାଭ କରିଅଛ, ସେତେବେଳେ ସେହି ସମୟର ସ୍ୱପ୍ନ ଦଶଦିନ ମଧ୍ୟରେ ହିଁ ଫଳଦାନ କରିବ । ଏହି ସାହସ୍ରିକ ଅଶ୍ୱମେଧ ଯଜ୍ଞର ଅନ୍ତିମ ଅବସ୍ଥାରେ ଭଗବାନ ଏହି ସ୍ଥାନରେ ତୁମ୍ଭର ପ୍ରତ୍ୟକ୍ଷ ହେବେ । ଏଥି ପୂର୍ବରୁ ଚରାଚର ଗୁରୁ ବ୍ରହ୍ମା ମୋ ବାକ୍ୟଦ୍ୱାରା ତୁମ୍ଭଙ୍କୁ ଯାହା ଜଣାଇଥିଲେ; ବର୍ତ୍ତମାନ ସେହି ଜଗଦୀଶ୍ୱର ଏହି ସ୍ୱପ୍ନରେ ଅବଲୋକିତ ହୋଇ ତୁମ୍ଭ ନିକଟରେ ତାହା ହିଁ ବ୍ୟକ୍ତ କଲେ । ଅତଏବ ଯଜ୍ଞାନୁଷ୍ଠାନ ଦ୍ୱାରା ସେହି ବାକ୍ୟର ସାର୍ଥକତା ପ୍ରକାଶ କରନ୍ତୁ ।୮୨। ହେ ନୃପଶାର୍ଦ୍ଦୂଳ ! ଏହି ସ୍ୱପ୍ନ ବୃତ୍ତାନ୍ତରେ ଯାହା ଅବଗତ ହେଲ, ତାହା ହରିଦେବଙ୍କ ଅତି ଦୁର୍ବୋଧ ଚରିତ, କିନ୍ତୁ ତୁମ୍ଭେ ଭାଗ୍ୟଧର ବୋଲି ତୁମ୍ଭର ଏପରି ସୁସ୍ୱପ୍ନ ଲାଭ ହୋଇଅଛି ।୮୩।

॥ ସପ୍ତଦଶ ଅଧ୍ୟାୟ ସମାପ୍ତ ॥

## ଅଷ୍ଟାଦଶୋଽଧ୍ୟାୟଃ

ଶ୍ରୀ ଜୈମିନିରୁବାଚ

ତତଃ ପ୍ରବବୃତେ ସୃତ୍ୟା ନୃପତେର୍ବାଜିମେଧିକୀ ।
ତସ୍ୟାଂ ତ୍ରୈଲୋକ୍ୟମଭବଦେକସଦ୍ମନିଭଂ ଦ୍ୱିଜାଃ ।୧।
ଶାସ୍ତ୍ରୈଃ ସ୍ତୋତ୍ରୈର୍ବିଷ୍ଣୁଗର୍ଭୈର୍ବର୍ଣ୍ଣକ୍ରମସମୁଜ୍ଜ୍ୱଲୈଃ ।
ଯଥା ସ୍ୱରପଦନ୍ୟାସୈରନ୍ୟଶବ୍ଦାସ୍ତିରୋହିତାଃ ।୨।
ଦାନାନ୍ୟବିରତଂ ତତ୍ର ଦୀୟନ୍ତେ କାମିତାନି ବୈ ।
ନଟନର୍ତ୍ତକସୂତାନାଂ ସାଽଭୂତ୍ କଳ୍ପଦ୍ରୁମୋପମା ।୩।
ତନ୍ନୁଦେଽବଭୃଥଂ ସ୍ନାତୁଂ କୃତା ଯତ୍ନୋପକାରକା ।
ଦକ୍ଷିଣେ ତଟଭୂଦେଶେ ବିଲେଶ୍ୱରସମୀପତଃ ।୪।
ନିଯୁକ୍ତାଃ ସେବକା ରାଜ୍ଞଃ ସସମ୍ଭ୍ରମମୁପସ୍ଥିତା ।
ନ୍ୟବେଦୟନ୍ତ ନୃପତିଂ କୃତାଞ୍ଜଳିପୁଟା ଦ୍ୱିଜାଃ ।୫।

---

## ଅଷ୍ଟାଦଶ ଅଧ୍ୟାୟ

ତଦନନ୍ତର ନରପତିଙ୍କ ଅଶ୍ୱମେଧ ଯଜ୍ଞ ଶେଷରେ ଅବଭୃଥ ସ୍ନାନ ନିମନ୍ତେ ଉଦ୍‌ଯୋଗ ଆରମ୍ଭ ହେଲା । ହେ ଦ୍ୱିଜଗଣ ! ସେହି ଯଜ୍ଞରେ ସମସ୍ତ ତ୍ରୈଲୋକ୍ୟବାସୀ ସମସ୍ତ ଲୋକଙ୍କର ଏକତ୍ର ସମାବେଶ ହୁଅନ୍ତେ, ତ୍ରିଭୁବନ ସେହି ସ୍ଥାନରେ ଏକ ଗୃହ ପରି ପ୍ରତୀୟମାନ ହେଲା । ୧ । ଋତ୍ୱିକ୍ ପ୍ରଭୃତି ବ୍ରାହ୍ମଣମାନଙ୍କ ଦ୍ୱାରା ନଭସ୍ପର୍ଶୀ ଉଦାତ୍ତାଦି ସ୍ୱରରେ ଉଚ୍ଚାରିତ ବର୍ଣ୍ଣକ୍ରମୋଜ୍ଜ୍ୱଳ ପଦ-କଦମ୍ବ ଓ ବିବିଧ ସ୍ତୋତ୍ର ଧ୍ୱନିରେ ତଥା ବିବିଧ ଶାସ୍ତ୍ରୀୟ ବାକ୍ୟ ଉଚ୍ଚାରଣ ଦ୍ୱାରା ଅନ୍ୟାନ୍ୟ ଶବ୍ଦ ସମୂହ ତିରୋହିତ ହେଲା । ୨ । ସେହି ସଭା ମଧ୍ୟରେ ଅନବରତ ଅର୍ଥାର୍ଥୀମାନଙ୍କ ଅଭିଳଷିତ ଦ୍ରବ୍ୟ ସମୂହ ବିତରିତ ହେଲା । ଯଜ୍ଞ ସଭା ନଟ, ନର୍ତ୍ତକ ଓ ସ୍ତୁତି ପାଠକମାନଙ୍କ କଳ୍ପତରୁ ସ୍ୱରୂପ ହୋଇ ଉଠିଲା । ୩ । ଦକ୍ଷିଣ ସାଗର ତଟରେ ବିଲେଶ୍ୱର ଶିବଙ୍କ ନିକଟରେ ଅବଭୃଥ ସ୍ନାନ ନିମନ୍ତେ ଯେଉଁ ସମସ୍ତ ସେବକ ନିଯୁକ୍ତ ହୋଇଥିଲେ, ସେମାନେ ନରପତିଙ୍କ ନିକଟରେ ଅତି ସମ୍ଭ୍ରମ ସହିତ ଉପସ୍ଥିତ ହୋଇ କୃତାଞ୍ଜଳି ପୁଟରେ ନିବେଦନ କଲେ । ୫ ।

ଦେବ ଦୃଷ୍ଟୋ ମହାବୃକ୍ଷସ୍ତଟଭୂମୌ ମହୋଦଧେଃ ।
ପ୍ରବିଷ୍ଟାଗ୍ରସମୁଦ୍ରାନ୍ତଃ କଲ୍ଲୋଳପ୍ଳବମୂଳକଃ ।୬।
ମାଞ୍ଜିଷ୍ଠବର୍ଣ୍ଣଃ ସର୍ବତ୍ର ଶଙ୍ଖଚକ୍ରାଙ୍କିତଃ ପ୍ଳବନ୍ ।
ସ୍ନାନବେଶ୍ମସମୀପେଽସୌ ଦୃଷ୍ଟୋଽସ୍ମାଭିଃ ପରୋଽଭୁତଃ ।୭।
ନ ଦୃଷ୍ଟପୂର୍ବୋ ବୃକ୍ଷୋଽସ୍ମଦ୍ୟନ୍ତ୍ରସୂର୍ଯ୍ୟୋ ନବୋଽଂଶୁନା ।
ଗନ୍ଧେନ ବାଦୟନ୍ ସର୍ବାଂ ତଟଭୂମିଂ ସୁଗନ୍ଧିନା ।୮।
ଦ୍ରୁମଃ ସାଧାରଣୋ ନାୟଂ ଲକ୍ଷ୍ୟତେ ଦେବଭୂରୁହଃ ।
କଶ୍ଚିଦ୍ଦେବସ୍ତରୁବ୍ୟାଜାଗତୋ ଲକ୍ଷତେ ଧ୍ରୁବମ୍ ।୯।
ନୃଯୁକ୍ତାନାଂ ନଚଃ ଶ୍ରୁତ୍ୱା ରାଜା ନାରଦମବ୍ରବୀତ୍ ।
ତତ୍ କାର୍ନିମିତ୍ତଂ ଯଦ୍ଦୃଷ୍ଟଂ ତରୁଶ୍ରେଷ୍ଠ ବଦନ୍ତ ଯତ୍ ।୧୦।

ହେ ଦେବ ! ମହାସମୁଦ୍ର ତଟଭୂମିରେ ଏକ ମହାବୃକ୍ଷ ଦେଖା ଯାଉଅଛି । ଏହାର ଅଗ୍ରଭାଗ ସମୁଦ୍ର ଭିତରେ ପ୍ରବିଷ୍ଟ ଓ ମୂଳଦେଶ ଜଳୀୟ ତରଙ୍ଗରେ ପ୍ଳାବିତ ହୋଇ ଭାସି ଭାସି ଆମ୍ଭ-ମାନଙ୍କର ସ୍ନାନ ଗୃହ ନିକଟରେ ଉପସ୍ଥିତ ହୋଇଅଛି । ୬ । ଉକ୍ତ ମହାବୃକ୍ଷର ସମସ୍ତ ଅବୟବ ରକ୍ତ ବର୍ଣ୍ଣ, ଶଙ୍ଖ ଚକ୍ର ଚିହ୍ନରେ ଚିହ୍ନିତ । ଆମ୍ଭେମାନେ ଏହାକୁ ଅତି ଅଦ୍ଭୁତ ଦର୍ଶନ ବୋଲି ଜ୍ଞାନ କରୁଛୁ । ୭ । ଏହା ନିଜ ତେଜ ଦ୍ୱାରା ନବୋଦିତ ସୂର୍ଯ୍ୟ ସଦୃଶ ସମସ୍ତ ପ୍ରଦେଶକୁ ଆଲୋକିତ ଏବଂ ସ୍ୱକୀୟ ସୁଗନ୍ଧ ଦ୍ୱାରା ଆମୋଦିତ କରୁଅଛି । ୮ । ଏ ସାଧାରଣ ବୃକ୍ଷ ନୁହେଁ । ଦେବବୃକ୍ଷ ବୋଲି ଲକ୍ଷ୍ୟ ହେଉଅଛି, ଅଥବା ନିଶ୍ଚୟ କୌଣସି ଦେବତା ତରୁ ରୂପ ଧାରଣ କରି ସମାଗତ ହୋଇଛନ୍ତି । ୯ । ନରପତି ନିଯୁକ୍ତ ଭୃତ୍ୟମାନଙ୍କର ଏହିପରି ବାକ୍ୟ ଶ୍ରବଣ କରି ନାରଦଙ୍କୁ ପଚାରିଲେ ଯେ ଏମାନେ ଯାହାକୁ ତରୁଶ୍ରେଷ୍ଠ ବୋଲି ବର୍ଣ୍ଣନା କରୁଅଛନ୍ତି, ତାହା ଦର୍ଶନର କାରଣ କଣ ? ସହାସ୍ୟ ମୁଖରେ ନାରଦ କହିଲେ ହେ ନୃପଶ୍ରେଷ୍ଠ ! ଆପଣ ବର୍ତ୍ତମାନ

ନାରଦଃ ପ୍ରହସନ୍ ବାକ୍ୟମୁବାଚ ନୃପସତ୍ତମମ୍ ।
ପୂର୍ଣ୍ଣାହୁତିଂ ସମାପ୍ନୋତୁ ଯେନ ସ୍ୟାତ୍ ସଫଳଂ କ୍ରତୁଃ । ୧୧ ।
ଉପସ୍ଥିତଂ ତେ ତଦ୍ ଭାଗ୍ୟଂ ସ୍ୱପ୍ନେ ଯଦ୍ଦୃଷ୍ଟବାନ୍ ପୁରା ।
ଶ୍ୱେତଦ୍ୱୀପେ ବିଶ୍ୱମୂର୍ତ୍ତିର୍ଦୃଷ୍ଟୋ ଯୋ ବିଷ୍ଣୁରବ୍ୟୟଃ । ୧୨ ।
ତଦଙ୍ଗସ୍ଖଳିତଂ ରୋମ ତରୁତ୍ୱମୁପପଦ୍ୟତେ ।
ଅଂଶାବତାରସ୍ଥାଣୁର୍ଯଃ ପୃଥିବ୍ୟାଂ ପରମେଷ୍ଠିନଃ । ୧୩ ।
ତଦ୍ରୂପତାଂ ତରୁର୍ଯାତି ଭଗବାନ୍ ଭକ୍ତବତ୍ସଳଃ ।
ଦ୍ରୁମୋ ହ୍ୟପୌରୁଷେୟୋଽସୌ ଭାଜନଂ ତସ୍ୟ ଦର୍ଶନେ ।
ତ୍ୱାମୃତେ ପୁରୁଷବ୍ୟାଘ୍ର ପୃଥିବ୍ୟାଂ ପୃଥିବୀପତେ । ୧୪ ।
ତ୍ୱଦ୍‌ଭାଗ୍ୟବଶତଃ ସର୍ବଲୋକାନାଂ ନୟନାତିଥିଃ । ୧୫ ।
ଭବିଷ୍ୟତି ମହାରାଜ ସର୍ବକଳୁଷନାଶନଃ ।
ସମାପ୍ୟାବଭୃଥସ୍ନାନଂ ତଟାନ୍ତେ ସରିତାଂ ପତେଃ । ୧୬ ।

---

ପୂର୍ଣ୍ଣାହୁତି ସମାଧାନ କରନ୍ତୁ, ଯାହାଫଳରେ ଏହି ଯଜ୍ଞ ସଫଳ ହେବ ।୧୧। ଆପଣଙ୍କ ଏହି ସୌଭାଗ୍ୟ ଉପସ୍ଥିତ ହୋଇଅଛି । ଆପଣ ଏଥିପୂର୍ବରୁ ସ୍ୱପ୍ନ ଅବସ୍ଥାରେ ଯେଉଁ ଶ୍ୱେତଦ୍ୱୀପବାସୀ ଅବ୍ୟୟ ବିଶ୍ୱମୂର୍ତ୍ତି ବିଷ୍ଣୁଙ୍କୁ ଦର୍ଶନ କରିଥିଲେ, ତାହାଙ୍କର ଅଙ୍ଗ ସମୁଦ୍‌ଭୂତ ରୋମ ସ୍ଖଳିତ ହୋଇ ତରୁରୂପୀ ହୋଇଅଛି । ଭକ୍ତ-ବତ୍ସଳ ଭଗବାନ ପୃଥିବୀରେ ବ୍ରହ୍ମାଙ୍କ ଅଂଶାବତାର ସ୍ୱରୂପ ସ୍ଥାଣୁ ରୂପ ନେଇ ଅବତୀର୍ଣ୍ଣ ହୋଇ ଅଛନ୍ତି ।୧୩। ହେ ନୃପ ! ତୁମ୍ଭେ ପୁରୁଷଶ୍ରେଷ୍ଠ, ତୁମ୍ଭ ବିନା ପୃଥିବୀରେ ଅନ୍ୟ କେହି ଏହି ଅପୌରୁଷେୟ ବୃକ୍ଷକୁ ଦର୍ଶନ କରିବା ପାଇଁ ଯୋଗ୍ୟ ନୁହନ୍ତି ।୧୪। ଆପଣଙ୍କର ଭାଗ୍ୟବଶତଃ ସମସ୍ତ ମନୁଷ୍ୟମାନଙ୍କ ନୟନ ପଥର ଅତିଥି ହୋଇ ଏହା ସେମାନଙ୍କର ପାପ ରାଶିକୁ ନାଶ କରିବେ । ଆପଣ ସମୁଦ୍ର ତଟରେ ଅବଭୃଥ ସମାପ୍ତି ଅନ୍ତେ ମହାର୍ଘ ବେଦୀ ନିର୍ମାଣ ପୂର୍ବକ ତାର ଉପର ଭାଗରେ ଏହି ତରୁରୂପୀ ଯଜ୍ଞେଶ୍ୱରଙ୍କୁ ସୁସମୃଦ୍ଧ

ଉତ୍ସବଂ සୁମହତ୍ କୃତ୍ୱା କୃତକୌତୁକମଙ୍ଗଳମ୍ ।
ମହାବେଦ୍ୟାଂ ସ୍ଥାପୟାମ ଯଜ୍ଞେଶଂ ତରୁରୂପିଣମ୍ । ୧୭ ।

ଏବଂ ପରସ୍ପରଂ ତୌ ତଦା ନାରଦଭୂଭୁଜୌ ।
ସୁସମ୍ଭୃତୌ ତତୋ ଯାତୌ ଯତ୍ରାସୌ ଭଗବାନ୍ ଦ୍ରୁମଃ । ୧୮ ।

ତଂ ଦୃଷ୍ଟ୍ୱା ହର୍ଷିତାଃ ସର୍ବେ ବ୍ରହ୍ମସାକ୍ଷାଦୁପସ୍ଥିତମ୍ ।
ମେନିରେ ଜନ୍ମ ସାଫଲ୍ୟଂ ଜୀବନ୍ମୁକ୍ତା ମହୋଦୟାଃ । ୧୯ ।

ଇନ୍ଦ୍ରଦ୍ୟୁମ୍ନୋଽପି ନୃପତିର୍ମମଜ୍ଜାନନ୍ଦସାଗରେ ।
ସ୍ୱପ୍ନେ ଦୃଷ୍ଟ୍ୱା ଜଗନ୍ନାଥଂ ଯଥାସୌ ଭଗବତ୍ପ୍ରିୟଃ । ୨୦ ।

ତଥା ଦଦର୍ଶ ତଂ ବୃକ୍ଷଂ ଚତୁଃଶାଖଂ ଚତୁର୍ଭୁଜମ୍ ।
ସ୍ୱକଂ ଶ୍ରମଂ ମନ୍ୟମାନଃ ସଫଳଂ ନୃପସତ୍ତମଃ । ୨୧ ।

---

ଉତ୍ସବ ସହିତ କୌତୁକ ଓ ମଙ୍ଗଳାଚରଣ କରି ସ୍ଥାପନ କରନ୍ତୁ ।୧୭। ସେତେବେଳେ ନାରଦ ଓ ନରପାଳ ଏହିପରି ପରସ୍ପର ବାକ୍ୟାଳାପ ପୂର୍ବକ ଅତ୍ୟନ୍ତ ହର୍ଷାନ୍ୱିତ ହୋଇ ମହା-ସମାରୋହ ସହିତ ଦ୍ରୁମରୂପୀ ଭଗବାନଙ୍କ ନିକଟକୁ ଗମନ କଲେ ।୧୮। ସେଠାରେ ଉପସ୍ଥିତ ହୋଇ ସାକ୍ଷାତ ଦ୍ରୁମରୂପୀ ବ୍ରହ୍ମଦର୍ଶନଦ୍ୱାରା ଆନନ୍ଦଲାଭ କରି ଜୀବନ୍ମୁକ୍ତ ମହାପୁରୁଷମାନେ ନିଜ ନିଜ ଜନ୍ମ ସାର୍ଥକ ହେଲା ବୋଲି ଅନୁଭବ କଲେ । ୧୯। ଇନ୍ଦ୍ରଦ୍ୟୁମ୍ନ ନରପତି ମଧ୍ୟ ଆନନ୍ଦ ସାଗରରେ ନିମଗ୍ନ ହେଲେ । ସ୍ୱପ୍ନ ଅବସ୍ଥାରେ ଶ୍ରୀ ଜଗନ୍ନାଥଙ୍କ ଯେଉଁ ଚତୁର୍ଭୁଜ ମୂର୍ତ୍ତି ଦର୍ଶନ କରିଥିଲେ, ବର୍ତ୍ତମାନ ସେହି ଚତୁର୍ଭୁଜ ସ୍ୱରୂପ ଚତୁଃଶାଖା ସମ୍ପନ୍ନ ବୃକ୍ଷରାଜଙ୍କୁ ଦର୍ଶନ କରିବାକୁ ଲାଗିଲେ । ନିଜ ପରିଶ୍ରମ ସଫଳ ଜ୍ଞାନ କରି ନୀଳମଣି ମାଧବଙ୍କ ଅଦର୍ଶନ ହେତୁ ଯେଉଁ ଦୁଃଖ

ଜହ୍ନୌ ଶୋକଂ ମାଳମଣିମାଧବାଦର୍ଶନାତ୍ଭବମ୍ ।
ତଦା ପୁନଃ ପ୍ରଣମ୍ୟୈନଂ ହର୍ଷାଶ୍ରୁନୟନୋ ନୃପଃ । ୧୨ ।
ଦ୍ୱିଜୈର୍ବ୍ବାହୟାମାସ ତରୁଂ କଲ୍ଲୋଲଲୋଳିତମ୍ ।
ଶଙ୍ଖକାହାଳମୁରଜ-ଢକ୍କାପଟହନିସ୍ୱନୈଃ । ୧୩ ।
ଗୀତବାଦନନନ୍ଦୈର୍ଜୟଶବ୍ଦୈଃ ସହସ୍ରଶଃ ।
ସୁଗନ୍ଧପୁଷ୍ପାଞ୍ଜଳିଭିରାକାଶାତ୍ ପତଦ୍ଭିର୍ମୁହୁଃ । ୧୪ ।
ପଶତୋ ଧୂପଯାନୈଶ୍ଚ କୃଷ୍ଣାଗୁରୁସୁଧୂପିତୈଃ ।
ବେଶ୍ୟାଭିର୍ଯୌବନୋନ୍ମତ୍ତସୁରୂପାଭିଃ ପ୍ରକଳ୍ପିତୈଃ । ୧୫ ।
ରତ୍ନଦଣ୍ଡପ୍ରକାଣ୍ଡୈଶ୍ଚ ବୀଜ୍ୟମାନଂ ସମନ୍ତତଃ ।
ପତାକାଭିର୍ଦ୍ଦିବ୍ୟପଟ୍ଟଦୁକୂଳାଭିଃ ସୁଶୋଭିତମ୍ । ୧୬ ।
ରାଜଭିର୍ଗଜବୃନ୍ଦୈଶ୍ଚ ତୁରଗୈଃ ପରିଭିବୃର୍ତମ୍ ।
ମାଗଧୈର୍ବନ୍ଦ୍ୟମାନନ୍ତୁ ସ୍ତୂୟମାନଂ ମହର୍ଷିଭିଃ । ୧୭ ।

---

ହୋଇଥିଲା, ତାହାକୁ ଦୂର କଲେ । ସେତେବେଳେ ନୃପବର ପୁନର୍ବାର ହର୍ଷାଶ୍ରୁନୟନରେ ପ୍ରଣାମ ପୂର୍ବକ ଜଳକଲ୍ଲୋଳ ପ୍ଲାବିତ ସେହି ତରୁବରଙ୍କୁ ଦ୍ୱିଜଗଣଦ୍ୱାରା ଆବାହନ କଲେ । ସେହି ସମୟରେ ଶଙ୍ଖ, କାହାଳ, ମୁରଜ, ଢକ୍କା ଓ ପଟହ ବାଦ୍ୟଯନ୍ତ୍ର ସମସ୍ତ ବାଦିତ ହେଲା ।୧୩। ଗାୟକମାନେ ହରି-ସଂକୀର୍ତ୍ତିନାଦ ଗାନ ଆରମ୍ଭ କଲେ ଏବଂ ସହସ୍ର ସହସ୍ର ଜୟ ଶବ୍ଦ ଉଚ୍ଚାରିତ ହେଲା । ନଭୋମଣ୍ଡଳରୁ ମୁହୁର୍ମୁହୁ ସୁଗନ୍ଧ ପୁଷ୍ପାଞ୍ଜଳି ବର୍ଷିତ ହେଲା ।୧୪। ଭଗବଦ୍‌ରୂପୀ ତରୁବରଙ୍କ ଗୃହଦ୍ୱାରରେ କାଳାଗୁରୁ ପ୍ରଭୃତି ଧୂପ ଧୂପିତ ଧୂପ ପାତ୍ର ସମୂହ ପ୍ରଦତ୍ତ ହେଲା । ଯୌବନ ମଦମତ୍ତ ବାରାଙ୍ଗନାବୃନ୍ଦ, ରତ୍ନଦଣ୍ଡମଣ୍ଡିତ ବ୍ୟଜନଦ୍ୱାରା ଚତୁର୍ଦ୍ଦିଗରେ ବ୍ୟଜନ କରିବାକୁ ଲାଗିଲେ ।୧୫। ଦିବ୍ୟ ପଟ୍ଟାମ୍ବର ନିର୍ମିତ ପତାକାରାଜି ବୃକ୍ଷରାଜଙ୍କ ଶୋଭାବର୍ଦ୍ଧନ କଲା । ରାଜା-ମାନଙ୍କର ଗଜ ଅଶ୍ୱ ପଦାତି ସମୂହରେ ଚତୁର୍ଦ୍ଦିଗ ବ୍ୟାପ୍ତ ହୋଇଗଲା । ବନ୍ଦୀଗଣ ବନ୍ଦନା କରିବାକୁ ଲାଗିଲେ ଏବଂ ମହର୍ଷି

ଋତ୍ୱିଗ୍‌ଭିର୍ବ୍ରାହ୍ମଣୈଶ୍ଚୈବ ବନ୍ଦିଭିଃ ଶୋତ୍ରସ୍ତୈସ୍ତଥା ।
ସୁଗନ୍ଧାଲଙ୍କୃତଂ ଦିବ୍ୟଂ ମହାବେଦ୍ୟାନ୍ତୁ ନ୍ୟଧୁଃ । ୨୮ ।
ବିତାନବରଶଙ୍ଖାଢ୍ୟାଂ ବେଷ୍ଟିତାୟାଂ ନରାନ୍ତରମ । ୨୯ ।
ବେଦ୍ୟାଂ ତଂ ସ୍ଥାପୟାମାସୁରିନ୍ଦ୍ରଦ୍ୟୁମ୍ନସ୍ୟ ଶାସନାତ୍ ୩୦ ।
ବଚସା ନାରଦସ୍ୟୈନଂ ପୂଜୟାମାସ ପାର୍ଥିବଃ । ୩୧ ।
ସହସ୍ରୈରୂପଗ୍ରହଣୀଂ ଦିବ୍ୟରୂପେ ନୃପୋତ୍ତମଃ ।
ପୂଜାବସାନେ ପପ୍ରଚ୍ଛ ନାରଦଂ ମୁନିପୁଙ୍ଗବମ୍ । ୩୨ ।
କୀଦୃଶୀଂ ପ୍ରତିମାଂ ବିଷ୍ଣୋର୍ଘଟୟିଷ୍ୟତି କଃ ପୁନଃ ।
ତଚ୍ଛ୍ରୁତ୍ୱା ତଂ ମୁନିଃ ପ୍ରାହ ଅଚିନ୍ତ୍ୟମହିମା ଗୁରୁଃ । ୩୩ ।
କୋ ବେଦ ତସ୍ୟ ଚେଷ୍ଟାଂ ବୈ ସର୍ବଲୋକାତିଗାଂ ନୃପ ।
ସ୍ରଷ୍ଟା ଯୋ ଜଗତାଂ ତସ୍ୟାପ୍ୟେଷା ସର୍ବସ୍ୱଗୋଚରା । ୩୪ ।

---

ଋତ୍ୱିକ୍ ଶ୍ରୋତ୍ରିୟ ଓ ଅନ୍ୟାନ୍ୟ ବିଦ୍ୱାନ୍ ବ୍ରାହ୍ମଣଗଣ ସ୍ତବ କରିବାକୁ ଲାଗିଲେ । ତଦନନ୍ତର ସମସ୍ତେ ଇନ୍ଦ୍ରଦ୍ୟୁମ୍ନଙ୍କ ଅନୁମତି କ୍ରମେ ପ୍ରକଟିତ ବୃକ୍ଷବିଜଙ୍କୁ ସୁଗନ୍ଧାଦି ଦ୍ୱାରା ଅଲଙ୍କୃତ କରି ମହାବେଦୀ ଉପରେ ସ୍ଥାପନ କଲେ । ତାହାପରେ ନରପତି ନାରଦଙ୍କ ବାକ୍ୟାନୁଯାୟୀ ପୂଜନ କଲେ ।୩୧। ପୂଜା ଶେଷରେ ମୁନିବରଙ୍କୁ ରାଜା ପ୍ରଶ୍ନ କଲେ ଯେ 'ବର୍ତ୍ତମାନ ବିଷ୍ଣୁଙ୍କ ପ୍ରତିମା କେଉଁ ପ୍ରକାରେ ନିର୍ମିତ ହେବ ? କେଉଁ ବ୍ୟକ୍ତି ବା ଏହାର ଗଠନ କାର୍ଯ୍ୟ ସମ୍ପନ୍ନ କରିବେ ?' ମୁନି ପୁଙ୍ଗବ ଏହା ଶ୍ରବଣ କରି ରାଜାଙ୍କୁ କହିଲେ ଯେ, 'ସେହି ଚରାଚର ଗୁରୁଙ୍କ ମହିମା ଅଚିନ୍ତ୍ୟ । ଏହାଙ୍କର ଚେଷ୍ଟା ସର୍ବଲୋକାତୀତ । ଅତଏବ କୌଣସି ବ୍ୟକ୍ତି ବିଶେଷ ଅବଗତ ହୋଇପାରେ କି ? ଯେ ଏହି ସ୍ଥାବର ଜଙ୍ଗମାତ୍ମକ ଜଗତର ସ୍ରଷ୍ଟା, ତାଙ୍କର ମଧ୍ୟ ଉକ୍ତ ବିଷୟରେ ସଂଶୟ ହେବା ସ୍ୱାଭାବିକ' ।୩୪। କେଉଁ ବ୍ୟକ୍ତି ଦ୍ୱାରା କି ପ୍ରକାର

ବିସ୍ମୟସ୍ତଳ୍ପୌ ତାବତ୍ତଥଂ ଯାବନ୍ନାରଦ-ପାର୍ଥିବୌ ।
ଅଶରୀରାଂ ତତୋ ବାଣୀଂ ଶୁଶ୍ରୁବେ ବ୍ୟୋମଲକ୍ଷତଃ । ୩୫ ।
ତତ୍ର ବିସ୍ମୟମାନାନାଂ ସର୍ବେଷାମେବ ଶୃଣ୍ୱତାମ୍ ।
ଅପୌରୁଷେୟସ୍ତୋ ଭଗବାନ୍ ବିବରପଥମାସ୍ଥିତଃ । ୩୬ ।
ସୁଗୁପ୍ତାସ୍ତାଂ ମହାବେଦ୍ୟାଂ ସ୍ୱୟଂ ସୋଽବତରିଷ୍ୟତି ।
ପ୍ରଚ୍ଛାଦ୍ୟତାଂ ଦିନାନ୍ୟେବ ଯାବତ୍ ପଞ୍ଚଦଶାନି ବୈ । ୩୭ ।
ଉପସ୍ଥିତୋଽୟଂ ଯୋ ବୃଦ୍ଧଃ ଶସ୍ତ୍ରପାଣିସ୍ତୁ ବର୍ଦ୍ଧକିଃ ।
ଏନମନ୍ତଃ ପ୍ରବେଶ୍ୟୈବ ଦ୍ୱାରଂ ବଧ୍ନନ୍ତୁ ଯତ୍ନତଃ । ୩୮ ।
ତତ୍ପର୍ଯ୍ୟନ୍ତଂ ତୂର୍ଯ୍ୟନାଦଃ କ୍ରିୟନ୍ତାଂ ଯାବଦ୍ଧଟନା ଭବେତ୍ ।
ଶ୍ରୁତୋ ହି ଘଟନାଶବ୍ଦୋ ବାଧିର୍ଯ୍ୟାନ୍ଧତ୍ୱଦାୟକଃ । ୩୯ ।

---

ପ୍ରତିମା ନିର୍ମିତ ହେଲେ ଭଗବାନଙ୍କର ସନ୍ତୋଷ ହେବ, ନାରଦ ଓ ନରପତି ପରସ୍ପର ଏହିପରି ତର୍କ ବିତର୍କ କରୁଛନ୍ତି, ଏହି ସମୟରେ ଆକାଶରୁ ଅଶରୀରୀ ବାଣୀ କର୍ଣ୍ଣ କୁହରରେ ପ୍ରବିଷ୍ଟ ହେବାରୁ ସେଠାରେ ସମସ୍ତେ ବିସ୍ମୟାପନ୍ନ ହେଲେ । ଏହିପରି ଆକାଶବାଣୀ ହେଲା ଯେ ସେହି ଅପୌରୁଷେୟ ଭଗବାନ ସ୍ୱୟଂ ହିଁ ନିଜ ପ୍ରତିମୂର୍ତ୍ତିର ବିଷୟ ବିବୃତ କରି ଆବରଣ ଦ୍ୱାରା ଗୁପ୍ତ ମହାବେଦୀରେ ଅବତୀର୍ଣ୍ଣ ହେଲେ । ତୁମ୍ଭେମାନେ ପଞ୍ଚଦଶ ଦିବସ ପର୍ଯ୍ୟନ୍ତ ବେଦୀ ଗୃହକୁ ଉତ୍ତମ ଭାବରେ ଆଚ୍ଛାଦିତ କରି ରଖ ।୩୭। ଏହି ଶସ୍ତ୍ରହସ୍ତ ବୃଦ୍ଧ ପୁରୁଷ ଉପସ୍ଥିତ ଦେଖୁଅଛ । ଏହାଙ୍କୁ ଏହି ଗୃହ ମଧ୍ୟରେ ପ୍ରବେଶ କରାଇ ଯତ୍ନ ପୂର୍ବକ ଦ୍ୱାର ବନ୍ଧନ କର ।୩୮। ଯେପର୍ଯ୍ୟନ୍ତ ଏହି ଗଠନ କାର୍ଯ୍ୟ ନିଷ୍ପନ୍ନ ନ ହୋଇଛି, ସେପର୍ଯ୍ୟନ୍ତ ଏହାର ବହିର୍ଭାଗରେ ନାନାବିଧ ବାଦ୍ୟ ବାଦନ କରୁଥାଅ । କାରଣ ଏହି ଗଠନ ଶବ୍ଦ ଶ୍ରୁତି-ଭାଗରେ ପ୍ରବିଷ୍ଟ ହେଲେ ବଧିରତା, ଅନ୍ଧତ୍ୱ, ନରକ ବାସ ଓ ଅପତ୍ୟ ଆଦି ହୋଇଥାଏ ।୩୯।

ନରକେ ବସତିଂ ଚେ ବ କୁର୍ଯ୍ୟାତ୍ ସନ୍ତାନନାଶନମ୍ ।
ନାନ୍ତଃ ପ୍ରବେଶନଂ କୁର୍ଯ୍ୟାତ୍ ନ ପଶ୍ୟେଛ କଦାଚନ । ୪୦ ।

ନିଯୁକ୍ତାନ୍ୟଃ ପ୍ରପଶ୍ୟେଚ୍ଛେଦ୍ରାଜ୍ଞୋ ରାଷ୍ଟ୍ରସ୍ୟ ଚୈବ ହି ।
ଦ୍ରଷ୍ଟୁଶ୍ଚାପି ମହାଖ୍ରୀତରନ୍ଧତା ଚ ଯୁଗେ ଯୁଗେ । ୪୧ ।

ତସ୍ମାନ୍ନାବେକ୍ଷଣଂ କାର୍ଯ୍ୟଂ ଯାବତ୍ ପ୍ରତିମନିର୍ମିତିଃ ।
ନିର୍ଯ୍ୟତନ୍ତୁ ସ୍ୱୟଂ ଦେବଃ କୃତ୍ୟଂ ତେଽଜ ବଦିଷ୍ୟତି । ୪୨ ।

ଯଦ୍ ଯତ୍ କାର୍ଯ୍ୟଂ ପ୍ରଯତ୍ନେନ ସର୍ବଲୋକସୁଖାବହମ୍ ।
ତଚ୍ଛ୍ରୁତ୍ୱା ନାରଦାଦ୍ୟାସ୍ତେ ଯଥୋକ୍ତଂ ବିଷ୍ଣୁନା ସ୍ୱୟମ୍ ।
ଚିକୀର୍ଷିତ ତଥା କର୍ତ୍ତୁଂ ତଦାସ୍ଥାତସ୍ତୁ ବର୍ଦ୍ଧକିଃ । ୪୩ ।

---

ଅତଏବ କଦାପି ଘଣ୍ଟଣା ଗୃହର ଅନ୍ତର୍ଭାଗରେ ପ୍ରବେଶ କରିବେ ନାହିଁ କିମ୍ବା ଘଣ୍ଟଣା କିମ୍ବା ଦେଖିବେ ନାହିଁ ।୪୦। ଯଦି ଏହି କାର୍ଯ୍ୟ ନିଯୁକ୍ତ ବ୍ୟକ୍ତି ବ୍ୟତୀତ ଅନ୍ୟ କେହି ଦର୍ଶନ କରନ୍ତି, ତାହାହେଲେ କି ରାଜା କି ରାଷ୍ଟ୍ର ସମସ୍ତଙ୍କର ହିଁ ମହାଭୟ ଉପସ୍ଥିତ ହେବ । ବିଶେଷତଃ ଦର୍ଶନକାରୀ ବ୍ୟକ୍ତି ଯୁଗଯୁଗଧରି ଅନ୍ଧକାର ବଶୀଭୂତ ହେବେ ।୪୧। ଯେପର୍ଯ୍ୟନ୍ତ ଏହି ପ୍ରତିମୂର୍ତ୍ତି ନିର୍ମାଣ ସମ୍ପନ୍ନ ନ ହୋଇଛି, ସେପର୍ଯ୍ୟନ୍ତ କେବେହେଲେ ଦର୍ଶନ କରିବେ ନାହିଁ । ହେ ନରପତି ! ସ୍ୱୟଂ ସନାତନ ଦେବ ତୁମ୍ଭଙ୍କୁ ଯେଉଁ ଯେଉଁ କର୍ତ୍ତବ୍ୟ ଉପଦେଶ କରିବେ, ତୁମ୍ଭେ ଅନ୍ତତଃ ଯତ୍ନ ସହିତ ସର୍ବଲୋକ ସୁଖକର ସେହି କାର୍ଯ୍ୟ ସମ୍ପାଦନ କରିବ ।୪୨। ନାରଦ ପ୍ରଭୃତି ଏହା ଶ୍ରବଣ କରି ସ୍ୱୟଂ ବିଷ୍ଣୁ ଯାହା ଉପଦେଶ କରିଥିଲେ, ତାହା କରିବାକୁ ଇଚ୍ଛା କରିବା ସମୟରେ ସେହି ବୃଦ୍ଧ ପୁରୁଷ ରୂପଧାରୀ ବର୍ଦ୍ଧକି ସେଠାରେ ଉପସ୍ଥିତ

ପ୍ରୋବାଚ ନୃପତିଂ ସୋଽଥ ସ୍ୱପ୍ନେ ଦୃଷ୍ଟାସ୍ତୁ ଯାସ୍ତ୍ୱୟା ।
ତା ଏବାହଂ ଘଟିଷ୍ୟାମି ଦାରୁଣା ଦିବ୍ୟରୂପିଣା । ୪୪ ।

ଇତ୍ୟୁକ୍ତ୍ୱାନ୍ତର୍ଦଧେ ବେଦ୍ୟାଂ ବୃଦ୍ଧବର୍ଦ୍ଧକିରୂପଧୃକ୍ ।
ବଞ୍ଚନାର୍ଥଂ ମନୁଷ୍ୟାଣାଂ ସାକ୍ଷାନ୍ନାରାୟଣୋ ବିଭୁଃ । ୪୫ ।

ଇତି ଶ୍ରୀସ୍କାନ୍ଦେ ଅକ୍ଷୟବଟୋତ୍ପତ୍ତିବିବରଣଂ ନାମ
ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

ହୋଇ ନରପତିଙ୍କୁ କହିଲେ, "ହେ ରାଜନ୍ ! ଆପଣ ସ୍ୱପ୍ନ ଯୋଗରେ ଯେଉଁ ସମସ୍ତ ମୂର୍ତ୍ତି ଦର୍ଶନ କରିଥିଲେ, ଦିବ୍ୟରୂପ ଦାରୁ ଦ୍ୱାରା ମୁଁ ସେସମସ୍ତ ପ୍ରସ୍ତୁତ କରିଦେବି" ।୪୪। ମନୁଷ୍ୟମାନଙ୍କୁ ବଞ୍ଚନା କରିବା ନିମନ୍ତେ ବୃଦ୍ଧପୁରୁଷ ରୂପୀ ସ୍ୱୟଂ ନାରାୟଣ ଏହି କଥା କହି ବେଦୀ ମଧ୍ୟରେ ଅନ୍ତର୍ହିତ ହୋଇଗଲେ ।୪୫।

॥ ଅଷ୍ଟାଦଶ ଅଧ୍ୟାୟ ସମାପ୍ତ ॥

## ଏକୋନବିଂଶୋଧ୍ୟାୟଃ

ଶ୍ରୀ ଜୈମିନିରୁବାଚ

ତତଃ ସ ପୃଥିବୀପାଲସ୍ତଥା କୃତ୍ୱାନ୍ୱରକ୍ଷଣମ୍ ।
ଯଦୁବାଚ ଗିରଂ ଦେବୀ ତଦ୍‌ବଚ୍ଚ ପରିଚର୍ଯ୍ୟର ଚ । ୧ ।
ଏବଂ ଦିନେ ଦିନେ ଯାତେ ଦିବ୍ୟଗନ୍ଧୋଽନୁଭୂୟତେ ।
ପାରିଜାତପ୍ରସୂନାଂ ବୃଷ୍ଟିର୍ମର୍ତ୍ତ୍ୟେଷୁ ଦୁର୍ଲଭା । ୨ ।
ଦିବ୍ୟସଙ୍ଗୀତନାଦଶ୍ଚ ଗୀତାନି ରୁଚିରାଣି ଚ ।
ସ୍ୱର୍ଗଙ୍ଗାଜଲବୃଷ୍ଟିଶ୍ଚ ସୂକ୍ଷ୍ମବିନ୍ଦୁସୁଶୋଭନା । ୩ ।
ଐରାବତାଦିନାଗାନାଂ ମଦଗନ୍ଧୋ ମଦଦ୍ୱିପୈଃ ।
ଦୁଃସହଃ ସର୍ବଲୋକାନାଂ ସୁଖକାର୍ଯ୍ୟନୁଭୂୟତେ । ୪ ।
ଯଜ୍ଞାର୍ଥମାଗତା ଦେବାସ୍ତେ ସର୍ବେ ବିଗତଜ୍ୱରାଃ ।
ଆବର୍ତ୍ତିତଂ ହରିଂ ଦୃଷ୍ଟ୍ୱା ଉପାସାଞ୍ଚକ୍ରିରେ ଦ୍ୱିଜାଃ । ୫ ।

---

## ଊନବିଂଶ ଅଧ୍ୟାୟ

ଜୈମିନି କହିଲେ, ତଦନନ୍ତର ସେହି ଭୂପତି ପ୍ରତିମା ନିର୍ମାଣ ଗୃହ ଦ୍ୱାର ଆବଦ୍ଧ କରି, ଆକାଶ ଗାମିନୀ ବାଗ୍‌ଦେବୀ ଯେପରି କର୍ତ୍ତବ୍ୟ ଉପଦେଶ ଦେଇଥିଲେ, ତଦନୁରୂପ ଆଚରଣ କରିବାକୁ ଲାଗିଲେ ।୧। ଏହି ଭାବରେ କେତୁଦିନ ଅତୀତ ହୁଅନ୍ତେ ଏକ ଅପୂର୍ବ ଦିବ୍ୟଗନ୍ଧ ଅନୁଭୂତ ହେଲା ଓ ମନୁଷ୍ୟ ପକ୍ଷରେ ଅତି ଦୁର୍ଲଭ ପାରିଜାତ ପୁଷ୍ପବୃଷ୍ଟି ହେଲା ଏବଂ ସ୍ୱର୍ଗୀୟ ସଙ୍ଗୀତ ଓ ଅନ୍ୟାନ୍ୟ ମନୋହର ଗୀତ ଧ୍ୱନି ଶୁଣିବାକୁ ମିଳିଲା । ସୁର ଦୀର୍ଘିକାରୁ ସୂକ୍ଷ୍ମ ସୂକ୍ଷ୍ମ ବିନ୍ଦୁ ସୁରୁଚିର ବାରିବର୍ଷଣ ହେଲା ।୩। ଐରାବତ ଆଦି ଗଜ ସମୂହ ଓ ମତ୍ତହସ୍ତୀମାନଙ୍କର ମଦଗନ୍ଧ ଦୁଃସହ ହେଲେ ମଧ୍ୟ ସୁଖାନୁଭବ ହେବାକୁ ଲାଗିଲା ।୪। ହେ ଦ୍ୱିଜଗଣ ! ଏଥିପୂର୍ବରୁ ଯଜ୍ଞ ଉପଲକ୍ଷରେ ଯେଉଁ ସମସ୍ତ ଅମରଗଣ ସମାଗତ ହୋଇଥିଲେ, ସେମାନେ ସମସ୍ତେ ହିଁ ହରିଦେବ ଆବର୍ତ୍ତିତ ହୋଇଅଛନ୍ତି ଦେଖି ମାନସିକ ଦୁଃଖକୁ ପରିହାର କରି ଉପାସନା କରିବାକୁ ଲାଗିଲେ ।୫।

ଯଥା ହି ମାଧବଂ ପୂର୍ବଂ ତଥା ତଂ ବିଷ୍ଣୁ ଶାଖିନମ୍ ।
ଉପାସନାସୁ ଦେବାନାଂ ଦିବ୍ୟଚିହ୍ନାନି ଜଜ୍ଞିରେ ।୭।
ନିର୍ବାହ୍ୟ ସ୍ୱୟଂ ଦେବଃ କ୍ରମ ତ୍ର ପଞ୍ଚଦଶେ ଦିନେ ।
ଚତୁର୍ମୂର୍ତ୍ତିଃ ସ ଭଗବାନ୍ ଯଥା ପୂର୍ବଂ ମୟୋଦିତଃ ।୭।
ତାଦୃଗାବିର୍ଭୂବାଽସୌ ପୁଷ୍ପାକଂ ବର୍ଣ୍ଣିତଃ ପୁରା ।
ଦିବ୍ୟସିଂହାସନଗତୋ ଭଦ୍ରାବଳସୁଦର୍ଶନୈଃ ।୮।
ଶଙ୍ଖଚକ୍ରଗଦାପଦ୍ମଲସଦ୍ବାହୁର୍ଜନାର୍ଦ୍ଦନଃ ।
ଗଦାମୂଷଳଚକ୍ରାବ୍ଜଂ ଧାରୟନ୍ ପନ୍ନଗାକୃତିଃ ।୯।
ଛତ୍ରାକୃତିଫଣାସପ୍ତମୁକୁଟୋଜ୍ଜ୍ୱଳକୁଣ୍ଡଳଃ ।
ସୁଭଦ୍ରା ଚନ୍ଦ୍ରବଦନା ବରଦାଭୟଧାରିଣୀ ।୧୦।

---

ସେମାନେ ପୂର୍ବରେ ସେହି ନୀଳମଣି ମାଧବଙ୍କୁ ଯେଉଁ ଭାବରେ ଉପାସନା କରୁଥିଲେ, ବର୍ତ୍ତମାନ ଏହି ବିଷ୍ଣୁ ବୃକ୍ଷରାଜଙ୍କୁ ତଦନୁସାରେ ଅର୍ଚ୍ଚନା କଲେ । ଦେବଗଣଙ୍କର ଏହି ଉପାସନାରେ ଦିବ୍ୟଚିହ୍ନ ସମୂହର ସୁସ୍ପଷ୍ଟ ଜ୍ଞାନ ହେଲା ।୭। କ୍ରମଶଃ ପଞ୍ଚଦଶ ଦିବସ ସମାଗତ ହୁଅନ୍ତେ, ମୁଁ ଯେପରି ପୂର୍ବରୁ କହିଥିଲି, ସେହି ରୂପରେ ଜଗନ୍ନାଥଦେବ ସ୍ୱୟଂ ହିଁ ବର୍ଦ୍ଧକି ରୂପରେ ନିଜର ମୂର୍ତ୍ତିକୁ ନିର୍ମାଣ କଲେ ।୭। ମୁଁ ଯେଉଁ ଭାବରେ ତୁମ୍ଭମାନଙ୍କ ନିକଟରେ ବର୍ଣ୍ଣନା କରିଅଛି, ବର୍ତ୍ତମାନ ସେହି ପ୍ରକାରେ ଜନାର୍ଦ୍ଦନ, ବଳରାମ, ସୁଭଦ୍ରା ଓ ଚକ୍ରରାଜଙ୍କ ସହିତ ଦିବ୍ୟସିଂହାସନରେ ଆବିର୍ଭୂତ ହେଲେ । ଜନାର୍ଦ୍ଦନଙ୍କର ଶଙ୍ଖ, ଚକ୍ର, ଗଦା, ପଦ୍ମ ଚିହ୍ନ ହସ୍ତରେ ବିରାଜିତ ରହିଅଛି । ଅନନ୍ତଦେବ ଗଦା, ମୁଷଳ, ଚକ୍ର ଓ ବଜ୍ର ଚିହ୍ନ ଧାରଣ କରିଅଛନ୍ତି ।୯। ଏହାଙ୍କର ସପ୍ତଫଣା ଛତ୍ରାକୃତି ଧାରଣ କରି ତଦୁପରି ବିନ୍ୟସ୍ତ ମୁକୁଟ ଏବଂ ଉଜ୍ଜ୍ୱଳ କୁଣ୍ଡଳ ଆଭରଣ ଦ୍ୱାରା ଶୋଭା ପାଉଅଛି । ଚନ୍ଦ୍ରବଦନା ସୁଭଦ୍ରା ଦେବୀ ଏକ ହସ୍ତରେ ବରପଦ୍ମ ଓ ଅନ୍ୟ ହସ୍ତରେ ଅଭୟ ଧାରଣ କରିଅଛନ୍ତି ।୧୦।

ଲକ୍ଷ୍ମୀଃ ପ୍ରାଦୁରଭୂଦ୍ୟସ୍ମିଂସ୍ତଚ୍ଚୈତନ୍ୟରୂପିଣୀ ।
ସ୍ୱୟଂ କୃଷ୍ଣାବତାରେ ତୁ ରୋହିଣୀଗର୍ଭସମ୍ଭବା ॥୧୧॥
ବଳଭଦ୍ରାକୃତିର୍ଜାତା ବଳରାମସ୍ୟ କର୍ଷଣାତ୍ ।
କ୍ଷଣଂ ନ ସହତେ ମାୟା ଯା ମୋକ୍ତୁଂ ନାଥ ଉତ ଦ୍ୱିଜାଃ ॥୧୨॥
ନ ଭେଦୋଽସ୍ତି ହି ଭୋ ବିପ୍ରାଃ କୃଷ୍ଣସ୍ୟ ବଳସ୍ୟ ଚ ।
ଏକଗର୍ଭଜନିତ୍ୱାଦ୍ ବ୍ୟବହାରେଽପି ଲୌକିକେ ॥୧୩॥
ଭଗିନୀ ବଳଦେବସ୍ୟ ସୁଭଦ୍ରା ପୌରାଣିକୀ କଥା ।
ପୁଂରୂପେଣ ସ୍ତ୍ରୀରୂପେଣ ଲକ୍ଷ୍ମୀଃ ସର୍ବତ୍ର ତିଷ୍ଠତି ॥୧୪॥
ପୁଂସଂଜ୍ଞୋ ଭଗବାନ୍ ବିଷ୍ଣୁଃ ସ୍ତ୍ରୀନାମ୍ନୀ କମଳାଳୟା ।
ଦେବତିର୍ଯ୍ୟଙ୍ମନୁଷ୍ୟାଦୌ ବିଦ୍ୟତେ ନୈତୟୋଃ ପରମ୍ ॥୧୫॥

---

ଏ ସେହି ଚୈତନ୍ୟ ରୂପିଣୀ ଲକ୍ଷ୍ମୀ ମୂର୍ତ୍ତି ରୂପରେ ଆବିର୍ଭୂତା ହୋଇଅଛନ୍ତି । କୃଷ୍ଣ ଅବତାର କାଳରେ ରୋହିଣୀ ଗର୍ଭସ୍ଥ ବଳରାମ ଆକର୍ଷଣ ହେତୁ ବଳଭଦ୍ରର ଆକାର ନେଇ ଜନ୍ମଗ୍ରହଣ କରିଥିଲେ । ଏ ଏହି ମାୟାବତୀ ବିଷ୍ଣୁଙ୍କୁ କ୍ଷଣକ ପାଇଁ ସୁଦ୍ଧା ପରିତ୍ୟାଗ କରିବାକୁ ସମର୍ଥ ନୁହଁନ୍ତି ।୧୨। ହେ ବିପ୍ରଗଣ ! ଏହି କୃଷ୍ଣ ଓ ବଳଦେବଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଏକ ଗର୍ଭରୁ ଜନ୍ମ ଗ୍ରହଣ କରିଥିବା ହେତୁ ଲୌକିକ ବ୍ୟବହାରରେ ସୁଭଦ୍ରା ବଳଦେବଙ୍କ ଭଗିନୀ. ପୁରାଣ ପ୍ରଭୃତିରେ ଏହିପରି ବର୍ଣ୍ଣିତ ହୋଇଛି । ପୁରୁଷ ଓ ସ୍ତ୍ରୀ ରୂପରେ ଲକ୍ଷ୍ମୀ ସର୍ବତ୍ର ଅବସ୍ଥାନ କରନ୍ତି ।୧୪। ପୁରୁଷ ନାମରେ ଭଗବାନ ବିଷ୍ଣୁଙ୍କୁ ଏବଂ ସ୍ତ୍ରୀ ନାମରେ କମଳାଳୟା ଲକ୍ଷ୍ମୀଙ୍କୁ ହିଁ ବୁଝାଏ । କି ଦେବଗଣ, କି ତିର୍ଯ୍ୟକ ଜାତି, କି ମନୁଷ୍ୟ, ସମସ୍ତ ପ୍ରାଣୀମାନଙ୍କ ଅଭ୍ୟନ୍ତରରେ ଏହି ଦେବଦେବୀ ଭିନ୍ନ ଅନ୍ୟ କିଛି ବିଦ୍ୟମାନ ନାହିଁ ।୧୫।

କୋ ହ୍ୟନ୍ୟଃ ପୁଣ୍ଡରୀକାକ୍ଷାଦ୍ ଭୁବନାନି ଚତୁର୍ଦ୍ଦଶ ।
ଧାରୟେତ୍ ଫଣାଗ୍ରେଣ ସୋଽନନ୍ତୋ ବଳସଜ୍ଞିତଃ ।୧୬।
ତସ୍ୟ ଶକ୍ତିସ୍ୱରୂପେୟଂ ଭଗିନୀ ଶ୍ରୀ-ପ୍ରବର୍ତ୍ତିକା ।
ସୁଦର୍ଶନଶ୍ଚ ଯଚ୍ଚକ୍ରଂ ସଦା ବିଷ୍ଣୁକରେ ସ୍ଥିତମ । ୭।
ଶାଖାଗ୍ରସ୍ତମ୍ଭମଧ୍ୟସ୍ଥଂ ତଦଲ୍ପଂଭୁଗ୍ଣାସ୍ତନମ୍ ।
ଏବଂ ତୁ ମୂର୍ତ୍ତିସ୍ୱରୂପେଣ ଚତସ୍ରୋ ବୈ ପ୍ରକାଶିତାଃ ।୧୮।
ନବୃତ୍ତେ ଭଗବଦ୍ରୂପେ ଚତୁର୍ଦ୍ଧା ହବ୍ୟରୂପିଣୀ ।
ଲୋକାନାମୁପକାରାୟ ପୁନରାହାମ୍ବରାଶ୍ରଗା ।୧୯।
ପଟ୍ଟୈରାଚ୍ଛାଦ୍ୟ ସୁଦୃଢ଼ଂ ନୃପତେ ପଦ୍ମମାତ୍ରିମାଃ ।
ସ୍ୱଂ ସ୍ୱଂ ବର୍ଣ୍ଣଂ ଯାନସ୍ତାଶ୍ଚ ବର୍ଣ୍ଣକୈଶ୍ଚିତ୍ରକର୍ମଣା ।୨୦।
ନୀଳାଭ୍ରଶ୍ୟାମଳଂ ବିଷ୍ଣୁଂ ଶଙ୍ଖେନ୍ଦୁଧବଳଂ ବଳମ ।
ରକ୍ତଂ ସୁଦର୍ଶନଂ ଚକ୍ରଂ ସୁଭଦ୍ରାଂ କୁଙ୍କୁମାରୁଣାମ ।୨୧।

---

ଏହି ପୁଣ୍ଡରୀକାକ୍ଷଙ୍କ ବ୍ୟତୀତ କୌଣସି ବ୍ୟକ୍ତି ଚତୁର୍ଦ୍ଦଶ ଭୁବନ ପରମ୍ପରା ଫଣାର ଅଗ୍ରଭାଗରେ ଧାରଣ କରିବାକୁ ସମର୍ଥ ହୁଏ ? ସେହି ଭୁବନ ସମୂହର ଭାରଧାରୀ ଅନନ୍ତଦେବ ହିଁ ଏହି ବଳଦେବ ନାମରେ ଅଭିହିତ ହୋଇଅଛନ୍ତି ।୧୬। ସୁଭଦ୍ରା ଭଗିନୀ ତାଙ୍କ ଶକ୍ତି ସ୍ୱରୂପିଣୀ । ସେ ଶ୍ରୀ ପ୍ରଦାୟିନୀ ଏବଂ ସୁଦର୍ଶନ ନାମରେ ଚକ୍ରରାଜ ପ୍ରକଟିତ ଶାଖା ଅଗ୍ରସ୍ତମ୍ଭ ମଧ୍ୟସ୍ଥିତ ହୋଇ ବିଷ୍ଣୁଙ୍କ କରକମଳରେ ବିରାଜ କରିଅଛି । ତାହାଙ୍କର ସେ ଚତୁର୍ଥ ରୂପ । ଏହି ଭାବରେ ସ୍ୱୟଂ ଭଗବାନ ମୂର୍ତ୍ତି ଚତୁଷ୍ଟୟ ପ୍ରକାଶ କରି-ଅଛନ୍ତି ।୧୮। ଏହି ଉତ୍ତମ ଭଗବାନଙ୍କ ରୂପ ଚାରି ପ୍ରକାରରେ ସମ୍ପାଦିତ ହୁଅନ୍ତେ, ଲୋକମାନଙ୍କର ଉପକାର ନିମନ୍ତେ ସେହି ଆକାଶବାଣୀ ପୁନରାୟ କହିଲେ—ହେ ନରପତି ! ଏହି ପ୍ରତିମା-ଗୁଡ଼ିକୁ ପଟ୍ଟବସ୍ତ୍ର ଦ୍ୱାରା ଦୃଢ଼ ଆବୃତ କରି ଚିତ୍ରକାରଙ୍କ ଦ୍ୱାରା ନିଜ ନିଜ ବର୍ଣ୍ଣରେ ରଞ୍ଜିତ କର ।୨୦। ବିଷ୍ଣୁଙ୍କୁ ନୀଳମେଘ ସଦୃଶ ଶ୍ୟାମଳ, ବଳଦେବଙ୍କୁ ଶଙ୍ଖ ବା ଶୁଭ୍ରାଂଶୁ ପ୍ରତିମ ଧବଳ,

ନାନାଲଙ୍କାରୈଶ୍ଚିତ୍ରଂ ନାନାଭଙ୍ଗୀ ବିଭାଗଶଃ ।
ଅମୀ ଦାରୁସ୍ୱରୂପେଣ ଦୃଷ୍ଟାଃ ସ୍ୟୁଃ ପାପହେତବଃ ।୨୨।
ଗୋପନୀୟାଃ ପ୍ରଯତ୍ନେନ ପଟ୍ଟନିର୍ଯ୍ୟାସବନ୍ଧନୈଃ ।
ତସ୍ମାତ ପ୍ରଥମତମ ବିତାଂଶୁଗେହର ବାସ୍ୟ ବଲ୍କଲୈଃ ।୨୩।
ଶିଳ୍ପିଭିଃ କର୍ମକୁଶଳୈର୍ଦୃଢ଼ମାଚ୍ଛାଦୟେତ୍ତତଃ ।
ବର୍ଣ୍ଣଂ ବର୍ଣ୍ଣଂ ଚ ସଂସ୍କୁର୍ଯ୍ୟାତ୍ ପୂର୍ବାଙ୍ଗସ୍ୟ ବିମୋଚନାତ୍ ।୨୪।
ରୂପେ ବନ୍ଧନଲେପଂ ତୁ ସ ତୁ ଦ୍ରବ୍ୟଶ୍ଚିରନ୍ତନଃ ।
ପ୍ରମାଦାଦ ଯଦି ତଲ୍ଲେପମପମାସ୍ୟେତ ଜନ୍ମନ ।୨୫।
ବୀକ୍ଷତେ ତସ୍ୟ ନରକେ ଚିରଂ ବାସଃ ପ୍ରଜାୟତେ ।
ଦୁର୍ଭିକ୍ଷଂ ମରକଂ ରାଜ୍ୟେ ସନ୍ତତିଶ୍ଚାସ୍ୟ କ୍ଷୀୟତେ ।୨୬।

---

ଚକ୍ରରାଜ ସୁଦର୍ଶନଙ୍କୁ ରକ୍ତ ଓ ସୁଭଦ୍ରା ଦେବୀଙ୍କୁ କୁଙ୍କୁମ ପରି ଅରୁଣ ବର୍ଣ୍ଣ ଏବଂ ନାନା ପ୍ରକାର ଭଙ୍ଗୀ-ବିଭାଗରେ ବିବିଧ ଅଳଙ୍କାର ଦ୍ୱାରା ପରିଶୋଭିତା କର । କାରଣ ଏହି ପ୍ରତିମା ଗୁଡ଼ିକ ଦାରୁ ରୂପରେ ଦୃଷ୍ଟ ହେଲେ ପାପର କାରଣ ହୋଇଥାଏ । ଅତଏବ ଯତ୍ନ ସହକାରେ ପଟ୍ଟ ଓ ନିର୍ଯ୍ୟାସ ଦ୍ୱାରା ସମସ୍ତ ଅବୟବ ଆବଦ୍ଧ କରି ଗୋପନ ରଖିବା ଉଚିତ । ପ୍ରଥମରେ କର୍ମକୁଶଳୀ ଶିଳ୍ପୀମାନଙ୍କ ଦ୍ୱାରା ଦୃଢ଼ ଭାବରେ ଏମାନଙ୍କର ଗାତ୍ରାଚ୍ଛାଦନ କରି ଏବଂ ପ୍ରତିବର୍ଷ ପୂର୍ବ ଅଙ୍ଗ ସଂସ୍କାର ମୋଚନ କରି ନୂତନ ଅଙ୍ଗ ସଂସ୍କରଣ କରିବା କର୍ତ୍ତବ୍ୟ ।୨୪। ବନ୍ଧନ ଓ ଗାତ୍ରଲେପ ବ୍ୟତୀତ ସେହି ଦ୍ରବ୍ୟ ମୂର୍ତ୍ତି ଚିରନ୍ତନ ଅଟନ୍ତି । ଯଦି କୌଣସି ବ୍ୟକ୍ତି ପ୍ରମାଦ ବଶତଃ ସେହି ପ୍ରତିମାଙ୍କର ଗାତ୍ରଲେପ ଅପସାରିତ କରେ କିମ୍ବା ସେହି ଅବସ୍ଥାରେ ଦର୍ଶନ କରେ, ତାହାହେଲେ ସେହି ବ୍ୟକ୍ତି ଚିରକାଳ ନରକବାସ କରିଥାଏ । ରାଜ୍ୟରେ ଦୁର୍ଭିକ୍ଷ ଓ ମଡ଼କ ପୀଡ଼ା ଉପସ୍ଥିତ ହୁଏ ଏବଂ ତାର ସନ୍ତାନ ସନ୍ତତି ବିନଷ୍ଟ ହୁଅନ୍ତି ।୨୬।

ନୈକ୍ଷିତବ୍ୟା ତ୍ୱୟା ରାଜନ୍ କଦାଚିଦପବାରଣା ।
ମନୁଷ୍ୟୈଶ୍ଚାପି ରାଜେନ୍ଦ୍ର ଦୃଷ୍ଟାସ୍ୟୁର୍ଦ୍ଧ୍ୱଂସହେତବଃ ।
ତସ୍ମାତ୍ତୁ ସୁଚ୍ଛନ୍ନା ଦ୍ରଷ୍ଟବ୍ୟା ବହୁଲେପବିଲେପିତାଃ ।୨୭।
ସୁଚ୍ଛନ୍ନଂ ପୁଣ୍ଡରୀକାକ୍ଷଂ ସୁବିଳାସଂ ସୁବିଭ୍ରମମ୍ ।
ଦୃଷ୍ଟ୍ୱା ବିମୁଚ୍ୟତେ ପାପୈଃ କଳ୍ପକୋଟିସମୁଦ୍ଭବୈଃ ।୨୮।
ସୁଚ୍ଛନ୍ନାନ୍ କୁରୁ ରାଜେନ୍ଦ୍ର ଚ୍ଛନ୍ନାନ୍ କାମାନବାପ୍ସ୍ୟସି ।
ଆବିର୍ଭୂବ ଭଗବାଂସ୍ତବାନୁଗ୍ରହକାମ୍ୟୟା ।୨୯।
ତବ ପ୍ରସାଦାଜ୍ଜନ୍ତୂନାଂ ଚତୁର୍ବର୍ଗଂ ପ୍ରଦାସ୍ୟତି ।
ନୀଳାଦ୍ରୌ କଳ୍ପବୃକ୍ଷସ୍ୟ ବାୟବ୍ୟାଂ ଶତହସ୍ତତଃ ।୩୦।
ପ୍ରଦେଶେ ତୁ ମହତ୍ ସ୍ଥାନେ ପ୍ରାସାଦଂ ସୁଦୃଢ଼ାସ୍ପୃତମ୍ ।
ଉତ୍ତରେ ନରସିଂହସ୍ୟ ସହସ୍ରକରମୁଚ୍ଛ୍ରିତମ୍ ।୩୧।

---

ହେ ରାଜନ୍ ! ଆପଣ କଦାପି ଏହି ମୂର୍ତ୍ତି ଚତୁଷ୍ଟୟଙ୍କୁ ଆବରଣ ଶୂନ୍ୟ କରି ଦର୍ଶନ କରିବେ ନାହିଁ । ମନୁଷ୍ୟମାନେ ଏହି ଅବସ୍ଥାରେ ଦର୍ଶନ କଲେ, ମହାଭୟ ଗ୍ରସ୍ତ ହୋଇପଡ଼ନ୍ତି । ଅତଏବ ବହୁତର ଲେପ ବିଲେପିତ ଓ ଉତ୍କୃଷ୍ଟ ଶଜିତ ମୂର୍ତ୍ତିଙ୍କୁ ଦର୍ଶନ କରିବା କର୍ତ୍ତବ୍ୟ ।୨୭। ଏହି ପୁଣ୍ଡରୀକାକ୍ଷ, ସୁଚିହ୍ନ ଓ ସୁନ୍ଦର ବିଳାସ ବିଭ୍ରମାନ୍ୱିତ ଅବସ୍ଥାରେ ଦୃଷ୍ଟ ହେଲେ, କୋଟି କଳ୍ପସମୁତ୍ପନ୍ନ ପାପରାଶିରୁ ମୁକ୍ତି ଲଭ ହୁଏ । ହେ ରାଜେନ୍ଦ୍ର ! ଆପଣ ଏହି ପ୍ରତିମା ମାନଙ୍କୁ ସୁଚିହ୍ନିତ କରନ୍ତୁ । ତାହାଦ୍ୱାରା ବିଚିହ୍ନ କାମନା ସଫଳ ହେବ । ଭଗବାନ ତୁମ୍ଭଙ୍କୁ ଅନୁଗ୍ରହ କରିବା ନିମନ୍ତେ ଆବିର୍ଭୂତ ହୋଇଅଛନ୍ତି । ତୁମ୍ଭ ପ୍ରସାଦରେ ଜୀବମାନଙ୍କୁ ଭଗବାନ ଚତୁର୍ବର୍ଗ ପ୍ରଦାନ କଲେ । ବର୍ତ୍ତମାନ ନୀଳ ପର୍ବତ ଉପରିଭାଗରେ ଯେଉଁ କଳ୍ପବୃକ୍ଷ ରହିଅଛି, ତାହାର ବାୟୁ କୋଣରେ ଏକଶତ ହସ୍ତ ଦୂରରେ ପ୍ରତିଷ୍ଠିତ ନରସିଂହ ଦେବଙ୍କ ଉତ୍ତର ଭାଗରେ ଯେଉଁ ପ୍ରଶସ୍ତ ଓ ବିସ୍ତୀର୍ଣ୍ଣ ସ୍ଥାନ ରହିଅଛି, ସେହି ସ୍ଥାନରେ ସହସ୍ର ସହସ୍ର ଉନ୍ନତ ଏବଂ ତଦନୁରୂପ ଆୟତ୍ତ ଏକ ସୁଦୃଢ଼ ପ୍ରାସାଦ ନିର୍ମାଣ କରି ତହିଁରେ ଏହି ଦେବଙ୍କୁ ସ୍ଥାପନ କର ।

ଜାରସ୍ଥିତ୍ୱା ପ୍ରତିଷ୍ଠାପ୍ୟ ତସ୍ମୈନଂ ବନଦେଶତଃ ।
ପୁରା ସ୍ଥିତଂ ପର୍ବତେଽସ୍ମିନ୍ ଯୋଽର୍ଚ୍ଚୟତ୍ସ୍ମ ତ ମାଧବମ୍ ।୩୨।
ନାମ୍ନା ବିଶ୍ୱାବସୁର୍ନାମ ଶବରୋ ବୈଷ୍ଣବୋତ୍ତମଃ ।
ପୁରୋଧସଃ ସଖ୍ୟମାସୀତ୍ତେନ ସାର୍ଦ୍ଧଂ ପୁରା ଚ ତେ ।୩୩।
ତଦ୍ୱଂଶ୍ୟାଃ ସନ୍ତ୍ୟତରେବାସ୍ୟ ଲେପସଂସ୍କାରକର୍ମଣି ।
ନିଯୁଜ୍ୟତାଂ ମହାରାଜ ଭବିଷ୍ୟୋତ୍ସବେଷୁ ଚ ।୩୪।
ବିରରାମୈତଦାଭାଷ୍ୟ ସା ତୁ ଦିବ୍ୟା ସରସ୍ୱତୀ ।
ତସ୍ୟୋପଦେଶମାକର୍ଣ୍ଣ୍ୟ ପ୍ରହୃଷ୍ଟେନାନ୍ତରାତ୍ମନା ।୩୫।
ବେଷ୍ଟନଂ ମୋଚୟାମାସ ମହାବେଦ୍ୟାଂ ନୃପୋତ୍ତମଃ ।
ଦଦୃଶୁସ୍ତେ ତଦା ସର୍ବେ ରତ୍ନସିଂହାସନସ୍ଥିତମ୍ ।୩୬।
ରାମଂ କୃଷ୍ଣଂ ସୁଭଦ୍ରାଞ୍ଚ ବାସୁଦେବଂ ସୁଦର୍ଶନମ୍ ।
ଯଥୋପଦିଷ୍ଟଲେପାଦିସଂସ୍କାରୈର୍ବିଶଦାକୃତିମ ।୩୭।

---

ହେ ନୃପ ! ପୂର୍ବ କାଳରେ ଏହି ନୀଳ ପର୍ବତୋପରି ବିଶ୍ୱାବସୁ ନାମକ ବୈଷ୍ଣବାଗ୍ରଗଣ୍ୟ ଏକ ଶବର ଏହି ମାଧବଙ୍କୁ ନିତ୍ୟ ଅର୍ଚ୍ଚନା କରୁଥିଲେ । ତାଙ୍କ ସହିତ ତୁମ୍ଭର ପୁରୋହିତ ବିଦ୍ୟାପତିଙ୍କ ବନ୍ଧୁତା ଥିଲା ।୩୩। ଅତଏବ ବିଶ୍ୱାବସୁ ଓ ବିଦ୍ୟାପତିଙ୍କ ବଂଶୋଦ୍ଭବ ବ୍ୟକ୍ତିଙ୍କୁ ଏହି ପ୍ରତିମାଗୁଡ଼ିକର ଲେପ ସଂସ୍କାର କର୍ମରେ ଓ ଭବିଷ୍ୟତ ଯଜ୍ଞ ଉତ୍ସବ କାର୍ଯ୍ୟରେ ନିଯୁକ୍ତ କର ।୩୪। ସେହି ଦିବ୍ୟ ବାଣୀ ଏହି କଥା କହି କ୍ଷାନ୍ତ ହେଲେ । ନରପତି ତାଙ୍କର ଉପଦେଶ ଶ୍ରବଣ କରି ହୃଷ୍ଟାନ୍ତଃକରଣରେ ମହାବେଦୀକୁ ଗମନ କରି ପ୍ରତିମୂର୍ତ୍ତି ଚତୁଷ୍ଟୟଙ୍କ ବେଷ୍ଟନ ଉନ୍ମୋଚନ କଲେ । ସେତେବେଳେ ସମସ୍ତେ ଦେଖିଲେ ଯେ ରତ୍ନସିଂହାସନ ଉପରିଭାଗରେ ବଳରାମ, ଜଗନ୍ନାଥ, ସୁଭଦ୍ରା ଦେବୀ ଓ ବାସୁଦେବଙ୍କ ଚକ୍ର ଅବସ୍ଥାନ କରିଅଛନ୍ତି । ତଦ୍ରୂପ ଲେପ ସଂସ୍କାରାଦି ଦ୍ୱାରା ଏମାନଙ୍କର ଆକୃତି ଅତି ମନୋହାରିଣୀ ହୋଇଅଛି ।୩୭।

କୃମସ୍ୱା ହେ୍ରଚନ୍ଦନମୂନ୍ନତାସ୍ତବକ୍ଷସମ୍ ।
ଦୀନାନାମୁଦ୍ଧୃତୌ ନାଥଂ ପଲମ୍ବିଭୁଜପଞ୍ଜରମ୍ ।୩୮।
ପ୍ରବୃଦ୍ଧପୁଣ୍ଡରୀକାକ୍ଷଂ ହାସଶୋଣାସ୍ମିତାଧରମ୍ ।
ପଶ୍ୟତାଂ ଦୃଷ୍ଟିମାତ୍ରେଣ ହରନ୍ତଂ ପାପସଞ୍ଚୟମ୍ ।୩୯।
ନିଦ୍ରାସନସ୍ଥିତଂ କୃଷ୍ଣଂ ଦିବ୍ୟାଲଙ୍କାରଭୂଷିତମ୍ ।
ସ୍ୱ ତେଜସା ପରିବୃତଂ ଦାରୁଦେହେଽପି ନିର୍ମଳମ ।୪୦।
ନୀଳଜୀମୂତସଙ୍କାଶଂ ସର୍ବସନ୍ତାପନାଶନମ୍ ।
ଦଦର୍ଶ ବଲଦେବଞ୍ଚ ସାଟ୍ଟହାସମୁଖାମ୍ବୁଜମ୍ ।୪୧।
ଫଣାମଣ୍ଡଳବପୀର୍ଷ୍ଣଂ ବାରୁଣୀଘୂର୍ଣ୍ଣିତେକ୍ଷଣେ ।
ପୋତ୍ତ୍ରଥନ୍ତଂ ନାଗରକାନ୍ତଂ ପୀନୋନ୍ନତପୃବକ୍ଷସମ ।୪୨।
କଞ୍ଚିନ୍ନତଂ ପୃଷ୍ଠଦେଶେ କୁଣ୍ଡଳୀକୃତବିଗ୍ରହମ୍ ।୪୩।

---

ଶ୍ରୀକୃଷ୍ଣଙ୍କ ବକ୍ଷସ୍ଥଳ ଉନ୍ନତ । କୃପାନ୍ୱିତ ହୋଇ ଶ୍ରୀମୁଖ ମଣ୍ଡଳ ଈଷତ୍ ହାସ୍ୟ ଧାରଣ କରିଅଛି । ନାଥଙ୍କ ଭୁଜପଞ୍ଜର ଦୀନମାନଙ୍କ ଉଦ୍ଧାର ସାଧନ ନିମନ୍ତେ ଲମ୍ବମାନ ହୋଇଅଛି ।୩୮। ତାଙ୍କ ନୟନ ଯୁଗଳ ପ୍ରଫୁଲ୍ଲ ଶ୍ୱେତ ପଦ୍ମର ଶୋଭା ହରଣ କରୁଅଛି । ଅଧର ହାସ୍ୟ ରାଗରେ ରକ୍ତିମ ହୋଇଅଛି । ଏହା ଦର୍ଶକମାନଙ୍କର ପାପ ସମୂହ ହରଣ କରିଥାଏ । ଏହାଙ୍କର ଦେହ ଦାରୁମୟ ହେଲେ ମଧ୍ୟ ପଦ୍ମ ଆସନରେ ଉପବିଷ୍ଟ ଓ ଦିବ୍ୟ ଅଳଙ୍କାର ଦ୍ୱାରା ବିଭୂଷିତ ହୋଇ ନିଜର ନିର୍ମଳ ତେଜ ପୁଞ୍ଜରେ ବେଷ୍ଟିତ ହୋଇଅଛନ୍ତି ।୪୦। ଏହାଙ୍କର ଦେହ ଶୋଭା ନୀଳ ମେଘ ତୁଲ୍ୟ ମନୋହାରିଣୀ । ଏ ଜୀବମାନଙ୍କର ସକଳ ସନ୍ତାପ ବିଦୂରିତ କରନ୍ତି । ଶ୍ରୀବଳଦେବଙ୍କୁ ଦେଖିଛନ୍ତି ଯେ, ମୁଖପଦ୍ମ ଅଟ୍ଟହାସ ପରିଶୋଭିତ ଏବଂ ଫଣା ସମୂହରେ ଛତ୍ରିତ, ବାରୁଣୀ ସେବନ ଦ୍ୱାରା ନେତ୍ର ଦ୍ୱୟ ଘୂର୍ଣ୍ଣିତ ଓ ଉତ୍ଥିତ ତଥା ନାଗରଶ୍ରେଷ୍ଠ. ତାହାଙ୍କର ବକ୍ଷସ୍ଥଳ କୋମଳ ଓ ଉନ୍ନତ, ପୃଷ୍ଠଦେଶ କିଞ୍ଚିତ ଅବନତ ଏବଂ ଦେହର ଅପରଭାଗ କୁଣ୍ଡଳୀକୃତ ।୪୩।

ଅଗସ୍ଫୁଲ୍ଲକକୁଭଂ କୈଳାସଶିଖରଂ ଯଥା ।
ହଳଚକ୍ରାବ୍ଜମୁଷଳଧାରିଣଂ ବନମାଳିନମ୍ ।
ହାରକୁଣ୍ଡଳକେୟୂରକଣ୍ଠମୁକୁଟୋଜ୍ଜ୍ୱଳମ୍ ।୪୪।
ତୟୋର୍ମଧ୍ୟସ୍ଥିତାଂ ଲକ୍ଷ୍ମୀଂ ସୁଭଦ୍ରାଂ ଭଦ୍ରରୂପିଣୀମ୍ ।
ବିକଚାମ୍ଭୋଜବଦନାଂ ବରାବ୍ଜାଭୟଧାରିଣୀମ୍ ।୪୫।
କୁଙ୍କୁମାରୁଣଦେହାଂ ତାଂ ସାକ୍ଷାଲ୍ଲକ୍ଷ୍ମୀମିବାପରାମ୍ ।୪୬।
ଦଦର୍ଶ ବିଷ୍ଣୋର୍ବାମସ୍ଥଂ ଚକ୍ରଂ ଶାଖାଗ୍ରନିର୍ମିତମ୍ ।
ବାଳାର୍କସଦୃଶଂ ତୀକ୍ଷ୍ଣଧାରଂ ତେଜୋମୟଂ ଦ୍ୱିଜାଃ ।୪୭।
ତାନ୍ ଦୃଷ୍ଟ୍ୱାନନ୍ଦପାଥୋଧିନିମଗ୍ନଃ ପୃଥିବୀପତିଃ ।
କର୍ତ୍ତବ୍ୟମୂଢ଼ଃ ସ୍ତୁତନୌ ସ୍ୱୟଂ ନ ପ୍ରବଭୂବ ହ ।୪୮।
ଦରମୀଳିତନେତ୍ରଃ ସନ୍ ସୃଜନ ବାଷ୍ପାମ୍ବୁ କେବଳମ୍ ।
କୃତାଞ୍ଜଳିପୁଟସ୍ତସ୍ଥୌ ହୃଷ୍ଟରୋମା ନୃପୋତ୍ତମଃ ।
ଉବାଚ ତଂ ମୁନିବରଃ ସ୍ମିତବକ୍ତ୍ରଃ କ୍ଷିତୀଶ୍ୱରମ୍ ।୪୯।

---

ସେ ହଳ, ଚକ୍ର, ପଦ୍ମ ଓ ମୁଷଳ ତଥା ଗଳ ଦେଶରେ ବନମାଳୀ ଧାରଣ କରି ଅଛନ୍ତି । ହାର, କୁଣ୍ଡଳ, କେୟୂର, କଣ୍ଠ ଓ ମୁକୁଟାଳଙ୍କାର ଦ୍ୱାରା ଦେହର ଶୋଭା ଉଜ୍ଜ୍ୱଳ ହୋଇଅଛି ।୪୪। ଏହି ଶ୍ରୀକୃଷ୍ଣ ଓ ବଳଦେବଙ୍କ ମଧ୍ୟଭାଗରେ ଭଦ୍ର ରୂପିଣୀ ଲକ୍ଷ୍ମୀ (ସୁଭଦ୍ରା) ଅବସ୍ଥାନ କରିଅଛନ୍ତି । ଏହାଙ୍କର ମୁଖମଣ୍ଡଳ ବିକଶିତ ପଦ୍ମ ସଦୃଶ । ଦୁଇ ହସ୍ତରେ ବର, ପଦ୍ମ ଓ ଅଭୟ ଧାରଣ କରି-ଅଛନ୍ତି । ଦେହ ଶୋଭା କୁଙ୍କୁମ ରାଗ ସଦୃଶ ରକ୍ତିମ, ସାକ୍ଷାତ୍ ଅପର ଲକ୍ଷ୍ମୀ ବୋଲି ବୋଧହୁଏ ।୪୬। ହେ ଦ୍ୱିଜଗଣ ! ସେ ବିଷ୍ଣୁଙ୍କ ବାମ ପାର୍ଶ୍ୱରେ ଶାଖାଗ୍ର ନିର୍ମିତ ନବୋଦିତ ସୂର୍ଯ୍ୟଙ୍କ ତୁଲ୍ୟ ତେଜୋମୟ ଓ ତୀକ୍ଷ୍ଣକାୟ ଚକ୍ରଙ୍କୁ ଦେଖିଲେ । ନରପତି ଇନ୍ଦ୍ରଦ୍ୟୁମ୍ନ ନିଜର ଭାଗ୍ୟ ପ୍ରକାଶକ ଏହି ସମସ୍ତ ଦିବ୍ୟ ମୂର୍ତ୍ତି ଦର୍ଶନ ପରେ ଯୁଗପତ୍ ଅପାର ଆନନ୍ଦ ସାଗରରେ ନିମଗ୍ନ ହେଲେ । ଏପରିକି କର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଲେ । ନିଜର ଶରୀର ଉପରେ ନିଜର କର୍ତ୍ତୃତ୍ୱ ରହିଲା ନାହିଁ ।୪୮। କେବଳ ଈଷତ୍ ନିମୀଳିତ ନେତ୍ରରେ ଅବିରାମ ଆନନ୍ଦ ବାଷ୍ପ ପରିତ୍ୟାଗ କରିବାକୁ

ନାରଦ ଉବାଚ

ଯଦର୍ଥଂ ଶ୍ରମମାପନ୍ନସ୍ତତ୍ ସାମ୍ପ୍ରତମଭୂତ୍ତବ ।
ପ୍ରତ୍ୟକ୍ଷଂ ନୃପଶାର୍ଦ୍ଦୂଲ ଏକ ତ୍ୱଂ ଭାଗ୍ୟବାନ୍ ଭୁବି ।୫୦।
ଅମୁଂ ପଶ୍ୟ ଜଗନ୍ନାଥଂ ସର୍ବଜ୍ଞାନନିଧିଂ ହରିମ୍ ।
ଯଂ ଦ୍ରଷ୍ଟୁଂ ଯୋଗିନୋ ନିତ୍ୟଂ ଯତନ୍ତେ ଯତମାନସାଃ ।୫୧।
ସୋଽୟଂ ଦାରୁମୟଂ ଦେହଂ ସମାସ୍ଥାୟ ଜନାର୍ଦ୍ଦନଃ ।
ଅନୁଗ୍ରହୀତୁଂ ତ୍ୱାଂ ଭୂପ ପ୍ରତ୍ୟକ୍ଷତ୍ୱମୁପାଗତଃ ।୫୨।
ତଦେନଂ ଧରଣୀନାଥ ସ୍ତୁହି କାରୁଣ୍ୟସାଗରମ୍ ।
ଦଦାତି ସଂସ୍ତୁତଃ କାମାନ୍ ସର୍ବାନ୍ ନୃପ ମନୋଗତାନ୍ ।୫୩।

ଇତି ଶ୍ରୀ ସ୍କାନ୍ଦେ ବିଷ୍ଣୁଦାରୁମୟମୂର୍ତ୍ତ୍ୟାବିର୍ଭାବୋ
ନାମୈକୋନବିଂଶୋଽଧ୍ୟାୟଃ ।୧୯।

---

ଲାଗିଲେ ଏବଂ କୃତାଞ୍ଜଳିପୁଟରେ ନିଶ୍ଚଳ ଭାବ ନେଇ ସମ୍ମୁଖରେ ଅବସ୍ଥାନ କଲେ । ତଦନନ୍ତର ମୁନିବର ନାରଦ ସହାସ୍ୟ ମୁଖରେ କ୍ଷିତିପାଳଙ୍କୁ କହିଲେ, ହେ ନୃପଶାର୍ଦ୍ଦୂଳ ! ଆପଣ ଯେ- ନିମିତ୍ତ ଶ୍ରମ ସ୍ୱୀକାର କରିଥିଲେ, ବର୍ତ୍ତମାନ ତାହା ଆପଣଙ୍କର ପ୍ରତ୍ୟକ୍ଷ ହୋଇଅଛି । ଏଣୁ ଆପଣ ହିଁ ଏହି ଧରାଧାମରେ ଏକମାତ୍ର ଭାଗ୍ୟଧର । ଜଗନ୍ନାଥଙ୍କୁ ଆପଣ ଦର୍ଶନ କରନ୍ତୁ । ଏହାଙ୍କର ନୟନ ଶ୍ୱେତଚନ୍ଦ୍ର ସଦୃଶ ଏବଂ ଆକର୍ଣ୍ଣ ଅାୟତ । ଏ ଭକ୍ତମାନଙ୍କ ପ୍ରତି ଦୟାର ସାଗର । ଏହି ଶ୍ରୀହରି ସକଳ ଜ୍ଞାନର ସାଗର ଅଟନ୍ତି । ଯାହାଙ୍କ ଦର୍ଶନ ନିମନ୍ତେ ଯୋଗିବୃନ୍ଦ ସଂଯତ ଅନ୍ତଃ- କରଣରେ ନିତ୍ୟ ଯତ୍ନ କରୁଅଛନ୍ତି, ସେହି ଜନାର୍ଦ୍ଦନ ଦାରୁମୟ ଦେହ ଅବଲମ୍ବନ କରି ତୁମ୍ଭଙ୍କୁ ଅନୁଗ୍ରହ କରିବା ନିମନ୍ତେ ଦର୍ଶନ ଦେଇଅଛନ୍ତି । ୫୨ । ଅତଏବ ହେ ଧରଣୀନାଥ ! ଏହି କାରୁଣ୍ୟ ସାଗରଙ୍କୁ ସ୍ତବ କର । ଏହି ପ୍ରଭୁ ସ୍ତବାଦି ଦ୍ୱାରା ଉପାସିତ ହେଲେ ସକଳ ମନୋଗତ କାମନା ହିଁ ସମ୍ପନ୍ନ କରି- ଦିଅନ୍ତି । ୫୩ ।   ॥ ଊନବିଂଶ ଅଧ୍ୟାୟ ସମାପ୍ତ ॥

## ବିଂଶୋଽଧ୍ୟାୟଃ

ଜୈମିନିରୁବାଚ

ଇତ୍ଥଂ ପ୍ରବୋଧିତସ୍ତେନ ନାରଦେନ କ୍ଷିତୀଶ୍ୱରଃ ।
ତୁଷ୍ଟାବ ଜଗତାଂ ନାଥଂ ବଚୋଭିଃ କରୁଣାଦ୍ଭୁତମ୍ ।୧।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ତ୍ୱଦଙ୍ଘ୍ରିପାଥୋଜଯୁଗଂ ମୁରାରେ ନୋପାସିତଂ ଜନ୍ମସୁ ପୂର୍ବକେଷୁ ।
ତତ୍କର୍ମଣା ଦାରୁଣପାକଭୀତଂ ଦୀନଂ ପରିତ୍ରାହି କୃପାମ୍ବୁଧେ ମାମ୍ ।୨।
କ୍ୱ ନିର୍ମଳଂ ତ୍ୱଚ୍ଚରଣାବ୍ଜଯୁଗ୍ମଂ ବିରିଞ୍ଚିରୁଦ୍ରେନ୍ଦ୍ର କିରୀଟମଗ୍ନମ୍ ।
କ୍ୱାହଂ କୃତାନ୍ତଃ ଶକୃଦସୃ ମାଂସ ମଜ୍ଜାସ୍ଥିସଙ୍ଘୈଃ ପିହିତସ୍ତ୍ୱଗସ୍ରୈ ।୩।
ଅସାରସଂସାରପରିଭ୍ରମେଣ ଶ୍ରମାତୁରସ୍ତ୍ୱାଂ କଥମୀଶ ଜାନେ ।
ଜାନନ୍ତୁ ତେ ତ୍ୱାଂ ଖଳୁ ଦେବଦେବ
ଯେଷାଂ ଭବୋ ଦୁଃଖଭବପ୍ରକାଶଃ ।୪।

---

## ବିଂଶ ଅଧ୍ୟାୟ

ଜୈମିନି କହିଲେ—କ୍ଷିତିପତି ନାରଦଙ୍କ ଦ୍ୱାରା ଏହି ଭାବରେ ପ୍ରବୋଧିତ ହୋଇ ସ୍ତୁତି ବାକ୍ୟରେ ସେହି କରୁଣାମୟ ଜଗନ୍ନାଥଙ୍କୁ ସ୍ତବ କରିବାକୁ ଲାଗିଲେ ।୧। ରଜା ଇନ୍ଦ୍ରଦ୍ୟୁମ୍ନ କହିଲେ—ହେ ମୁରାରେ ! ମୁଁ ଯେ ପୂର୍ବ ଜନ୍ମରେ ଆପଣଙ୍କର ଏହି ଚରଣ ପଦ୍ମ-ଯୁଗଳର ଉପାସନା କରିନାହିଁ, ବର୍ତ୍ତମାନ ସେହି କର୍ମଫଳରେ ମୁଁ ଦୀନ ଓ ନିଦାରୁଣ ଦୁର୍ବିପାକ ଭୟରେ ଭୀତ ହୋଇଅଛି । ଅତଏବ ହେ କୃପାମ୍ବୁଧେ ! ମୋତେ ପରିତ୍ରାଣ କରନ୍ତୁ । ୨ । ବ୍ରହ୍ମା, ରୁଦ୍ର ଓ ଇନ୍ଦ୍ରଙ୍କ କିରୀଟସ୍ପର୍ଶୀ ଆପଣଙ୍କ ସୁନିର୍ମଳ ପାଦପଦ୍ମ ବା କେଉଁଠାରେ ଏବଂ ବିଷ୍ଠା, ରକ୍ତ, ମାଂସ, ଚର୍ମ, ଅସ୍ଥିମୟ ଅତି ଦୀନ ମୁଁ କେଉଁଠାରେ ? ଅର୍ଥାତ୍ ମାଦୃଶ ହୀନଭାଗ୍ୟ ପକ୍ଷରେ ଆପଣଙ୍କ ପାଦପଦ୍ମ ଅତି ଦୁର୍ଲ୍ଲଭ । ୩ । ହେ ଈଶ୍ୱର ! ମୁଁ ଅସାର ସଂସାରରେ ଭ୍ରମଣ କରି ଶ୍ରାନ୍ତ ହୋଇଛି । ଏହି କ୍ଲେଶ ସହ୍ୟ କରିପାରୁ ନାହିଁ । ଏଣୁ ଆପଣଙ୍କୁ

ପ୍ରଭୋ ମୟା ଦୁଃଖମନେକଜନ୍ମପାପାର୍ଜିତଂ ଭୁକ୍ତମନେକଧାବମ୍ ।
ଶୁଭାର୍ଜିତୋ ଯଃ ସୁଖଲେଶଭାବୋ ନଦର୍ଶନଂ ଯନ୍ମଧୁଯୁକ୍ତତିକ୍ତେ ।୫।
ଯଦେବ ସୌଖ୍ୟାନୁଭବାୟ ଦେବ କର୍ମାର୍ଜିତୋ ମେ ବିଷୟୋପଭୋଗଃ ।
ସ ଏବ ଦୁଃଖଂ ପରିଣାମତୋ ମେ ନ ମଦ୍ ବିଧୋ
ଦୁଃଖଜନୋଽସ୍ତି ଗୃନ୍ୟଃ ।୬।
ବିଭୋ ଯଦି ତ୍ୱାଂ ମନସାପି ପୂର୍ବମୁପାସ୍ମମନ୍ୟଦ୍ବିଷୟେଷ୍ଟଶୋଽହମ୍ ।
କଥଂ ତଦା ଲପ୍ସ୍ୟମନେକଜନ୍ମ ପୁନଃପୁନର୍ଭୋଗ୍ୟମଶେଷଦୁଃଖମ୍ ।୭।
ବଭୂବୁଦାସଶ୍ଚପିତୃତ୍ୱ ପୁତ୍ରସ୍ୟ ପ୍ରଭୁତ୍ୱମାତୃତ୍ୱଧନତ୍ୱଭାବୈଃ ।
ବନ୍ଧ୍ୟତ୍ୱହଂସତ୍ୱ ପତିତ୍ୱଜାୟାଭାବୈଶ୍ଚ ତିର୍ଯ୍ୟକତ୍ୱସୁରାଦିଭାବୈଃ ।୮।

---

କିପରି ଜାଣିବି ? ଆପଣଙ୍କୁ ଜାଣିବାକୁ ହେଲେ ପ୍ରଥମେ ଅନେକ କ୍ଲେଶ ସହ୍ୟ କରିବାକୁ ହୁଏ । ତାହା ମୁଁ କିପରି ପାରିବି ? ଯେଉଁମାନେ ସଂସାର ଦୁଃଖରାଶି ସହ୍ୟ କରିବାକୁ ସକ୍ଷମ, କାହିଁରୁ ଶ୍ରାନ୍ତ ବୋଧ କରନ୍ତି ନାହିଁ, ହେ ଦେବଦେବ ! ତାଦୃଶ କଠୋର ଅଧ୍ୟବସାୟଶାଳୀ ବ୍ୟକ୍ତିମାନେ ହିଁ ଆପଣଙ୍କୁ ଜାଣିବାରେ ସକ୍ଷମ ।୪। ହେ ପ୍ରଭୋ ! ମୁଁ ଅନେକ ଜନ୍ମାର୍ଜିତ ପାପରେ ଅନେକ ପ୍ରକାର ଦୁଃଖ ଭୋଗ କରିଅଛି । ମଧୁଯୁକ୍ତ ତିକ୍ତରେ ମଧୁର ଆସ୍ୱାଦନ କଲା ପରି ଜନ୍ମାନ୍ତରୀଣ ଶୁଭ କର୍ମ ଫଳରେ ଯାହାକିଛି ସୁଖ ଅନୁଭବ କରିଅଛି ।୫। ହେ ଦେବ ! ସୁଖଭୋଗ ନିମନ୍ତେ ଅର୍ଜନ ଯାହାକିଛି ପୁଣ୍ୟ ଥିଲା, ଉତ୍କଟ ପାପ ପ୍ରଭାବରେ ସମସ୍ତ ମୋ ପକ୍ଷରେ ପରିଣାମ ଦୁଃଖମୟ ହୋଇଛି ।୬। ହେ ପ୍ରଭୋ ! ଅନ୍ୟ ବିଷୟରେ ଆସକ୍ତ ରହି, ଯଦି ମନରେ ଆପଣଙ୍କର ଉପାସନା କରିଥାଆନ୍ତି, ତାହାହେଲେ ଅଶେଷ ଦୁଃଖଭୋଗ କରିବା କିମ୍ବା ବହୁ ଜନ୍ମ ଲାଭ କରିବାକୁ ପଡ଼ିନଥାନ୍ତା ।୭। ହେ ମୁରାରେ ! ମୁଁ ଏହି ସଂସାର ଅରଣ୍ୟରେ କେତେବେଳେ ପିତା ଓ କେତେବେଳେ ପୁତ୍ର, କେବେ ବା ପ୍ରଭୁ, କେବେ ବା ଦାସ, କେତେବେଳେ ମାତା ଓ କେବେ ପତି, କେବେ ଜାୟା, କେତେବେଳେ ବନ୍ଧ୍ୟା, କେବେ ହଂସ, କେବେ ତିର୍ଯ୍ୟକ୍ ଜାତି, କେତେବେଳେ ମଧ୍ୟ ଦେବତା ଇତ୍ୟାଦି ଉଚ୍ଚନୀଚ ନାନା ଭାବରେ ଭ୍ରମଣ କରି କେତେ ଅବସ୍ଥା ଅନୁଭବ କରୁଅଛି । କେତେ କଷ୍ଟ

ମାଦୃଗ୍ଭିର୍ଦୁର୍ଲଭଂ ବନ୍ଧୁଶଃ ସକୃଦ୍‌ବା ଭଗାଙ୍ଗନେଽପି ନ ଲୁଠତାନୁଭୂତମ୍ ।
ନ ବା ମୂସରେ ତବ ପାଦପଦ୍ମ ଦୃଷ୍ଟାଭବମ୍ୟେଷ୍ଟଫଳଂ ହ୍ୟ ଚେତଃ ।୯।
କୋଷଂ ବଳଂ ଚୈତଦନେକପୃଥ୍ୱୀ ଧନୈର୍ବୃତଂ ଯୌବନରୂପରୂପାଃ
ମନୋଽନୁକୂଲାଃ ଶତଶଃ ସ୍ତ୍ରିୟଶ୍ଚ ନିଷ୍କଣ୍ଟକଂ ମେ ନୃପମଣ୍ଡଳଞ୍ଚ ।୧୦।
ସାମାନ୍ୟତା ଗୃପ ଭବେ ମଦ୍ୱନ୍ନୁ ତ୍ୱଂ ଜ୍ଞାନହୀନସ୍ୟ ପଶୋରିବାସ୍ମମ୍ ।
ଭବାବତାରଂ କୁରୁନେ କୃପାବ୍ଧେ ସଦୈବ ତତେ ଦିତଶେଷଦୟେ ଗଃ ।୧୧।
ଦୀନାନୁକମ୍ପିନ୍ କରୁଣେ ବିମୁକ୍ତିଃ କୃତା ବିଭୋ ତ୍ୱତ୍ସ୍ମୃତିମାତ୍ରକେଣ ।
ଭ୍ରାନ୍ତଂ ଘଟୀଯନ୍ତ୍ରବଦତ୍ର ନାଥ ମାଂ ତାତୁମର୍ହସ୍ୟନୁକମ୍ପୟା ବା ।୧୨।
ନ ମେ ତ୍ୱଦନ୍ୟଃ ଖଳୁ ବନ୍ଧୁରସ୍ତି ପ୍ରବାହବିଭ୍ରଷ୍ଟତରୋରିବାତ୍ର ।
ପାପୀୟସୀ ବୁଦ୍ଧିରୁପୈତଶ୍ରୀଚା ସ୍ନେହାନୁବନ୍ଧା ବିଷୟେଽତିଭେଦ୍ୟା ।୧୩।

---

ପାଉଛି । ଆପଣଙ୍କ ପାଦପଦ୍ମରୁ ଦୂରେଇ ଯାଇଥିବାରୁ ଯେ ଏପର୍ଯ୍ୟନ୍ତ କଷ୍ଟ ପାଇଅଛି, ତାହା ଦିନକ ପାଇଁ ହେଲେ ବୁଝିପାରୁ-ନାହିଁ । ହେ ଦେବ ! ମୁଁ ଆପଣଙ୍କୁ ଜାଣେନାହିଁ, କେବଳ ମତ୍ପ୍ରଭୃତି ଏହି ସମସ୍ତ କୋଷ ବଳ ସସାଗର ପୃଥିବୀ, ରାଜ୍ୟ, ରୂପ, ଯୌବନ, ମନ-ଅନୁକୂଳ ଶତଶତ ସୁନ୍ଦରୀ ଭୋଗ କରୁଅଛି । ଏହି ନିଷ୍କଣ୍ଟକ ସାମ୍ରାଜ୍ୟ ଆଜି ପଶୁର କରଗତ । ପଶୁର ସ୍କନ୍ଧ ଦେଶରେ ଏଭଳି ଗୁରୁଭାର ଉଚିତ ନୁହେଁ । ହେ କୃପାସାଗର, ଆପଣ ଦୟା କରି ଏଭଳି ଗୁରୁଭାରକୁ ଲାଘବ କରନ୍ତୁ । ଏଥିରେ କେବଳ ମୋର କଷ୍ଟ ଭୋଗ ହେଉଅଛି ।୧୧। ହେ ବିଭୋ ! ହେ ଦୀନଦୟାଳୁ ! ଆପଣଙ୍କୁ ସ୍ମରଣ କରିବା ମାତ୍ରେ ହସ୍ତୀର ବନ୍ଧନ ଆପଣ ମୋଚନ କରି ଦେଇଛନ୍ତି । ହେ ନାଥ ! ମୁଁ ଘଟୀଯନ୍ତ୍ର ନ୍ୟାୟରେ କେତେବେଳେ ଉର୍ଦ୍ଧ୍ୱକୁ ଉଠୁଥିବି; କେତେବେଳେ ବା ଅଧଃପତିତ ହେଉଅଛି । ଦୟାକରି ମୋତେ ପରିତ୍ରାଣ କରନ୍ତୁ ।୧୨। ଜଳପ୍ରବାହ-ପୀଡ଼ିତ ବୃକ୍ଷ ପରି ମୁଁ ଏ ସଂସାର-ସ୍ରୋତରେ ଭାସମାନ । ଆପଣଙ୍କ ଭିନ୍ନ ମୋର ଅନ୍ୟ କେହି ବନ୍ଧୁ ନାହାନ୍ତି । ବିଷୟରେ ମୋର ଘୋର ଅନୁରାଗ । ସଂସାର ବନ୍ଧନ ବଡ଼ ଦୁର୍ଭେଦ୍ୟ ହୋଇ ଉଠିଛି । ପାପୀୟସୀ ବୁଦ୍ଧି ସେହି ଦିଗରେ ଆନୁକୂଲ୍ୟ କରୁଅଛି ।୧୩।

ଅହର୍ନିଶଂ ମେ ତବପାଦପଦ୍ମାନ୍ନାପୈତୁ ମତ୍ପ୍ରାର୍ଥିତମେତଦେବ ।
ତ୍ୱାଂ ସଚ୍ଚିଦାନନ୍ଦସୁମୂର୍ତ୍ତିପିଣ୍ଡଂ ପ୍ରାପ୍ତାସ୍ତୁ ଯେ ଜନ୍ମସହସ୍ରଭାଗ୍ୟୈଃ ।୧୪।
କିଂ ତେ ନ ପଶ୍ୟନ୍ତି ଲବୈକସୌଖ୍ୟମନେକଦୁଃଖଂ ବିଷୟେନ୍ଦ୍ରଜାଲମ୍ ।
କ୍ୱ ବନ୍ଧନଂ କର୍ମଭିରଷ୍ଟକ୍ଲେଶଦୁଃଖାକରଗ୍ରନ୍ଥିଶତୈରଭେଦ୍ୟମ୍ ।୧୫।
ଅନନ୍ତମାଦ୍ୟନ୍ତବିହୀନମେକମ୍ ନନ୍ଦଦଂ କ୍ୱତ୍ ପଦପଙ୍କଜଂ କ୍ୱ ।
ମାୟାମ୍ବୁଧୌ ତେ ମମତା ଭ୍ରମୌ ଚ କୁକର୍ମନକ୍ରେ ସ୍ଥିତଗଭମଧ୍ୟେ ।୧୬।
ଜଗତ୍ପ୍ରଭୋ ମାଂ ପତିତଂ କୃପାର୍ଦ୍ରକଟାକ୍ଷପାତେନ ନୟାଦ୍ୟ ତୀରମ୍ ।
ସ୍ୱକାର୍ଯ୍ୟସମ୍ପାଦନାଶ୍ରିତାନାଂ ସମ୍ପାଦନାୟୈବ ବିଧେରଜସ୍ରମ୍ ।୧୭।

---

ଆପଣଙ୍କ ପାଦପଦ୍ମରେ କିଛି ହେଲେ ଆସକ୍ତ ହେଉନାହିଁ, ଯହିଁରେ ମୋର ଏହି ପାପୀୟସୀ ବୁଦ୍ଧି ସର୍ବଦା ଆପଣଙ୍କ ପାଦପଦ୍ମରେ ଲୀନ ରହେ, କେତେବେଳେ ହେଲେ ତହିଁରୁ ଚ୍ୟୁତ ନହୁଏ—ଏହା ହିଁ ମୋର ଅନ୍ତିମ ପ୍ରାର୍ଥନା । ଯେଉଁମାନେ ସହସ୍ର ଜନ୍ମ ସଞ୍ଚିତ ସୌଭାଗ୍ୟ ବଳରେ ସଚ୍ଚିଦାନନ୍ଦ ସାଗର ରୂପୀ ଆପଣଙ୍କୁ ପ୍ରାପ୍ତ ହୋଇଅଛନ୍ତି; ସେମାନେ ସାମାନ୍ୟ ସୁଖଯୁକ୍ତ କେବଳ ଦୁଃଖମୟ ବିଷୟରୂପ ଇନ୍ଦ୍ରଜାଲ ଜଗତରେ ଦୃଷ୍ଟିପାତ କରନ୍ତି ନାହିଁ । ଯହିଁରେ ସୁଖ ଭାଗ ଅତି ଅଳ୍ପ; କେବଳ ଦୁଃଖକର ଶତଗ୍ରନ୍ଥିଯୁକ୍ତ ଦୁର୍ଭେଦ୍ୟ, ଏପରି କର୍ମବନ୍ଧନ ହିଁ ବା କେଉଁଠାରେ ? ପ୍ରଚୁର ଆନନ୍ଦ ଅନାଦି ଅନନ୍ତ ଆପଣଙ୍କ ଶ୍ରୀଚରଣାରବିନ୍ଦ ବା କେଉଁଠାରେ ? ମୁଁ ମମତା ରୂପକ ଆବର୍ତ୍ତ-ଯୁକ୍ତ, କୁକର୍ମ ରୂପ ନକ୍ର ସଙ୍କୁଳ ଭବଙ୍କର ମାୟାସାଗରରେ ପତିତ ହୋଇଅଛି ।୧୬। ହେ ଦେବ ! ମୁଁ ଆଶ୍ରୟ ବିହୀନ, କୃପାକଟାକ୍ଷ ନିକ୍ଷେପ କରି ଆଜି ମୋତେ ତୀର ଭାଗକୁ ନେଇ ଯାଆନ୍ତୁ । ଯେଉଁମାନେ ନିଜ କାର୍ଯ୍ୟ ସାଧନ ନିମନ୍ତେ ମୋର ଆଶ୍ରୟ ଗ୍ରହଣ କରିଅଛନ୍ତି, ନିଜର ହିତ ସମ୍ପର୍କରେ ଲକ୍ଷ୍ୟ ରଖନ୍ତି ନାହିଁ, କେବଳ ସେମାନଙ୍କ କାର୍ଯ୍ୟ ସାଧନ ନିମନ୍ତେ ମୁଁ ଭ୍ରମଣ କରୁଅଛି ।୧୭। ହେ ସୁଭବଦୟାଳୋ ! ମୋତେ ରକ୍ଷା କରନ୍ତୁ ।

ଭ୍ରାମ୍ୟନ୍ତମାସ୍ମୀସ୍ଥିତଂ ବିସୃଜ୍ୟ ମାଂ ପାହି ମୂଢଂ ସହଜାନୁକମ୍ପିନ୍ ।
କ୍ଷୁଦ୍ରାସୁ କାର୍ଯ୍ୟାସୁ ବହୁ ଭ୍ରମନ୍ତମପ୍ରାପ୍ୟ ମୂଳଂ ପରମେଶ୍ୱରଂ ତ୍ୱାମ୍ ।୧୮।
ଅୟ୍ୟାସପାତ୍ରଂ ପରମଂ ସୁଦୀନଂ ମାଂ ପାହି ବିଷ୍ଣୋ ଜଗଦେକବନ୍ଧ୍ୟ ।
ବେଦାନ୍ତବେଦ୍ୟାବ୍ୟୟବିଶ୍ୱନାଥ ତ୍ୱମୀଶିଷେ ହନ୍ତୁମଘୌଘରାଶୀନ୍ ।୧୯।
ତଂ ତ୍ୱାଂ ପରିତ୍ୟଜ୍ୟ ସୁଖୈକହେତୁଂ କ୍ଷୁଦ୍ରାଶୟଂ ମାଂ ପରିପାହି ବିଷ୍ଣୋ ।
ପ୍ରସୁପ୍ତ ଏବୋଽଖିଲଭୂତସଙ୍ଘଶ୍ଚତୁର୍ବିଧୋ ଯତ୍କୃତମୋହରଜ୍ଜୌ ।୨୦।
ତ୍ୱଜ୍ଜ୍ଞାନଭାନୂଦୟମେତ୍ୟ ଜନ୍ତେ ପ୍ରବୋଧତେ ତ୍ୱାଂ ଶରଣଂ ପ୍ରପଦ୍ୟେ ।୨୧।
ତ୍ୱମେକ ଏବାଖିଲଲୋକକର୍ତ୍ତା ଫଣାସହସ୍ରୈଃ ପରିଣିତମୂର୍ତ୍ତିଃ ।
ପର୍ଯ୍ୟାପ୍ତବୃତ୍ତ୍ୟା ବଳିନଂ ବରିଷ୍ଠଂ ତ୍ୱାମୀଶିତାରଂ ଶରଣଂ ପ୍ରପଦ୍ୟେ ।୨୨।

---

ହେ ପରମେଶ୍ୱର ! ଆପଣ ଉଦ୍ଧାରର ମୂଳ ସ୍ୱରୂପ । ମୁଁ ଆପଣଙ୍କୁ ନ ପାଇ କ୍ଷୁଦ୍ର କାର୍ଯ୍ୟ ନିମନ୍ତେ ଭ୍ରମଣ କରି ବୃଥା କଷ୍ଟ ପାଉଅଛି । ହେ ଜଗଦ୍‌ବନ୍ଦନୀୟ ! ହେ ବିଷ୍ଣୋ ! ମୁଁ ଅତି ଦୀନ, ମୋତେ ରକ୍ଷା କରନ୍ତୁ । ହେ ବେଦାନ୍ତବେଦ୍ୟ ଅବ୍ୟୟ ବିଶ୍ୱନାଥ ! ଆପଣ ପାପରାଶି ଦୂର କରିବାକୁ ଏକାନ୍ତ ସମର୍ଥ ।୧୯। ହେ ବିଷ୍ଣୋ ! ମୁଁ କ୍ଷୁଦ୍ରାତି କ୍ଷୁଦ୍ରାଶୟ । ଉକ୍ତ କାରଣରୁ ଆପଣଙ୍କୁ ପରିତ୍ୟାଗ କରି ସାମାନ୍ୟ ଐହିକ ସୁଖ ନିମନ୍ତେ ଭ୍ରମଣ କରୁଅଛି । ମୋତେ ରକ୍ଷା କରନ୍ତୁ । ଏହି ଚତୁର୍ବିଧ ନିଖିଳ ପ୍ରାଣିବର୍ଗ ଆପଣଙ୍କ କୃତ ମୋହବନ୍ଧରେ ନିଦ୍ରିତ । କିନ୍ତୁ ଆପଣଙ୍କ ସ୍ୱରୂପ ଜ୍ଞାନ ରୂପ ସୂର୍ଯ୍ୟୋଦୟ ପ୍ରାପ୍ତ ହେଲେ ସେମାନେ ଉଦ୍‌ବୁଦ୍ଧ ହୁଅନ୍ତି ।୨୧। ହେ ବଳଦେବ ! ଆପଣ ଅଖିଳ ଲୋକଙ୍କ ଉପରେ କର୍ତ୍ତୃତ୍ୱ ବିସ୍ତାର କରିଅଛନ୍ତି । ଆପଣଙ୍କର ମୂର୍ତ୍ତି ସହସ୍ର ଫଣାଦ୍ୱାରା ଲକ୍ଷିତ ହୋଇ ଶୋଭା ପାଉଅଛି । ଆପଣ ସମସ୍ତ ବଳବାନ ବ୍ୟକ୍ତିଙ୍କ ଭିତରେ ଶ୍ରେଷ୍ଠ । ଏହି କାରଣରୁ ନାମ ପର୍ଯ୍ୟାୟରେ ବଳଦେବ ଆଖ୍ୟା ପ୍ରାପ୍ତ ହୋଇଅଛନ୍ତି ।୨୨।

ଯସ୍ୟା ସୃଜସ୍ୟସ୍ରି ଜଗନ୍ତି ନାଥ ବକ୍ଷଃସରୋଜା ସନସ୍ଥା ସ୍ୱଶକ୍ତ୍ୟା ।
ତାଂ ଭଦ୍ରରୂପାଂ ଜଗଦାଶ୍ରୟାଂ ତେ
ଦେବାରଣିଂ ପାଦଯୁଗେ ନତୋଽସ୍ମି ।୨୩।
ଯଦଂଶୁଜାଳପ୍ରତିବମ୍ବମେତଦ ବ୍ରହ୍ମାଣ୍ଡଜାଲଂ କରସଙ୍ଗି ନାଥ ।
ସୁଦର୍ଶନଂ ଦୈତ୍ୟବଲସ୍ୟ ହନ୍ତୃ
ଚକ୍ରାଭିଧଂ ତ୍ୱାଂ ପ୍ରଣତଃ ସୁଦର୍ଶନମ୍ ।୨୪।

ଜୈମିନିରୁବାଚ

ସ୍ତୁତ୍ୱେତ୍ୟଂ ନୃପତିଶ୍ରେଷ୍ଠଃ ସାଷ୍ଟାଙ୍ଗ ପ୍ରଣନାମ ସଃ ।
ପରିତ୍ରାହି ଜଗନ୍ନାଥ ମଗ୍ନଂ ସଂସାରସାଗରେ ।
ଅନାଥବନ୍ଧୋ କୃପୟା ଦୀନଂ ମାଂ ତାପସଙ୍କୁଲମ୍ ।୨୫।

---

ଆପଣ ଈଶ୍ୱର । ଏଣୁ ଆପଣଙ୍କ ଶରଣାପନ୍ନ ହେଲି । ହେ ନାଥ ! ଆପଣ ନିଜ ଶକ୍ତିଦ୍ୱାରା ଏହି ଜଗତ ସୃଷ୍ଟି କରୁଅଛନ୍ତି । ଯାହାଙ୍କୁ ନିଜ ହୃଦୟ ପଦ୍ମ ଆସନ ରୂପରେ ଅର୍ପଣ କରିଅଛି, ସେ ଦେବତାମାନଙ୍କ ଉତ୍ପତ୍ତି ବିଷୟରେ ଅରଣି ସ୍ୱରୂପ ଓ ଅଖିଳ ଜଗତର ଆଶ୍ରୟ । ମୁଁ ଆପଣଙ୍କର ସେହି ଭଦ୍ରରୂପା ସୁଭଦ୍ରା ଦେବୀଙ୍କ ପାଦପଦ୍ମରେ ପ୍ରଣାମ କରୁଅଛି । ହେ ନାଥ ! ଯାହାଙ୍କ କିରଣ ଜାଳର ପ୍ରତିବିମ୍ବ ସ୍ୱରୂପ ଏହି ବ୍ରହ୍ମାଣ୍ଡ ପରିଦୃଶ୍ୟ ହେଉଅଛି ଓ ଯାହା ସର୍ବଦା ହିଁ ନାଥଙ୍କ କର କମଳରେ ସଂସର୍ଗ କରୁଅଛନ୍ତି, ଯାହା ଦୁର୍ଦ୍ଦାନ୍ତ ଦୈତ୍ୟମାନଙ୍କ ବଳ ହରଣ କରିଥାନ୍ତି ଏବଂ ଅତ୍ୟନ୍ତ ସୁ ଦର୍ଶନ ବୋଲି ସୁଦର୍ଶନ ଚକ୍ର ଆଖ୍ୟା ଲଭ କରିଅଛନ୍ତି, ମୁଁ ସେହି ଚକ୍ରଙ୍କୁ ପ୍ରଣାମ କରୁଅଛି ।୨୪। ଜୈମିନି କହିଲେ— ସେହି ନୃପଶ୍ରେଷ୍ଠ ଇନ୍ଦ୍ରଦ୍ୟୁମ୍ନ ଏହି ପ୍ରକାର ସ୍ତବ ପୂର୍ବକ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ, ହେ ଜଗନ୍ନାଥ ! ମୁଁ ଏହି ସଂସାର ସାଗରରେ ନିମଗ୍ନ ହୋଇଅଛି । ହେ ଅନାଥବନ୍ଧୋ ! ଏହି ତାପସଙ୍କୁଳ ଦୀନ ଜନଙ୍କୁ କୃପାକରି ପରିତ୍ରାଣ କରନ୍ତୁ ।୨୫।

ଅନ୍ୟେ ଚ ଯେ ତତ୍ର ନୃପାଃ ଶ୍ରୋତ୍ରିୟା ବେଦପାରଗାଃ ।୨୬।
ମୁନୟୋ ଦ୍ୱିଜାଃ କ୍ଷତ୍ରାଶ୍ଚ ବିଦ୍ୱାଂସୋ ବୈଶ୍ୟଜାତୟଃ ।୨୭।
ଅସ୍ତୁବନ୍ ପୁଣ୍ଡରୀକାକ୍ଷଂ ବଳିନଂ ଭଦ୍ରୟା ସହ ।
ସୂକ୍ତୈଃ ସ୍ତୋତ୍ରୈଃ ପୁରାଣୈଶ୍ଚ କବିତାଭିର୍ଯଥାଯଥମ୍ ।୨୮।
ତଥେନ୍ଦ୍ରଦ୍ୟୁମ୍ନଃ ସୋବାଚ ପୁରୋଧସମକଳ୍ମଷମ୍ ।
ପୂଜାର୍ଥଂ ବାସୁଦେବସ୍ୟ ଉପସ୍କରୋପସଂସ୍କୃତୌ ।
ସ୍ୱୟଂ ସ ନୃପତିଶ୍ରେଷ୍ଠଃ ପୂଜୟାମାସ ତାନ୍ କ୍ରମାତ୍ ।
ନାରଦସ୍ୟୋପଦେଶେନ ବିଧିନା ମନ୍ତ୍ରତସ୍ତଥା ।
ଦ୍ୱାଦଶାକ୍ଷରମନ୍ତ୍ରେଣ ବଳଭଦ୍ରମପୂଜୟତ୍ ।୨୯-୩୦।
ଯମୁପାସ୍ୟ ଧ୍ରୁବଃ ସ୍ଥାନଂ ପ୍ରାପ୍ତବାନୁତ୍ତମୋତ୍ତମମ୍ ।
ନସ୍ତୀପ୍ରସଙ୍ଗଂ ଯତ୍ସୂକ୍ତଂ ପାବନଂ ପୌରୁଷଂ ମହତ୍ ।
ତେନ ନାରାୟଣଂ ଭୂୟଃ ସ ପୂଜୟାମାସ ଭକ୍ତିତଃ ।
ଦେବ୍ୟାଃ ସୂକ୍ତେନ ଭଦ୍ରାଂ ତାଂ ସୌଦର୍ଶନ୍ୟା ସୁଦର୍ଶନମ୍ ।୩୧।

---

ସେ ସ୍ଥଳରେ ଅନ୍ୟାନ୍ୟ ଯେଉଁ ସମସ୍ତ ନରପତି ଓ ବେଦପାରଗ ଶ୍ରୋତ୍ରିୟ ବ୍ରାହ୍ମଣ, ମୁନିବର୍ଗ, ଦ୍ୱିଜବର୍ଗ, ବିଦ୍ୱାନ୍ କ୍ଷତ୍ରିୟ ଓ ବୈଶ୍ୟ ଜାତି ଥିଲେ; ସେମାନେ ସମସ୍ତେ ହିଁ ପୁଣ୍ଡରୀକାକ୍ଷ, ବଳଦେବ ଓ ସୁଭଦ୍ରା ଦେବଙ୍କୁ ସୂକ୍ତମନ୍ତ୍ର ଓ ପୁରାଣୋକ୍ତ ସ୍ତବସ୍ତୋତ୍ର ଦ୍ୱାରା ତଥା ନିଜ ନିଜ କବିତ୍ୱ ଅନୁସାରେ କବିତା ରଚନା କରି ତଦ୍ୱାରା ସ୍ତବ କରିବାକୁ ଲାଗିଲେ ।୨୮। ତଦନନ୍ତର ଇନ୍ଦ୍ରଦ୍ୟୁମ୍ନ ସଦାଚାର ସମ୍ପନ୍ନ ନିଜ ପୁରୋହିତଙ୍କୁ ବାସୁଦେବଙ୍କ ପୂଜା ନିମିତ୍ତ ଉପଚାର ଦ୍ରବ୍ୟ ସଂସ୍କାର କରିବାକୁ କହିଲେ ଏବଂ ନାରଦଙ୍କ ଉପଦେଶ କ୍ରମେ ନରପତି ସ୍ୱୟଂ ହିଁ ଯଥାବିଧି ବିଧାନରେ ମନ୍ତ୍ରାଦିପାଠ ପୂର୍ବକ ସେହି ଦେବତାମାନଙ୍କୁ ପୂଜା କରିବାକୁ ଲାଗିଲେ । ଶ୍ରୀବଳଦେବଙ୍କୁ "ଓଁ ନମୋ ଭଗବତେ ବାସୁଦେବାୟ" ଏହି ଦ୍ୱାଦଶାକ୍ଷର ମନ୍ତ୍ରଦ୍ୱାରା ପୂଜା କଲେ । ଉକ୍ତ ମନ୍ତ୍ରଦ୍ୱାରା ଉପାସନା କରି ଉତ୍ତାନପାଦ-ନନ୍ଦନ ଶ୍ରୀଧ୍ରୁବ ସର୍ବୋତ୍ତମ ସ୍ଥାନ ପ୍ରାପ୍ତ ହୋଇଥିଲେ ଏବଂ ଯେଉଁ ପୁରୁଷ ସୂକ୍ତ ମହତ୍ ଓ

ଯଥାସମୃଦ୍ଧି ଭକ୍ତ୍ୟା ତାନ୍ ପୂଜୟିତ୍ୱା ନୃପୋତ୍ତମଃ ।
ତତ୍ପ୍ରୀତ୍ୟୈ ଦ୍ୱିଜମୁଖ୍ୟେଭ୍ୟୋ ଦଦୌ ଦାନାନି ପାର୍ଥିବଃ ।୩୨।
ଅଶ୍ୱମେଧାଙ୍ଗଭୂତାଶ୍ଚ କୋଟିଶୋ ଗା ଦଦୌ ତଦା ।
ସ୍ୱଳଙ୍କୃତାଶ୍ଚାପି ତଥା ଦଦୌ ଗା ବହୁଦକ୍ଷିଣାଃ ।୩୩।
ତାସାଂ ଖୁରାଗ୍ରଖାତୋ ଯୋ ଗର୍ତ୍ତୋଽଭୂଦ୍ଦ୍ୱିଜସତ୍ତମାଃ ।
ଦାନାମ୍ବୁନା ସମଂ ପୂର୍ଣ୍ଣଂ ତୀର୍ଥମାସୀନ୍ମହାଫଳମ୍ ।
ତସ୍ମିନ୍ ସ୍ନାତ୍ୱା ପିତୃନ୍ ଦେବାନ୍ ସନ୍ତର୍ପ୍ୟ ବିଧିବନ୍ନରଃ ।
ଅଶ୍ୱମେଧସହସ୍ରସ୍ୟ ଫଳଂ ପ୍ରାପ୍ନୋତ୍ୟସଂଶୟମ୍ ।୩୪।
ନାମ୍ନା ଖ୍ୟାତଂ ସରସ୍ତଦ୍ଧି ଇନ୍ଦ୍ରଦ୍ୟୁମ୍ନସ୍ୟ ଭୂପତେଃ ।
ନିର୍ବାପ୍ୟ ତତ୍ର ପିଣ୍ଡାଂଶ୍ଚ ପିତୃନୁଦ୍ଦିଶ୍ୟ ମାନବଃ ।
କୁଳୈକବିଂଶମୁଦ୍ଧୃତ୍ୟ ବ୍ରହ୍ମଲୋକେ ମହୀୟତେ ।୩୫।

---

ପାବନ, ଯହିଁରେ ତିନବେଦର ପ୍ରସଙ୍ଗ ରହିଅଛି । ଭୂପତି ସେହି ମନ୍ତ୍ର ଦ୍ୱାରା ନାରାୟଣଙ୍କୁ ପୂଜାକଲେ । ଭଦ୍ରା ଦେବୀଙ୍କୁ ଦେବୀ ସୂକ୍ତ ମନ୍ତ୍ରରେ ଓ ସୁଦର୍ଶନ ଚକ୍ରଙ୍କୁ ସୌଦର୍ଶନ ସୂକ୍ତ ଦ୍ୱାରା ଉପାସନା କଲେ । ରାଜା ନିଜ ସମୃଦ୍ଧି ଅନୁସାରେ ଭକ୍ତି ସହିତ ପୂଜା ସମାପନ ଶେଷରେ ଦେବତାମାନଙ୍କ ପ୍ରୀତି ନିମିତ୍ତ ଶ୍ରେଷ୍ଠ ଶ୍ରେଷ୍ଠ ବ୍ରାହ୍ମଣମାନଙ୍କୁ ଦାନ କରିବାକୁ ଲାଗିଲେ । ଉକ୍ତ ସମୟରେ ଯେଉଁ ସମସ୍ତ ମହତ୍ ତୁଳା ପୁରୁଷ ଦାନର ବ୍ୟବସ୍ଥା ଥିଲା, ତାହା ଅଶ୍ୱମେଧ ଯଜ୍ଞର ଅଙ୍ଗୀଭୂତ କୋଟି କୋଟି ଗୋ-ସମୂହକୁ ଅଳଂକୃତ କରି ଭୂରି ଭୂରି ଦକ୍ଷିଣା ସହିତ ଦାନ କରିବାକୁ ଲାଗିଲେ । ହେ ଦ୍ୱିଜସତ୍ତମଗଣ ! ଏହି ଗୋରୁମାନଙ୍କର ଖୁରାଗ୍ର ଖନନ ଦ୍ୱାରା ଯେଉଁ ଗର୍ତ୍ତ ସୃଷ୍ଟି ହୁଏ, ତାହା ହିଁ ଦାନକାଳୀନ ହସ୍ତଚ୍ୟୁତ ଜଳରେ ପରିପୂର୍ଣ୍ଣ ହୋଇ ମହାଫଳଜନକ ଏକ ତୀର୍ଥରେ ପରିଣତ ହୋଇଅଛି । ଉକ୍ତ ତୀର୍ଥରେ ସ୍ନାନ, ପିତୃ ଓ ଦେବତାମାନଙ୍କ ତର୍ପଣ ଯଥାବିଧାନରେ ସମ୍ପାଦିତ ହେଲେ, ମନୁଷ୍ୟମାନେ ସହସ୍ର ଅଶ୍ୱମେଧ ଯଜ୍ଞର ଫଳଭାଗୀ ହୁଅନ୍ତି— ଏଥିରେ ସଂଶୟ ନାହିଁ ।୩୪। ଏହି ସରୋବର ଇନ୍ଦ୍ରଦ୍ୟୁମ୍ନ ନୃପତିଙ୍କ ନାମରେ ନାମିତ (ଇନ୍ଦ୍ରଦ୍ୟୁମ୍ନ ସରୋବର) ହୋଇଅଛି ।

ନାତଃ ପରତରଂ ତୀର୍ଥଂ ହୟମେଧାଙ୍ଗସମ୍ଭବାତ୍ ।
ଇନ୍ଦ୍ରଦ୍ୟୁମ୍ନସ୍ୟ ସରସଃ ସ୍ୟାଦ୍ ବା ତ୍ରିପଥଗା ସମା । ୩୬ ।
ତତଃ ପ୍ରାସାଦଘଟନାମୁପଚକ୍ରାମ ଭୂମିପଃ ।
ଶୁଭେ କାଲେ ସୁନକ୍ଷତ୍ରେ ଦୈବଜ୍ଞବିହିତେ ତତେ ।
ସୁମୁହୂର୍ତ୍ତେ ନାରଦାଦୀନ୍ ବ୍ରାହ୍ମଣାଗ୍ର୍ୟାନ ପ୍ରପୂଜ୍ୟ ଚ ।
ସ୍ୱସ୍ତି ବାଚଂ ଚ କର୍ମାଙ୍ଗଂ ବାଚୟିତ୍ୱା ନୃପୋତ୍ତମଃ ।
ଅର୍ଘ୍ୟଂ ଦଦୌ ଜଗନ୍ନାଥଂ ସ୍ମରନ୍ ପ୍ରାସାଦବେଶ୍ମନ । ୩୭ ।
ବସୁଧାଂ ପ୍ରାର୍ଥୟିତ୍ୱା ତୁ ସ୍ଥାନମାଚନ୍ଦ୍ରତାରକମ୍ ।
ଶିଳ୍ପିନଃ ପୂଜୟାମାସ ବାସ୍ତୁଯାଗପୁରଃସରମ୍ । ୩୮ ।

---

ମାନବଗଣ ସେହି ସ୍ଥଳରେ ପିତୃମାନଙ୍କ ଉଦ୍ଦେଶ୍ୟରେ ନେଇ ପିଣ୍ଡଦାନ କଲେ, କୁଳର ଏକବିଂଶତି ପୁରୁଷଙ୍କୁ ଉଦ୍ଧାର କରି ସ୍ୱୟଂ ବ୍ରହ୍ମଲୋକକୁ ଯାଇ ବହୁ ସମ୍ମାନ ପ୍ରାପ୍ତ ହୁଅନ୍ତି ।୩୫। ଏହି ଅଶ୍ୱମେଧ ଯଜ୍ଞସମ୍ଭୂତ ଇନ୍ଦ୍ରଦ୍ୟୁମ୍ନ ସରୋବରଠାରୁ ଶ୍ରେଷ୍ଠତମ ତୀର୍ଥ ଅନ୍ୟ କୌଣସିଠାରେ ନାହିଁ । ଏକମାତ୍ର ତ୍ରିପଥଗାମିନୀ ଗଙ୍ଗା ଏହା ସହିତ ଉପମା ହୋଇପାରେ ।୩୬। ତଦନନ୍ତର ନରପତି ଜଗନ୍ନାଥଙ୍କ ପ୍ରାସାଦ (ମନ୍ଦିର) ନିର୍ମାଣ କରିବାକୁ ଉପକ୍ରମ କଲେ । ପ୍ରଥମତଃ ଦୈବଜ୍ଞ ଦ୍ୱାରା ସୁନକ୍ଷତ୍ର, ସୁମୁହୂର୍ତ୍ତ-ବିଶିଷ୍ଟ ଶୁଭକାଳ ନିର୍ଣ୍ଣୟ ପୂର୍ବକ ନାରଦ ପ୍ରଭୃତି ବ୍ରାହ୍ମଣ ଶ୍ରେଷ୍ଠ-ମାନଙ୍କୁ ଅର୍ଚ୍ଚନା ଓ କର୍ମାଙ୍ଗ ସ୍ୱସ୍ତି ବାଚନ କରି ଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ ତାଙ୍କୁ ଉଦ୍ଦେଶ୍ୟ କରି ପ୍ରାସାଦ ଗୃହ ସ୍ଥଳରେ ଅର୍ଘ୍ୟ ପ୍ରଦାନ କଲେ ।୩୭। ସେତେବେଳେ ବସୁଧା ଦେବୀଙ୍କ ନିକଟରେ ଚନ୍ଦ୍ରସୂର୍ଯ୍ୟଙ୍କ ଅବସ୍ଥିତି କାଳ ଅର୍ଥାତ୍ ମହାପ୍ରଳୟ କାଳ ପର୍ଯ୍ୟନ୍ତ ସେହି ଗୃହ ସ୍ଥାନର ସୁରକ୍ଷା ପାଇଁ ବସୁଧା-ଦେବୀଙ୍କୁ ପ୍ରାର୍ଥନା କରିଥିଲେ ଏବଂ ବାସ୍ତୁ ଦୋଷ ଉପଶମ ପାଇଁ ବାସ୍ତୁଯାଗ କ୍ରିୟା ସମ୍ପାଦନ ପୂର୍ବକ ଶିଳ୍ପୀମାନଙ୍କୁ ପାରିତୋଷି-କାଦି ଦ୍ୱାରା ସନ୍ତୁଷ୍ଟ କଲେ ।୩୮।

ମହୋତ୍ସବଂ ତଦା ଚକ୍ରେ ଗୀତବାଦ୍ୟୈଃ ପଭୂତକୈଃ ।
ଦୀନାନାଥବିପନ୍ନେଭ୍ୟୋ ଦଦୌ ବସ୍ତୁ ଯଥେପସିତମ୍ । ୩୯ ।
ରାଜ୍ଞୋ ବିସର୍ଜ୍ଜୟାମାସ ବହୁମାନପୁରଃସରମ୍ ।
କୃତାର୍ଥାନବତାରଂ ତଂ ହରେର୍ଦ୍ଦୃଷ୍ଟ୍ବା ହୃତାଂହସଃ । ୪୦ ।

ତତଃ ସ କୋଟିଶୋ ବିତ୍ତଂ ଦଦୌ ପାଷାଣଦାରଣେ । ୪୧ ।

ଆହୃତା ବହୁଦେଶେଭ୍ୟୋ ଭୂଷଦଂ ପାର୍ଥିବୋତ୍ତମଃ ।
ଉବାଚେଦଂ ମୁଦା ଯୁକ୍ତଃ ସର୍ବାସ୍ତାଂ ପୃଥ୍ୱୀଶ୍ୱରଃ ।
ଅଷ୍ଟାଦଶଭ୍ୟୋ ଦ୍ୱୀପେଭ୍ୟୋ ଯନ୍ମୟା ପୌରୁଷାର୍ଜ୍ଜିତମ୍ ।
ତତ୍ସର୍ବଂ ଜଗଦୀଶସ୍ୟ ପ୍ରାସାଦାସ୍ୟୋପବର୍ଜ୍ଜିତମ୍ । ୪୨ ।

---

ସେତେବେଳେ ଉକ୍ତ ସ୍ଥାନରେ ପ୍ରଭୂତ ଗୀତ-ବାଦ୍ୟାଦି ଦ୍ୱାରା ମହାମହୋତ୍ସବ ଉପସ୍ଥିତ ହୋଇଥିଲା, ନରପତି ଦୀନ-ଅନାଥ ଓ ବିପନ୍ନ ପ୍ରଭୃତି ଲୋକମାନଙ୍କୁ ସେମାନଙ୍କ ଅଭିଳାଷ ଅନୁସାରେ ବହୁ ବସ୍ତୁ ପ୍ରଦାନ କଲେ ।୩୯। ବିଭିନ୍ନ ପ୍ରଦେଶରୁ ଆଗତ ଯେଉଁସବୁ ରାଜଗଣ ସେହି ହରିଦେବଙ୍କ ଅବତାର ଦର୍ଶନ ଦ୍ୱାରା ନିଷ୍ପାପ ତଥା କୃତାର୍ଥ ହୋଇଥିଲେ, ସେମାନଙ୍କୁ ବହୁ ସମ୍ମାନ ପୂର୍ବକ ବିଦାୟ ଅନୁମତି ପ୍ରଦାନ କଲେ ।୪୦। ତାହାପରେ ନରପତି ଦେବଗୃହ ପ୍ରସ୍ତୁତ କରିବା ନିମନ୍ତେ ପ୍ରସ୍ତର ଖଣ୍ଡ ସମୂହ ଛେଦନ ପାଇଁ କୋଟି କୋଟି ବିତ୍ତ ବ୍ୟୟ କରିବାକୁ ଲାଗିଲେ ।୪୧। ବହୁଦେଶରୁ ପାଷାଣ ସମ୍ପତ୍ତିଶାଳୀ ପ୍ରଧାନ ପ୍ରଧାନ ପ୍ରାର୍ଥିବଗଣ ସେଠାକୁ ଆହୂତ ହୋଇଥିଲେ । ସେମାନଙ୍କୁ ପୃଥ୍ୱୀଶ୍ୱର ସନ୍ତୋଷ ହୋଇ ଆହ୍ଲାଦ ସହକାରେ କହିବାକୁ ଲାଗିଲେ, ମୁଁ ଏହି ଅଷ୍ଟାଦଶ ଦ୍ୱୀପରୁ ପୁରୁଷକାର ଦ୍ୱାରା ଯେଉଁ ସମସ୍ତ ଦ୍ରବ୍ୟଜାତ ଉପାର୍ଜନ କରିଅଛି, ବର୍ତ୍ତମାନ ତାହା ଜଗଦୀଶ୍ୱରଙ୍କ ପ୍ରାସାଦ ନିର୍ମାଣରେ ପରିବର୍ଜ୍ଜିତ ହୋଇଅଛି ।୪୨।

ନୈଜଯାତ୍ରାପ୍ରସଙ୍ଗେନ ଶ୍ରମୋଲବ୍‌ଧସ୍ତୁ ଯୋ ମୟା ।
ସଫଳୋଽଦ୍ୟ ସ ମେ ବିଷ୍ଣୋଃ ପ୍ରାସାଦାସ୍ୟାନୁଯୋଗତଃ । ୪୩ ।

ଅତଃ ପରଂ ମେ କିଂ ଭାଗ୍ୟଂ ଚରାଚରଗୁରୁଂ ହରିମ ।
ପ୍ରସାଦୟିଷ୍ୟେ ସମ୍ପତ୍ତ୍ୟା ଭୁଜଦ୍ୱନ୍ଦ୍ୱାର୍ଜିତଶ୍ରିୟା ।
ଶ୍ରୀଃ ସଦା ପୁଣ୍ଡରୀକାକ୍ଷ ପ୍ରିୟାନୁଗ୍ରହଜା ମମ ।
ବେଶ୍ମ ତସ୍ମୈ ସମର୍ପ୍ୟେଦଂ ଭବିଷ୍ୟାମି କୃତାତ୍ମବାନ୍ । ୪୪ ।

ସଚରାଚରନାଥସ୍ୟ କୃପାସୀଦ୍ ଯାଦୃଶୀ ମୟି ।
କିଂ କର୍ତ୍ତୁମୀଶସ୍ତସ୍ୟାହଂ ଦେବଦେବସ୍ୟ ଚକ୍ରିଣଃ ।
କଟାକ୍ଷପାତୋ ଯସ୍ୟାସୀତ୍ ତସ୍ୟ ଶ୍ରୀଃ ସର୍ବତୋମୁଖୀ । ୪୫ ।

---

ମୁଁ ଭଗବାନଙ୍କ ଯାତ୍ରା ସମୟରେ ଯେଉଁ ସମସ୍ତ ପରିଶ୍ରମ ସ୍ୱୀକାର କରିଥିଲି, ଆଜି ବିଷ୍ଣୁଙ୍କ ପ୍ରାସାଦ ନିର୍ମାଣ ନିମିତ୍ତ ସେହି ସମସ୍ତ ଶ୍ରମଲବ୍ଧ ବିତ୍ତ ଉପଯୋଗୀ ହୋଇଅଛି ବୋଲି ମୋର ଶ୍ରମ ସଫଳ ହେଲା ।୪୩। ଏହାଠରେ ଆଉ ମୋର ଏପରି ଭାଗ୍ୟ ହେବ କି ? ମୁଁ ନିଜ ହସ୍ତ ଉପାର୍ଜିତ ଶ୍ରୀସମ୍ପତ୍ତି ଦ୍ୱାରା ଚରାଚର ଗୁରୁ ହରିଦେବଙ୍କୁ ପ୍ରସନ୍ନ କରିବି । ଯେଉଁ ପୁଣ୍ଡରୀକାକ୍ଷଙ୍କ ପ୍ରିୟତମା ଲକ୍ଷ୍ମୀଙ୍କ ଅନୁଗ୍ରହରେ ହିଁ ମୋର ଏହି ଶ୍ରୀ ହୋଇଅଛି, ମୁଁ ଏହି ପ୍ରାସାଦ ନିର୍ମାଣ କରି ତାଙ୍କୁ ସମର୍ପଣ କରି ପାରିଲେ, କୃତାର୍ଥ ହେବି । ମୋ ଉପରେ ଏହି ଚରାଚର ପ୍ରଭୁଙ୍କର ଯେପରି କୃପା ଅଛି, ମୁଁ ତଦନୁରୂପ ଏହି ଚକ୍ରଧାରୀ ଦେବଦେବଙ୍କର କାର୍ଯ୍ୟ କରିବାକୁ ସମର୍ଥ ହେବି କି ? ଏହି ପ୍ରଭୁ ଯାହାଙ୍କ ପ୍ରତି ଥରେ ମାତ୍ର କଟାକ୍ଷ ପାତ କରନ୍ତି, ତାହାଙ୍କର ଶ୍ରୀସମ୍ପତ୍ତି ସର୍ବତୋଭାବରେ ଚିର ବିଦ୍ୟମାନ ଥାଏ ।୪୫।

ଅଷ୍ଟାଦଶ ମ୍ବିକା ଦେବୀ ଜିହ୍ୱାଗ୍ରେ ଗୃସ୍ୟ ନର୍ତ୍ତ୍ୟତି ।
ଯମ ରାଧ୍ୟ ଜଗନ୍ନାଥଂ ବ୍ରହ୍ମତ୍ୱଂ ପ୍ରାପ୍ତବାନ୍ ବିଧିଃ ।
ରୁଦ୍ରୋ ମହେଶ୍ୱରତ୍ୱଞ୍ଚ ଶକ୍ରସ୍ତି ଦିବରାଜତାମ୍ ।
ଲୋକେଭ ତମର୍ଚ୍ଚ୍ୟଂ ଜଗତାମର୍ଚ୍ଚୟିଷ୍ୟାମି ଶାଶ୍ୱତମ୍ । ୪୬ ।
ଜିତଂ ତେନ ବିଧା ରାଶୀଭୂତମଂହୋ ମହାତ୍ମନା ।
ସାଙ୍ଗୋପାଙ୍ଗେନ ବିଧିନା ଯେନ କୃଷ୍ଣଃ ସମର୍ଚ୍ଚିତଃ । ୪୭ ।
କଳେବରମିଦଂ କ୍ଷେତ୍ରଂ ଯତ୍ରାହଙ୍କାରବାନ୍ ବିଭୁଃ ।
ଆବିର୍ଭବତିରେଖବୌ ସ୍ଥ ତନ୍ନିତ୍ୟା ହି ଯତ୍ରପ୍ରଭୋଃ । ୪୮ ।
ଅତ୍ର ସାକ୍ଷାଦ୍ ବପୁର୍ମନ୍ତଂ ସମର୍ଚ୍ଚ୍ୟ ଜଗତାଂ ଗୁରୁମ୍ ।
ସାକ୍ଷାତ୍ କୃତାର୍ଥୋ ଭବତି ଚତୁର୍ବର୍ଗସ୍ୟ ଭାଜନମ୍ । ୪୯ ।
ଇତି ଶ୍ରୀସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନସରୋବରପ୍ରବୃତ୍ତିବିବରଣଂ ନାମ
ବିଂଶୋଽଧ୍ୟାୟଃ । ୨୦ ।

---

ଏହାଙ୍କ ଜିହ୍ୱାଗ୍ରଭାଗରେ ଅଷ୍ଟାଦଶ ବିଦ୍ୟାଧିଶ୍ୱରୀ ବାଗ୍‌ଦେବୀ ନୃତ୍ୟ କରୁଅଛନ୍ତି । ଏହି ଜଗନ୍ନାଥଦେବଙ୍କୁ ଆରାଧନା କରି ବ୍ରହ୍ମା ବ୍ରହ୍ମତ୍ୱ, ରୁଦ୍ର ରୁଦ୍ରତ୍ୱ, ଇନ୍ଦ୍ର ଦେବରାଜତ୍ୱ ପ୍ରାପ୍ତ ହୋଇଅଛନ୍ତି । ମୁଁ ସେହି ଜଗଦର୍ଚ୍ଚନୀୟ ଶାଶ୍ୱତ ଦେବଙ୍କୁ ଅର୍ଚ୍ଚନା କରିବି । ଯେ ସର୍ବାଙ୍ଗ ସୁନ୍ଦର ବିଧାନରେ ଶ୍ରୀକୃଷ୍ଣଙ୍କୁ ସମ୍ପୂର୍ଣ୍ଣ ଅର୍ଚ୍ଚନା କରିପାରିଛନ୍ତି, ସେହି ମହାତ୍ମାଙ୍କର କାୟମନୋବାକ୍ୟ ସମ୍ଭୂତ ତ୍ରିବିଧ ପାପରାଶି ପରାଜିତ ହୋଇଅଛି ।୪୭। ଏହି ପୁରୁଷୋତ୍ତମ କ୍ଷେତ୍ର ପୁରୁଷୋତ୍ତମଙ୍କର କଳେବର ସ୍ୱରୂପ । ପ୍ରଭୁ ଏ ସ୍ଥାନରେ ଅହଂକାର ବିଶିଷ୍ଟ, ଆବିର୍ଭୂତ ଓ ତିରୋହିତ ହୋଇ ମଧ୍ୟ ସର୍ବଦା ଅବସ୍ଥାନ କରୁଅଛନ୍ତି । ଏହି ସ୍ଥଳରେ ପ୍ରତ୍ୟକ୍ଷ ଶରୀରଧାରୀ ଜଗଦ୍‌ଗୁରୁ ଜଗନ୍ନାଥଙ୍କୁ ଅର୍ଚ୍ଚନା କରି ମାନବ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚତୁର୍ବର୍ଗ ଲଭରେ ସାକ୍ଷାତ କୃତାର୍ଥ ହୋଇପାରେ ।

॥ ବିଂଶ ଅଧ୍ୟାୟ ସମାପ୍ତ ॥

# ଏକତ୍ରିଂଶୋଽଧ୍ୟାୟଃ

ଜୈମିନିରୁବାଚ

ଇତି ବ୍ରୁବାଣଂ ରାଜାନଂ କଶ୍ଚିଦ୍ଋଗବେଦପାରଗଃ ।
ବେଦାନ୍ତବିଜ୍ଜ୍ଞାନଶୀଲୋ ଦ୍ୱିଜୋ ବାକ୍ୟଂ ମୁଦା ଜଗୌ । ୧ ।
ଅହୋ ଭବାଦୃଶାଂ ନୃଣାଂ ଭାଗ୍ୟରାଶିର୍ଯେନାବିରାସୀଦ୍ ଭୁବି ଦାରୁମୂର୍ତ୍ତିଃ ।
ଯସ୍ୟାପ୍ୟୁପାସ୍ୟ ଶ୍ରୁତିରାହ ମୁକ୍ତିପ୍ରଦାନମାତ୍ମଜ୍ଞବିମୋହିତାନାମ୍ । ୨ ।
ଯ ଏଷ ପ୍ଲବତେ ଦାରୁଃ ସିନ୍ଧୁପାରେ ହ୍ୟପୌରୁଷଃ ।
ତମୁପାସ୍ୟ ଦୁରାରାଧ୍ୟଂ ମୁକ୍ତିଂ ଯାତି ସୁଦୁର୍ଲଭମ୍ । ୩ ।
ବ୍ରହ୍ମଜ୍ଞାନନିଧିଂ ସାକ୍ଷାନ୍ନାରଦଃ ପ୍ରତ୍ୟୁବାଚ ତମ୍ ।
ନ ହି ବେଦାନ୍ତବଚସଃ ପରସ୍ୟାଜ୍ଞାନମସ୍ୟ ବୈ ।
ନ ହି ପ୍ରବୃତ୍ତିର୍ବିଷ୍ଣୋସ୍ତୁ ବିନା ବେଦଂ ପ୍ରବର୍ତ୍ତତେ । ୪ ।

---

# ଏକତ୍ରିଂଶ ଅଧ୍ୟାୟ

ଇନ୍ଦ୍ରଦ୍ୟୁମ୍ନ ନରପତି ଏ ପ୍ରକାର କହିବା ସମୟରେ, ଏକ ଋଗ୍-ବେଦପାରଗ ସାକ୍ଷାତ୍ ବ୍ରହ୍ମଜ୍ଞାନସାଗର ବେଦାନ୍ତବିଦ ଜ୍ଞାନଶୀଳ ବ୍ରାହ୍ମଣ ତାଙ୍କୁ ଆହ୍ଲାଦ ସହକାରେ କହିଲେ— ହେ ନୃପୋତ୍ତମ ! ତୁମ୍ଭର ଏହି ବିପୁଳ ଭାଗ୍ୟରାଶି ଅତି ଆଶ୍ଚର୍ଯ୍ୟ । କାରଣ ଭଗବାନ ପୃଥିବୀରେ ଦାରୁମୂର୍ତ୍ତି ଶରୀରଧାରୀ ପୂର୍ବକ ଆବିର୍ଭୂତ ହୋଇଅଛନ୍ତି । ବେଦରେ ଅଭିହିତ ଅଛି ଯେ—ଏହାଙ୍କୁ ଉପାସନା କଲେ, ଆତ୍ମଜ୍ଞାନ ବିମୋହିତ ବ୍ୟକ୍ତିମାନଙ୍କର ମଧ୍ୟ ମୁକ୍ତିଲାଭ ହୋଇଥାଏ ।୨। ସେହି ଏହି ଅପୌରୁଷେୟ ଦାରୁ ସମୁଦ୍ର ପାରରେ ଭାସମାନ ହୋଇଅଛି । ଦୁରାରାଧ୍ୟ ଏହାଙ୍କୁ ଉପାସନା କଲେ ଅତ୍ୟନ୍ତ ଦୁର୍ଲ୍ଲଭ ମୋକ୍ଷପଦ ପ୍ରାପ୍ତି ହୋଇଯାଏ ।୩। ସାକ୍ଷାତ୍ ବ୍ରହ୍ମଜ୍ଞାନସାଗର ନାରଦ ଋଷି କହିଲେ ଯେ, ଏହି ଭଗବାନ ବେଦାନ୍ତ ବାକ୍ୟରେ ଅଜ୍ଞାତ ନୁହନ୍ତି ଏବଂ ଏହି ବିଷ୍ଣୁଙ୍କର କାର୍ଯ୍ୟ ପ୍ରବୃତ୍ତି ବେଦ ବହିର୍ଭୂତ ଭାବରେ ପ୍ରବର୍ତ୍ତିତ ହୁଏନାହିଁ ।୪।

ପରେଷାଂ ସ୍ୱସ୍ୟ ବା ସୃଷ୍ଟୌ ଶ୍ରୁତପ୍ରାମାଣ୍ୟବାନ୍ ବଭୂଃ ।
ବିନା ଶ୍ରୁତିଂ ପ୍ରବର୍ତ୍ତେ କସ୍ତତ୍ର ପ୍ରାମଣ୍ୟମୃଚ୍ଛତୁ । ୫ ।
ତସ୍ମାଚ୍ଛ୍ରୁତିପ୍ରସିଦ୍ଧୋଽସ୍ୟମବତାରୋଽସ୍ୟ ଭୂପତେ ।
ବେଦାନ୍ତବେଦ୍ୟଂ ପୁରୁଷଂ ଗୀତଂ ତଂ ସାମଗୀତିଷୁ । ୬ ।
ପ୍ରତିମାଂ ନ ତୁ ଜାନୀହି ନିଃଶ୍ରେୟସପ୍ରଦାଂ ନୃଣାମ୍ ।
ଦର୍ଶନାଦେବ ନଶ୍ୟନ୍ତି ସୁଦୃଢ଼ଂ ତମ ଉତ୍ତମମ୍ । ୭ ।
ସନ୍ତ୍ୟେବ ଶ୍ରୁତୟଃ ପୂର୍ବମେତଦର୍ଥପ୍ରକାଶିକାଃ ।
ଏତଦର୍ଥପ୍ରଶସ୍ତା ବୈ ଯଦର୍ଥେ ବିନିଯୋଜିତାଃ । ୮ ।
ଅହୋ ଭାରତବର୍ଷସ୍ୟ ମନୁଷ୍ୟାଃ କ୍ଷୀଣକଲ୍ମଷାଃ
ଅପବର୍ଗପ୍ରଦୋ ଯେଷାମାବିରାସୀଜ୍ଜନାର୍ଦ୍ଦନଃ । ୯ ।

---

ପ୍ରଭୁ ଯେତେବେଳେ ସୃଷ୍ଟି କରନ୍ତି ଅଥବା ସ୍ୱୟଂ ସୃଷ୍ଟ ହୁଅନ୍ତି, ସେତେବେଳେ ମଧ୍ୟ ବେଦ ପ୍ରମାଣର ବଶୀଭୂତ ହୋଇଥାନ୍ତି ।୫। ଯେଉଁମାନେ ବେଦବାହ୍ୟ କାର୍ଯ୍ୟରେ ପ୍ରବର୍ତ୍ତିତ ହୁଅନ୍ତି, ସେମାନଙ୍କର କପର ଆସ୍ଥା ହେବ ? ଅତଏବ ହେ ଭୂପତେ, ଦେବଙ୍କର ଏହି ଅବତାର ବେଦ ପ୍ରସିଦ୍ଧ ଅଟେ । ସାମଗୀତରେ ଏ ବେଦବେଦାନ୍ତ ବେଦ୍ୟ ପୁରୁଷ ବୋଲି ଗୀତ ହୋଇ ଅଛନ୍ତି ।୬। ଏହାଙ୍କୁ ସାମାନ୍ୟ ପ୍ରତିମା ବୋଲି ଭାବନ୍ତୁ ନାହିଁ । କାରଣ, ଏ ମନୁଷ୍ୟମାନଙ୍କୁ ମୋକ୍ଷ ପ୍ରଦାନ କରନ୍ତି । ଏହାଙ୍କ ଦର୍ଶନ ମାତ୍ରେ ଅତି ଉତ୍କଟ ତମୋଗୁଣ ନଷ୍ଟ ହୋଇଯାଏ ।୭। ଏହି ଜଗନ୍ନାଥଙ୍କର ପ୍ରତିମୂର୍ତ୍ତି ବିଜ୍ଞାପକ ଶ୍ରୁତି ସମୂହ ଏଥିପୂର୍ବରୁ ମାତ୍ର ଅବସ୍ଥିତ ଥିଲା । କିନ୍ତୁ ଆମ୍ଭମାନଙ୍କର ସେହି ପ୍ରତିମାଗୁଡିକ ପ୍ରତ୍ୟକ୍ଷୀଭୂତ ହେବାରୁ କେବଳ ଆମ୍ଭମାନଙ୍କ ନିମନ୍ତେ ନିୟୋଜିତହେଲା । କି ଆଶ୍ଚର୍ଯ୍ୟ ! ଭାରତବର୍ଷୀୟ ଲୋକମାନଙ୍କର ପାପ ନାହିଁ । ମୁକ୍ତିଦାତା ଜନାର୍ଦ୍ଦନ ସେମାନଙ୍କ ନିକଟରେ ଆବିର୍ଭୂତ ହୋଇଛନ୍ତି । ୯ ।

ତତ୍ରାପ୍ୟସାବୌଡ୍ରଦେଶଃ ସର୍ବେଷାମୁତ୍ତମଃ ଶ୍ରୁତଃ ।
ଯତ୍ରସ୍ଥାଶ୍ଚର୍ମନେତ୍ରେଣ ପଶ୍ୟନ୍ତି ବ୍ରହ୍ମରୂପିଣମ୍ । ୧୦ ।
ଶ୍ରୁତିସ୍ମୃତୀନାଂ ଗହନାଃ ପନ୍ଥାଃ କର୍ମଭିରାକୁଳାଃ ।
ଯେନ ଯାତା ଭ୍ରମନ୍ତୀହ ଘଟୀଯନ୍ତ୍ରବଦାକୁଳାଃ । ୧୧ ।
ନିର୍ବ୍ୟଳୀକପଦପ୍ରାପ୍ତି ହେତୁରେକଃ ସ ଚିନ୍ମୟଃ ।
ଶ୍ରୁତ୍ୟାଦିଭିର୍ବିନୋପାୟୈଃ ପରମାନନ୍ଦମୁକ୍ତିଦଃ ।
ନିରନ୍ତରଗତାୟାତଦୁଃସ୍ଥିତାନାଂ ଦୁରାତ୍ମନାମ୍ ।
ଏଷ ଦାରୁବପୁର୍ବିଷ୍ଣୁଃ ସୁଖଦାତା ସୁବତ୍ସଳଃ ।
ଶ୍ରୁତିସ୍ମୃତ୍ୟୁକ୍ତନିୟମା ବର୍ତ୍ତନ୍ତେ ନେହ ପାର୍ଥିବ । ୧୨ ।
ଯଥା ତଥା ଦୃଷ୍ଟିପଥ ଆଚଣ୍ଡାଳାଦିମୁକ୍ତିଦଃ ।
ଅଭକ୍ତୋଽସକୃଦମୁଂ ପଶ୍ୟେଦ୍ ଗତାନୁଗତିକୋ ନରଃ ।
ଅଶ୍ୱମେଧସହସ୍ରାଣାଂ ଫଳନ୍ତ୍ୱବିକଳଂ ଭବେତ୍ । ୧୩ ।

---

ଭାରତବର୍ଷ ମଧ୍ୟରେ ଓଡ୍ର ଦେଶ (ଉତ୍କଳ ଦେଶ) ହିଁ ସମସ୍ତ ଦେଶମାନଙ୍କ ଅପେକ୍ଷା ସର୍ବୋତ୍ତମ । ଯେହେତୁ ବ୍ରହ୍ମରୂପୀ ଜନାର୍ଦ୍ଦନଙ୍କୁ ଚର୍ମନେତ୍ର ଦ୍ୱାରା ସେଠାର ସମସ୍ତ ବ୍ୟକ୍ତି ଦର୍ଶନ କରୁଅଛନ୍ତି ।୧୦। ଶ୍ରୁତି ସ୍ମୃତି କଥିତ ସକଳ ପଥ କର୍ମଦ୍ୱାରା ସମାବୃତ ଅଛି । ମାୟା କୁମ୍ଭକାରଚକ୍ର ପରି ଆକୁଳ ହୋଇ ଭ୍ରମଣ କରୁଅଛି । କେବଳ ସତ୍ୟପଦ ପ୍ରାପ୍ତିର ଏକମାତ୍ର କାରଣ ଜ୍ଞାନମୟ ଜଗନ୍ନାଥ, ଶ୍ରୁତି-କଥିତ ଉପାୟ ବିନା ପରମ ମୁକ୍ତିଦାନ କରନ୍ତି । ଅନବରତ ଯେଉଁମାନେ ଯାତାୟାତ କରନ୍ତି, ସେ ସମସ୍ତ ଦୁଃସ୍ଥ ବ୍ୟକ୍ତିମାନଙ୍କୁ ଏହି ଜଗନ୍ନାଥ ନିଜ ବାନ୍ଧବ ତୁଲ୍ୟ ସୁଖଦାନ କରନ୍ତି । ହେ ରାଜନ ! ଶ୍ରୁତି ଓ ସ୍ମୃତି ବର୍ଣ୍ଣିତ ନିୟମ ଏହି ସ୍ଥାନରେ ନାହିଁ । ଆଉ ଅଧିକ କଥା କ'ଣ କହିବି ? ଏହି ଭଗବାନ୍ ଯେକୌଣସି ସ୍ଥଳରେ, ଯେକୌଣସି ପ୍ରକାରେ ଦୃଷ୍ଟି ପଥରେ ପଡ଼ିଲେ ଆଚଣ୍ଡାଳ ବ୍ରାହ୍ମଣ ପର୍ଯ୍ୟନ୍ତଙ୍କୁ ମୁକ୍ତି ବିତରଣ କରନ୍ତି । ଜନ୍ମଭାଗୀ ଅଭକ୍ତ ବ୍ୟକ୍ତି ଯଦି ଏହାଙ୍କୁ ବାରମ୍ବାର ଦର୍ଶନ କରେ, ସେ ମଧ୍ୟ ସହସ୍ର ଅଶ୍ୱମେଧ ଅନୁରୂପ ଫଳ ଲାଭକରେ । ୧୩ ।

ଭକ୍ତେରେଭିର୍ଯମସ୍ତୋ ହି ଭକ୍ତିମାନ୍ ଦୃଢ଼ମାନସଃ ।
ଅସଂଶୟଂ ସ ସାଯୁଜ୍ୟଂ ବ୍ରହ୍ମଣୋ ଲଭତେ ନରଃ । ୧୪ ।
କ୍ୱ ଦୁଃଖାୟାସବହୁଲମନାସ୍ଥାସବିନଶ୍ୱରମ୍ ।
ଅଚିରସ୍ଥଂ କ୍ଷୁଦ୍ରଫଳଂ ପୁନରାବୃତ୍ତିଲକ୍ଷଣମ୍ । ୧୫ ।
କ୍ୱେଦଂ ଦାରୁମୟଂ ବ୍ରହ୍ମ ପାପରାଶିଦବାନଲମ୍ ।
ସଚ୍ଚିଦାନନ୍ଦକୈବଲ୍ୟଂ ମୁକ୍ତିଦଂ ଦର୍ଶନାଦପି । ୧୬ ।
ବେଦାନୁବଚନାଦୀନ ଦୁଷ୍କରାଣି ଦୁରାତ୍ମନାମ୍ ।
ମହାତ୍ମଭିର୍ଯୈର୍ଯନ୍ତୁ ପ୍ରାପ୍ୟଂ ତଦବ୍ୟଗ୍ରମସ୍ତୁଂ ଲଭେନ୍ତୁ । ୧୭ ।
ଅନ୍ୟକ୍ଷେତ୍ରେଷୁ ଭଗବାନ୍ ସୁଦୂରେ ମର୍ତ୍ତ୍ୟବାସିନାମ୍ ।
ସ୍ୱକ୍ଷେତ୍ରେଽସ୍ମିନ୍ନିବସତି ନିତ୍ୟଂ ମୁକ୍ତିପ୍ରଦୋ ବିଭୁଃ । ୧୮ ।
ତସ୍ମାଦତ୍ର ମହାରାଜ ତିଷ୍ଠ ସବଲପୌରୁଷଃ ।
ବିପ୍ରୋତ୍ତମୋଽସି ଭକ୍ତଶ୍ଚ ସାଙ୍ଗୋପାଙ୍ଗମମୁଂ ଭଜ । ୧୯ ।

---

ଯଦି ସ୍ଥିର ଚିତ୍ତରେ ଭକ୍ତିଯୋଗ ଦ୍ୱାରା ନିଯୁମସ୍ଥ ହୋଇ ଏହାଙ୍କୁ କେହି ଭଜନ କରେ, ତେବେ ନିଃସନ୍ଦେହରେ ବ୍ରହ୍ମସାଯୁଜ୍ୟ ଫଳ ଲାଭକରେ । ବହୁଳ ଦୁଃଖ ଓ ଆୟାସସାଧ୍ୟ ଅଚିରସ୍ଥାୟୀ, କ୍ଷଣ-ବିନଶ୍ୱର ପୁନରାବୃତ୍ତି ଲକ୍ଷଣାକ୍ରାନ୍ତ ସ୍ୱର୍ଗରୂପ ଫଳ ବା କେଉଁଠାରେ ? ।୧୫। ଏହି ପାପବୃନ୍ଦର ଦାବାନଳ ସଦୃଶ ସଚ୍ଚିଦାନନ୍ଦ ଦର୍ଶନମାତ୍ରେ କୈବଲ୍ୟ ଦାତା ଦାରୁବ୍ରହ୍ମ ବା କେଉଁଠାରେ ? ।୧୬। ଦୁରାତ୍ମା ଲୋକମାନଙ୍କର ବେଦୋକ୍ତ ପ୍ରମାଣାଦି ଅବଲମ୍ବନ ଦୁଷ୍କର ହେଲେ ମଧ୍ୟ ମହାତ୍ମାମାନଙ୍କର ଲଭ୍ୟ ଯେଉଁ ଫଳ ତଦନୁରୂପ ଫଳ ସେମାନଙ୍କର ଲାଭ ହୋଇଥାଏ । ଭଗବାନ ଅନ୍ୟାନ୍ୟ କ୍ଷେତ୍ରରେ ମନୁଷ୍ୟମାନଙ୍କର ସୁଦୁର୍ଲ୍ଲଭ ହୋଇ ଅବସ୍ଥାନ କରନ୍ତି । କିନ୍ତୁ ତାଙ୍କ ନିଜ କ୍ଷେତ୍ର ଏହି ପୁରୁଷୋତ୍ତମ ଧାମରେ ମୁକ୍ତିଦାତା ହୋଇ ନିତ୍ୟ ନିବାସ କରୁଛନ୍ତି । ହେ ମହାରାଜ ! ଏହି ହେତୁରୁ କହୁଅଛି, ଆପଣ ନିଜର ବଳ ପୌରୁଷ ସମଭିବ୍ୟାହର ନେଇ ଏହି ସ୍ଥାନରେ ରହନ୍ତୁ । ଆପଣ ପଣ୍ଡିତାଗ୍ରଣୀ ଓ ବିଷ୍ଣୁଭକ୍ତ । ଅତଏବ ଅଙ୍ଗ ଉପାଙ୍ଗ ସହିତ ତାଙ୍କୁ ଭଜନ କରନ୍ତୁ ।

ଜୈମିନିରୁବାଚ

ଦ୍ୱିଜସ୍ୟ ତଦ୍‌ବଚଃ ଶ୍ରୁତ୍ୱା ନାରଦୋ ହୃଷ୍ଟମାନସଃ ।
ସାଧୂକ୍ତଂ ଦ୍ୱିଜବର୍ଯ୍ୟେଣ ବେଦମାର୍ଗାନୁସାରିଣା । ୨୦ ।
ସୃଷ୍ଟ୍ୟାଦୌ ବ୍ରହ୍ମଣଃଶ୍ୱାସାଦଭବଦ୍‌ବେଦସଂହତିଃ ।
ତତ୍ରୋପନିଷଦର୍ଥୋଽୟଂ ସାମ୍ପ୍ରତଂ ବ୍ୟକ୍ତମାଗତଃ । ୨୧ ।
ବେତ୍ତ୍ୟେତଦର୍ଥଂ ଭଗବାନ୍ ପଦ୍ମଯୋନିଃ ପିତାମହଃ ।
ଅଜ୍ଞାସିଷଞ୍ଚ ଭୂପାଲ ସାମ୍ପ୍ରତଂ ତନ୍ମୁଖାଦହମ୍ ।
ତସ୍ୟାଜ୍ଞୟା କୃତଂ ସର୍ବଂ ଯଥାଭିଲଷିତଂ ତବ । ୨୨ ।
ଏନମାରାଧ୍ୟ ତିଷ୍ଠାତ୍ର ଯାମ୍ୟହଂ ବ୍ରହ୍ମଣୋଽନ୍ତିକମ୍ ।
କୃତଂ ନିବେଦୟିଷ୍ୟାମି ପ୍ରକାଶଞ୍ଚ ମୁରଦ୍ୱିଷଃ । ୨୩ ।
ପ୍ରାସାଦଂ କୁରୁ ଭୂପାଲ ଧନେନ ମହତା ତଥା ।
ପ୍ରାସାଦେ ନରସିଂହନ୍ତୁ ପ୍ରତିଷ୍ଠାପ୍ୟ ବିମୁଚ୍ୟତେ । ୨୪ ।

---

ଜୈମିନି କହିଲେ, ସେହି ବ୍ରାହ୍ମଣଙ୍କର ଏହି ପ୍ରକାର ବଚନ ପରମ୍ପରା ଶ୍ରବଣ କରି ନାରଦ ଋଷି ସନ୍ତୁଷ୍ଟ ହୋଇ କହିଲେ, ଏହି ଦ୍ୱିଜଶ୍ରେଷ୍ଠ ବେଦପଥ ଅନୁସରଣ କ୍ରମରେ ଯାହା ବର୍ଣ୍ଣନା କଲେ, ତାହା ଯଥାର୍ଥ ଅଟେ ।୨୦। ସୃଷ୍ଟିର ପ୍ରାରମ୍ଭରେ ବ୍ରହ୍ମଙ୍କ ନିଶ୍ୱାସରୁ ବେଦ ସମୂହ ଉତ୍ପନ୍ନ ହୋଇଥିଲା । ତନ୍ମଧ୍ୟରେ ଦାରୁବ୍ରହ୍ମ ସମ୍ବନ୍ଧୀୟ ଏହି ଉପନିଷଦ ଅର୍ଥଟି ବର୍ତ୍ତମାନ ବ୍ୟକ୍ତ ହେଲା ।୨୧। ହେ ଭୂପାଳ ! ସେହି ପଦ୍ମଯୋନି ପିତାମହ ଏଥିପୂର୍ବେ ଏହି ଅର୍ଥଟି ଅବଗତ ଥିଲେ । ସମ୍ପ୍ରତି ତାହାଙ୍କ ମୁଖରୁ ମୁଁ ଜାଣି ପାରୁଅଛି । ତାଙ୍କ ଅନୁମତି କ୍ରମେ ତୁମ୍ଭର ଏହି ଅଭିଳଷିତ କାର୍ଯ୍ୟ ସକଳ ସମ୍ପନ୍ନ କଲି ।୨୨। ତୁମ୍ଭେ ଏହି ଦେବବରଙ୍କୁ ଆରାଧନା ପୂର୍ବକ ଏହି ସ୍ଥାନରେ ରହ, ମୁଁ ବର୍ତ୍ତମାନ ବ୍ରହ୍ମାଙ୍କ ନିକଟକୁ ଯିବି । ସେଠାରେ ମୁରାରିଙ୍କ ଆବିର୍ଭାବ ଓ ଏହି ସମସ୍ତ କୃତକାର୍ଯ୍ୟ ନିବେଦନ କରିବି ।୨୩। ତୁମ୍ଭେ କାଳ ବିଳମ୍ବ ନ କରି ମନୋଯୋଗ ଦେଇ ବିପୁଳ ଅର୍ଥବ୍ୟୟ ପୂର୍ବକ ଏକ ସୁନ୍ଦର ଦେବଗୃହ ନିର୍ମାଣ କର । ତହିଁରେ ଏହି ନରସିଂହଙ୍କୁ ପ୍ରତିଷ୍ଠିତ କଲେ ମୁକ୍ତି ଲଭ କରିବ । ୨୪ ।

ଜୈମିନିରୁବାଚ

ତଚ୍ଛ୍ରୁତ୍ୱା ସ ତୁ ଭୂମୀନ୍ଦ୍ରଃ ପ୍ରତ୍ୟୁବାଚ ମୁନିଂ ତଦା ।
ମହର୍ଷେଽହଂ ତ୍ୱୟା ସାର୍ଦ୍ଧଂ ଯିଯାସୁର୍ବ୍ରହ୍ମଣୋଽନ୍ତିକମ୍ ।
ଯତ୍ପ୍ରସାଦାଜ୍ଜଗନ୍ନାଥଂ ଚକ୍ଷେଽହଂ ଲୋଚନାତିଥିମ୍ । ୨୫ ।
ନିବେଦ୍ୟ ତସ୍ମୈ ସଷ୍ଟାରଂ ପ୍ରତିଷ୍ଠାର୍ଥଂ ମୁରଦ୍ୱିଷଃ ।
ବିଜ୍ଞାପୟିଷ୍ୟେ ସାନ୍ନିଧ୍ୟେ ପ୍ରାସାଦସ୍ଥାପନୋତ୍ସବେ ।
ଯଥା ସ୍ୱୟଂ ସମାଗତ୍ୟ ବ୍ରହ୍ମଲୋକାତ୍ ପିତାମହଃ ।
ମହୋତ୍ସବଂ ଭଗବତଃ ପ୍ରାସାଦେଽତ୍ର କରିଷ୍ୟତି । ୨୬ ।
ତନ୍ମୁନେ ମାମପି ବିଧେଃ ସଦନେ ପ୍ରାପୟିଷ୍ୟସି ।
ଗର୍ଭପ୍ରତିଷ୍ଠାଂ ପ୍ରାସାଦେ ସମାପ୍ୟେହ ସ୍ଥିତୋ ମୁନେ ।
ପଶ୍ଚାଦାବାଂ ବ୍ରଜିଷ୍ୟାବଃ କଞ୍ଚିତ୍କାଳଂ ପ୍ରତୀକ୍ଷସେ । ୨୭ ।

---

ଜୈମିନି କହିଲେ, ନରପତି ମୁନିଙ୍କ ବାକ୍ୟ ଶ୍ରବଣ କରି ତାଙ୍କୁ କହିଲେ—ହେ ମହର୍ଷେ ! ମୁଁ ମଧ୍ୟ ଆପଣଙ୍କ ସହିତ ବ୍ରହ୍ମାଙ୍କ ନିକଟକୁ ଯିବାପାଇଁ ଇଚ୍ଛା କରୁଅଛି । କାରଣ ତାଙ୍କ ପ୍ରସାଦରୁ ମୁଁ ଜଗନ୍ନାଥ ଦେବଙ୍କୁ ନୟନ ପଥର ଅତିଥି ଭାବରେ ପ୍ରାପ୍ତ ହୋଇଅଛି ।୨୫। ମୁଁ ମୁରାରିଙ୍କ ପ୍ରତିଷ୍ଠା ନିମନ୍ତେ ସେହି ଜଗତ ସ୍ରଷ୍ଟାଙ୍କ ନିକଟରେ ପ୍ରାସାଦ ପ୍ରତିଷ୍ଠା ଓ ମହୋତ୍ସବ କାର୍ଯ୍ୟ ବିଜ୍ଞାପନ କରିବି, ଯଦ୍ଦ୍ୱାରା ସେ ସ୍ୱୟଂ ବ୍ରହ୍ମଲୋକରୁ ଶୁଭାଗମନ କରି ଏହି ପ୍ରାସାଦରେ ଭଗବାନ ପୁରୁଷୋତ୍ତମଙ୍କ ମହୋତ୍ସବ ସମ୍ପାଦନ କରିବେ ।୨୬। ହେ ମୁନେ ! ମୋତେ ବ୍ରହ୍ମାଙ୍କ ନିକଟକୁ ନେଇ ଚାଲନ୍ତୁ । ତେବେ ଆପାତତଃ କିଛି ସମୟ ଅପେକ୍ଷା କରନ୍ତୁ । ଏହି ସ୍ଥାନରେ ରହି ପ୍ରାସାଦ ନିର୍ମାଣ ଓ ତନ୍ମଧ୍ୟରେ ରତ୍ନବେଦୀ ପ୍ରତିଷ୍ଠା ସମାପନ କରି ପଶ୍ଚାତ୍ ଉଭୟେ ଗମନ କରିବା ।୨୭।

ଅତଃ ସ ନୃପତଃ ଶ୍ରୀମାନ୍ ଶିଳ୍ପଶାସ୍ତ୍ରବିଶାରଦାନ ।
ପାଷାଣଖଣ୍ଡଘଟନାକର୍ମଣ୍ୟେକୈକଯୋଗତଃ ।
ସତ୍କାରୈର୍ଦାନମାନୈଶ୍ଚ ଯୋଜୟାମାସ ସାଦରମ୍ । ୨୮ ।
ଦିନେ ଦିନେ ସୁଘଟିତଃ ପ୍ରାସାଦୋ ବବୃଧେ ଦ୍ୱିଜାଃ ।
ପଶ୍ୟତଃ ପୂର୍ଣ୍ଣିମାଣସ୍ତୁ ଶୁକ୍ଳପକ୍ଷେ ଯଥା ଶଶୀ । ୨୯ ।
ଏବଂ ସୁଘଟମାନୋଽପି ପ୍ରାସାଦଃ ପରିବର୍ଦ୍ଧିତଃ ।
ମହୋଚ୍ଛ୍ରିତ୍ୱାଦଲ୍ପେନ ନ କାଲେନାଭିଲକ୍ଷ୍ୟତେ । ୩୦ ।
ପାଷାଣସଂଖ୍ୟା ଶକ୍ୟା ବା କଥଞ୍ଚିଦ୍ ଘଟନାକ୍ରମାତ୍ ।
ବିତ୍ତବ୍ୟୟସ୍ତୁ କୋଟୀନାଂ ନ ସଂଖ୍ୟା ତସ୍ୟ ଶକ୍ୟତେ । ୩୧ ।
ଯାବନ୍ତୋ ଭାରତେ ବର୍ଷେ ଲୋକାଃ ସମସ୍ତବର୍ତ୍ତିନଃ ।
ଇନ୍ଦ୍ରଦ୍ୟୁମ୍ନସ୍ୟ ନୃପତେର୍ନିଯୁକ୍ତାସ୍ତେ ମହୀଭୃତଃ । ୩୨ ।

---

ତଦନନ୍ତର ଶ୍ରୀମାନ ନୃପବର ପ୍ରସ୍ତର ଖଣ୍ଡ ଘଟିତ ଦେବଗୃହ ଗଠନ କାର୍ଯ୍ୟରେ ଶିଳ୍ପ ବ୍ୟବସାୟ ନିପୁଣ ବ୍ୟକ୍ତିମାନଙ୍କ ପ୍ରତ୍ୟେକଙ୍କୁ ସତ୍କାର ଧନ ଦାନ ଓ ସମ୍ମାନ ସହିତ ନିଯୁକ୍ତ କଲେ ।୨୮। ହେ ଦ୍ୱିଜଗଣ ! ଦିନକୁ ଦିନ ଏହି ପ୍ରାସାଦଟି ସୁଘଟିତ ଓ ପରିବର୍ଦ୍ଧିତ ହେବାକୁ ଲାଗିଲା । ଶୁକ୍ଳପକ୍ଷୀୟ ଶଶଧର ନ୍ୟାୟରେ କ୍ରମଶଃ ସର୍ବ ଅବୟବ ସୁନ୍ଦର ହୋଇ-ଉଠିଲା ।୨୯। ପ୍ରାସାଦଟି ଏପରି ଗଠିତ ହେଲା ଯେ, ତାହାର ଅତି ଉଚ୍ଚତା ନିବନ୍ଧନ କ୍ଷଣ ଦୃଷ୍ଟିରେ ସବୁ ଅବୟବ ଲକ୍ଷିତ ହୋଇପାରେ ନାହିଁ ।୩୦। ବରଂ ତାହାର ପ୍ରସ୍ତର ସଂଖ୍ୟା ଘଟଣା କ୍ରମରେ କଥଞ୍ଚିତ ନିର୍ଣ୍ଣୟ କରାଯାଇ ପାରେ । ମହା-ରାଜଙ୍କର ଏଥିରେ ଯେ କେତେ କୋଟି ବିତ୍ତବ୍ୟୟ ହୋଇଥିଲା, ତା ସଂଖ୍ୟାତ ହୋଇପାରେ ନାହିଁ ।୩୧। ସେ କାଳରେ ଏହି ଭାରତବର୍ଷ ମଧ୍ୟରେ ଯେଉଁ ସମସ୍ତ ମହୀପାଳ ବାସ କରୁଥିଲେ, ଇନ୍ଦ୍ରଦ୍ୟୁମ୍ନ ସେ ସମସ୍ତଙ୍କୁ ଉକ୍ତ କାର୍ଯ୍ୟରେ ନିଯୁକ୍ତ କରିଥିଲେ ।୩୨।

ଏକୈକଶୋ ନିଯୁକ୍ତା ଯେ ପରସ୍ପରସମନ୍ୱିତାଃ ।
ତୈସ୍ତାପ୍ୟନ୍ୟେ ନିଯୁକ୍ତାସ୍ତେ ସର୍ବେ ତତ୍ର ପ୍ରବର୍ତ୍ତିତାଃ । ୩୩ ।
ଅନିଶଂ ତନ୍ନିଯୁକ୍ତାନାଂ ଯୋ ହର୍ଷୋତ୍ଥୋ ମହାରବଃ ।
ଆକାଶମଣ୍ଡଳଂ ବ୍ୟାପ୍ୟ ଦିଶାଂ ବ୍ୟାନଶେ ସ୍ଥିରସ୍ଥିରମ୍ । ୩୪ ।
ନୃପତେଃ ଶ୍ରଦ୍ଧୟା ଭକ୍ତ୍ୟା ସାତ୍ତ୍ୱିକେନ ପ୍ରସାଦିତା ।
ଶ୍ରୀଃ ସମୃଦ୍ଧାଭବଦ୍ଦେବ୍ୟାଃ କୀର୍ତ୍ତ୍ୟା ସହ ମହୀପତେଃ । ୩୫ ।
କ୍ୱଚିତ୍ କାଞ୍ଚନବନ୍ୟସ୍ତନାନାରତ୍ନମୟୋଜ୍ଜ୍ୱଲଃ ।
କ୍ୱଚିତ୍ ସ୍ଫାଟିକଭିତ୍ତ୍ୟା ତୁ ଶାରଦାଭ୍ରନଭଶ୍ଛବିଃ ।
କ୍ୱଚିନ୍ନୀଲାଶ୍ମଘଟିତା ଭିତ୍ତିଃ କାଳାଭ୍ରମେଦୁରା । ୩୬ ।
ଏବଂ ସୁଘଟିତେ ବିପ୍ରାଃ ପ୍ରାସାଦେ ସୁମନୋହରେ ।
ଗର୍ଭପ୍ରତିଷ୍ଠାଂ ବିଧିବତ୍ କୃତ୍ୱା ସ ନୃପସତ୍ତମଃ । ୩୭ ।

---

ଯେଉଁମାନେ ଏକ ଏକ କରି ନିଯୁକ୍ତ ହୁଅନ୍ତି ସେମାନେ ପୁନର୍ବାର ପରସ୍ପର ମିଳିତ ହୋଇ ଅପର ଅପର ବହୁ ଲୋକଙ୍କୁ ନିଯୁକ୍ତ କଲେ । ୩୩ । ସମସ୍ତେହିଁ ପ୍ରାସାଦ କାର୍ଯ୍ୟରେ ପ୍ରବୃତ୍ତ ହେଲେ । ଏହିପରି ଭାବରେ ଅନବରତ ନିଯୁକ୍ତ ଲୋକ ସମ୍ପ୍ରଦାୟର ହର୍ଷ ସମ୍ଭୂତ ଯେ ମହାରବ ଉତ୍ଥିତ ହେଲା, ତଦ୍ଦ୍ୱାରା ନଭୋମଣ୍ଡଳ ପରିବ୍ୟାପ୍ତ ଓ ଦିଗ ବିଦିଗ ସମସ୍ତ ପରିପୂର୍ଣ୍ଣ ହୋଇ ଉଠିଲା ।୩୪। ହେ ବିପ୍ରଗଣ ! ନରପତିଙ୍କ ଭକ୍ତି, ଶ୍ରଦ୍ଧା ଓ ସାତ୍ତ୍ୱିକ ଭାବରେ ପ୍ରସନ୍ନ ହୋଇ ଶ୍ରୀ ଦେବତା ତାହାଙ୍କ କୀର୍ତ୍ତିସହିତ ସୁସମୃଦ୍ଧା ହୋଇ ଉଠିଲେ । ୩୫ । ଏହାର ପ୍ରତ୍ୟେକଟି କୋଣ କାଞ୍ଚନ ବିନ୍ୟସ୍ତ, ବିବିଧ ରତ୍ନରାଜିରେ ସମୁଜ୍ଜ୍ୱଳ । କେଉଁଠାରେ ସ୍ଫଟିକ ମୟ ଭିତ୍ତି ଦ୍ୱାରା ଶରତ୍‌କାଳୀନ ମେଘମଣ୍ଡଳ-ମଣ୍ଡିତ ଆକାଶ ମଣ୍ଡଳରେ ପ୍ରକାଶିତ ହୋଇଅଛି । କୌଣସି କୌଣସି ଭିତ୍ତି ନୀଳକାନ୍ତମଣି-ନିକର ସନ୍ନିବିଷ୍ଟ ହେତୁ କଳାମେଘର ଆଭା ଧାରଣ କରିଅଛି । ୩୬ । ଏପରି ବିବିଧ ମନୋହର ଗୁଣ ସମ୍ପନ୍ନ ଭଗବତ୍ ପ୍ରାସାଦ ସୁସମ୍ପନ୍ନ ହେଲେ, ନରପତି ଏହାର ଗର୍ଭ ପ୍ରତିଷ୍ଠା ବିଧିବଦ୍ଧ ଭାବରେ ସମ୍ପାଦନ କଲେ । ୩୭ ।

ବଜ୍ରପାତାଦଶାନ୍ତ୍ୟାଦିବାରଣାର୍ଥଂ ଯଥୋଦିତମ୍ ।
ଶିଳ୍ପିଶାସ୍ତ୍ରେଽପି ମଣ୍ୟାଦିବିନ୍ୟସ ପୌରୁଷାକୃତମ୍ ।୩୮।
ପୁନଃ ପ୍ରାସାଦଘଟନା ସମ୍ଭାରେଚିତମେବ ବୈ ।
ବହୁମୂଲ୍ୟଂ ରତ୍ନଜାତଂ ଯତ୍ନାତ୍ତତ୍ର ନ୍ୟବେଶୟତ ।୩୯।
ତତୋ ସମୁଚ୍ୟମାନେଽପି ନ ପ୍ରାସାଦେ କୀର୍ତ୍ତିବର୍ଦ୍ଧନେ ।
ମନସାପି ନ ସମ୍ଭାବ୍ୟ ଜିଷ୍ଣୁ କାଳେଷୁ ଭୂଭୁଜାମ୍ ।
ଦେବାନାମପି ନୋ ଲକ୍ଷ୍ୟେ ଦ୍ୱିଜାଃ କଳ୍ପାନ୍ତବାସିନାମ୍ ।୪୦।
ପ୍ରାସାଦ ଈଦୃଶୋ ଭୂମୌ କ୍ୱଚିତ ଘଟିତୋ ନ ହି ।
ସ୍ୱର୍ଗେ ବା ଇତ୍ୟଥମାଦିତ୍ୟା ଆ ଶଂସନ୍ତି ପରସ୍ପରମ୍ ।୪୧।
ଭୂପତେ ଦୁର୍ଲ୍ଲଭଂ କଂ ସ୍ୟାତ୍ ସହାୟୋ ଯସ୍ୟ ନାରଦଃ ।
ପିତାମହସ୍ତୁ ଜଗତାଂ ସ୍ରଷ୍ଟା କାର୍ଯ୍ୟଧୁରନ୍ଧରଃ ।୪୨।

---

ପ୍ରାସାଦ ଉପର ଭାଗରେ ବଜ୍ରପାତ ପ୍ରଭୃତି ଭୟ ନିରାକରଣ ନିମନ୍ତେ ଶିଳ୍ପଶାସ୍ତ୍ରାନୁସାରେ ପୁରୁଷ ପ୍ରତିକୃତି ମଣି ଆଦିର ବିନ୍ୟାସ ସମାହିତ ହେଲା ।୩୮। ପୁନର୍ବାର ପ୍ରାସାଦ ଘଟଣା ଉପଯୋଗୀ ବହୁମୂଲ୍ୟ ରତ୍ନଜାତ ଯତ୍ନ ସହକାରେ ତହିଁରେ ନ୍ୟାସ କଲେ । ତଦନନ୍ତର ଇନ୍ଦ୍ରଦ୍ୟୁମ୍ନ ଏହି କୀର୍ତ୍ତି ସମୃଦ୍ଧିକ ପ୍ରାସାଦ ସମ୍ପର୍କରେ ସମସ୍ତ କର୍ତ୍ତବ୍ୟ ସମାପନ କଲେ ଅନ୍ୟାନ୍ୟ ଭୂପାଳ-ମାନଙ୍କର ଜୀବନକାଳରେ ମଧ୍ୟ ମନ କଳ୍ପନା ସମ୍ଭାବ୍ୟ ବୋଲି ଏହା ବିବେଚିତ ହୁଏନାହିଁ । ହେ ଦ୍ୱିଜଗଣ ! ଆକଳ୍ପ ବାସୀ ତ୍ରିଦଶ-ମାନଙ୍କର ଏହା କେତେବେଳେ ହେଲେ ଲକ୍ଷିତ ହୁଏ-ନାହିଁ ।୪୦। ଭୂପୃଷ୍ଠରେ ଏପରି ଦେବଗୃହ କୌଣସି କାଳରେ ପ୍ରସ୍ତୁତ ହୋଇ ନଥିଲା । ସ୍ୱର୍ଗରେ ମଧ୍ୟ ଅସମ୍ଭବ । ଦେବଗଣ ଏହି ପ୍ରକାରରେ ପରସ୍ପର ପ୍ରଶଂସା କରିବାକୁ ଲାଗିଲେ ।୪୧। ଯାହାଙ୍କର ସହାୟକ ନାରଦ ସେହି ନରପତିଙ୍କର କୌଣସି ବସ୍ତୁ ଦୁର୍ଲ୍ଲଭ ଥାଏ କି ? ବିଶେଷତଃ ଯହିଁରେ ଜଗତ ସ୍ରଷ୍ଟା ପିତାମହ ଏହାର କାର୍ଯ୍ୟଭାର ବହନ କରିଅଛନ୍ତି । ଯେଉଁ ବ୍ୟକ୍ତି ବିଷ୍ଣୁଭକ୍ତ

ଅଥବା ବିଷ୍ଣୁଭକ୍ତସ୍ୟ ନାତିଦୂରଂ ଚିକୀର୍ଷିତମ୍ ।
ବିଷ୍ଣୋସ୍ତଦଭକ୍ତଲୋକସ୍ୟ ନାନ୍ତରଂ ବଦ୍ୟତେ ଦ୍ୱିଜାଃ । ୪୩ ।
ତତଃ ସ ନାରଦଂ ପ୍ରାହ ପ୍ରାସାଦାନ୍ତର୍ମୁନୀଶ୍ୱରମ୍ ।
ଭଗବଦ୍‌ବପୁର୍ବ୍ରହ୍ମର୍ଷି ପ୍ରାସାଦୋଽସ୍ତୁ ଚିରଂ ମମ । ୪୪ ।
ଇତ୍ୟୁକ୍ତ୍ୱା ପାଦୟୋର୍ମୂର୍ଦ୍ଧ୍ନା ପ୍ରଣନାମ ସ ନାରଦମ୍ ।
ନାରଦୋଽପି ତମୁତ୍ଥାପ୍ୟ ପରିଷ୍ୱଜ୍ୟ ନୃପୋତ୍ତମମ୍ ।
ତ୍ୱତ୍ତୋ ନ ଭେଦେ ନୃପତେ ମମାସ୍ତି ଖଲୁ ତତ୍ତ୍ୱତଃ । ୪୫ ।
ଯସ୍ତ୍ୱ ସାକ୍ଷାଜ୍ଜଗନ୍ନାଥ ଆବିର୍ଭୂତଃ କୃତେ ତବ ।
ଯତ୍ ପାଦପଦ୍ମେ ଯାଦୃକ୍ ତେ ଚେତଃ ପ୍ରବଣତାଂ ଗତମ୍ ।
ଭକ୍ତ୍ୟା ହ୍ୟନନ୍ୟୟା ପୁଂସଃ କିମତଃ ପରମସ୍ତି ବୈ ।
ଆଗମ୍ୟାଭ୍ୟର୍ଚ୍ଚୟସ୍ୱୈନଂ ଜୀବନ୍ମୁକ୍ତୋଽସି ସାମ୍ପ୍ରତମ୍ । ୪୬ ।

---

ହୁଏ, ତାହାର କୌଣସି ଅଭିଳଷିତ କାର୍ଯ୍ୟ ଦୁଷ୍କର ହୁଏନାହିଁ । ହେ ବିପ୍ରବୃନ୍ଦ ! ବିଷ୍ଣୁ ଏବଂ ତଦୀୟ ଭକ୍ତବୃନ୍ଦ ଏହି ଉଭୟଙ୍କ ମଧ୍ୟରେ କିଛିହେଲେ ପାର୍ଥକ୍ୟ ନାହିଁ । ୪୩ । ତଦନନ୍ତର ନରରାଜ ପ୍ରାସାଦ ମଧ୍ୟରେ ନାରଦ ଋଷିଙ୍କୁ କହିଲେ, ହେ ଋଷେ ! ମୋର ଏହି ପ୍ରାସାଦଟି ଯେପରି ଚିରକାଳ ପର୍ଯ୍ୟନ୍ତ ସେହି ଭଗବାନଙ୍କ ଶରୀର ଆଶ୍ରୟ ସମ୍ପନ୍ନ ହୋଇ ରହିବ, ଏହି କଥା କହି ମୁନିବର ପାଦଦ୍ୱୟରେ ମସ୍ତକ ଦ୍ୱାରା ପ୍ରଣାମ କରିବାକୁ ଲଗିଲେ । ୪୪ । ଶ୍ରୀନାରଦ୍ ନରପତିଙ୍କୁ ଉତ୍ଥାପନ କରି ଆଲିଙ୍ଗନ ପୂର୍ବକ କହିଲେ, ହେ ନରପତେ ! ତୁମ୍ଭ ମୋ ଭିତରେ କୌଣସି ପ୍ରଭେଦ ନାହିଁ । ତୁମ୍ଭ ନିମିତ୍ତ ଏହି ଯେଉଁ ସାକ୍ଷାତ ଜଗନ୍ନାଥ ଆବିର୍ଭୂତ ହୋଇଅଛନ୍ତି, ତାହାଙ୍କ ପାଦ ପଦ୍ମରେ ଆପଣଙ୍କ ଅନ୍ତଃକରଣ ଯେ ଅନନ୍ୟ ଭକ୍ତିଦ୍ୱାରା ଏପରି ପ୍ରବଣ ହୋଇଅଛି, ପୁରୁଷ ପକ୍ଷରେ ଏହାଠାରୁ ବଳି ଆଉ କଣ ପରମାର୍ଥ ଥାଇପାରେ ? ବର୍ତ୍ତମାନ ଆସ, ଏହାଙ୍କୁ ଅର୍ଚ୍ଚନା କର, ସମ୍ପ୍ରତି ତୁମ୍ଭେ ଜୀବନ୍ମୁକ୍ତ ହୋଇଅଛ । ୪୬ ।

ତୀର୍ଥୈର୍ମନ୍ତ୍ରୈର୍ଜପୈର୍ଦାନୈଃ ନରୁଭିଃ ଶ୍ରେଷ୍ଠଦକ୍ଷିଣୈଃ ।
ବ୍ରତୈରଧ୍ୟୟନୈର୍ଭୂପ ତପୋଭିଶ୍ଚ ଯଦର୍ଜିତୁମ୍ ।
ନ ଶକ୍ୟଂ ତବ ରାଜେନ୍ଦ୍ର ଭକ୍ତ୍ୟା ତତ୍ତ୍ୱ କରମାଗତମ୍ । ୪୭ ।
ଅତଃ ପରଂ ନ ଶୋଚସ୍ୱ ଭକ୍ତିଯୋଗେ ନମୋଽସ୍ତୁ ତେ ।
ପିତାମହଂ ଦ୍ରଷ୍ଟୁକାମୋ ଗନ୍ତା ଚେଦନ୍ତିକଂ ବଯୋଃ ।
ଉପଦେକ୍ଷ୍ୟତି ସୋଽପ୍ୟସ୍ୟ ଯାତ୍ରାସ୍ତାସ୍ତା ମହୋତ୍ସବାନ୍ । ୪୮ ।
ସ୍ୱୟଞ୍ଚ ଭଗବାନେବ ବରଂ ତୁଭ୍ୟଂ ପ୍ରଦାସ୍ୟତି ।
ପ୍ରତିଷ୍ଠାପିତେ ପ୍ରାସାଦେ ତସ୍ମିନ୍‌କାଲେ ସ୍ୱୟମ୍ଭୁବା ।
ଅହମପ୍ୟାଗମିଷ୍ୟାମି ତଦା ସପ୍ତର୍ଷିଭିଃ ସହ । ୪୯ ।

---

ତୀର୍ଥ ପର୍ଯ୍ୟଟନ, ମନ୍ତ୍ରଜପ, ଦାନ, ଭୂରିଦକ୍ଷିଣା, ଯାଗ, ଯଜ୍ଞ ଦ୍ୱାରା ଯେଉଁ ଫଳ ଉପାର୍ଜନ କରିବାକୁ ଶକ୍ତ ନ ହୁଏ, ହେ ରାଜେନ୍ଦ୍ର ! ଏକମାତ୍ର ଭକ୍ତି ଦ୍ୱାରହିଁ ତାହା ତୁମ୍ଭର ହସ୍ତଗତ ହୋଇ-ଅଛି । ୪୭ । ଅତଏବ ଆଉ ଶୋକ କରନାହିଁ । ବର୍ତ୍ତମାନ ପ୍ରାର୍ଥନା କରି ଐକାନ୍ତିକ ଭକ୍ତିଯୋଗରେ ତୁମ୍ଭର ମନ ନିବିଷ୍ଟ ହେଉ । ତୁମ୍ଭେ ଯଦି ପ୍ରଶ୍ନାର୍ଥୀ ହୋଇ ପିତାମହଙ୍କ ନିକଟକୁ ଗମନ କର ତେବେ ସେ ମଧ୍ୟ ତୁମ୍ଭଙ୍କୁ ଏହି ଦେବାଧିପଙ୍କର ସେହି ସେହି ଯାତ୍ରା ମହୋତ୍ସବ ଉପଦେଶ କରିବେ । ଚିନ୍ତା କରନାହିଁ । ସ୍ୱୟଂ ଭଗବାନହିଁ ତୁମ୍ଭଙ୍କୁ ଅଭିଲଷିତ ବର ପ୍ରଦାନ କରିବେ । ବିଶେଷ କରି ସ୍ୱୟଂଭୂ ଯେତେବେଳେ ସ୍ୱୟଂ ଆସି ତୁମ୍ଭର ଏହି ପ୍ରାସାଦ ପ୍ରତିଷ୍ଠା କାର୍ଯ୍ୟ କରିବେ, ମୁଁ ମଧ୍ୟ ପୁନର୍ବାର ସପ୍ତର୍ଷି ମଣ୍ଡଳଙ୍କ ସହିତ ଆସିବି । ଅତଏବ ଆସ, ଉଭୟେ ନିର୍ମଳ ବ୍ରହ୍ମ ଲୋକକୁ ଯାତ୍ରା କରିବା ।

ତଦା ବାଂ ତତ୍ର ଗଚ୍ଛାବୋ ବ୍ରହ୍ମଲୋକମକଲ୍ମଷମ୍ ।
ତ୍ୱାଂ ବିନା ଭୁବି କଃ ଶକ୍ତୋ ବ୍ରହ୍ମଲୋକଗତିଂ ପ୍ରତି ।
ଇତ୍ୟୁକ୍ତ୍ୱା ନାରଦୋ ଭୂପମୁତ୍ପପ୍ଲୌ ଚ ନଭଃସ୍ଥଲମ୍ ।୫୦।
ଇତି ଶ୍ରୀସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନେନ ଶ୍ରୀଦାରୁବ୍ରହ୍ମଣେ ପ୍ରାସାଦନିର୍ମାଣଂ
ନାମୈକବିଂଶୋଽଧ୍ୟାୟଃ ।୨୧।

---

ପୃଥିବୀରେ ତୁମ୍ଭ ଭିନ୍ନ ସେଠାକୁ ଗମନ କରିବା ଅନ୍ୟ ବ୍ୟକ୍ତି ସମର୍ଥ ହୁଏ କି ? ନାରଦ ମୁନି ନରପତିଙ୍କୁ ଏହି କଥା କହି ଆକାଶ ମାର୍ଗରେ ଉତ୍ପତିତ ହେଲେ । ୫୦ ।

॥ ଏକବିଂଶ ଅଧ୍ୟାୟ ସମାପ୍ତ ॥



## ଦ୍ୱାତ୍ରିଂଶୋଽଧ୍ୟାୟଃ

ଜୈମିନିରୁବାଚ

ରାଜା ଚ ତମୁବାଚେଦଂ ଲକ୍ଷ୍ୟଗମନଂ ପ୍ରତି ।
ଅସ୍ତ୍ୟଂ ପୁଷ୍ପରଥୋଽତ୍ୟେବ ମନସୋ ବେଗବାନ୍ ମୁନେ ।୧।

ଏନମାରୁହ୍ୟ ଯାସ୍ୟାବଃ କ୍ଷଣଂ ଯାବତ୍ପ୍ରତୀକ୍ଷତାମ୍ ।
ଯାବଦେତାନନୁଜ୍ଞାପ୍ୟ ପ୍ରାସାଦେ ହ୍ୟଧିକାରଣଃ ।
ପ୍ରଦକ୍ଷିଣୀକୃତ୍ୟ ବିଭୁମାସ୍ମି ମୁନିସତ୍ତମ ।୨।

ନାରଦୋଽପି ବଚଃ ଶ୍ରୁତ୍ୱା ଶ୍ରଦ୍ଧଧାନେ ନୃପୋତ୍ତମ ।
କରେଣ ଧୃତ୍ୱା ରାଜାନଂ ମହାବେଦୀଂ ପ୍ରବିଶ୍ୟ ଚ ।

ସହିତଂ ରାମଭଦ୍ରାଭ୍ୟାଂ ନତ୍ୱା କୃଷ୍ଣଂ ମୁହୁର୍ମୁହୁଃ ।
ଅନୁଜ୍ଞାଂ ପ୍ରାର୍ଥୟାମାସ ବ୍ରହ୍ମଲୋକଗତିଂ ପ୍ରତି ।୩।

---

## ଦ୍ୱାତ୍ରିଂଶ ଅଧ୍ୟାୟ

ଜୈମିନି କହିଲେ—ନରପତି ସେହି ଅଲକ୍ଷିତ ପ୍ରସ୍ଥାତା ଋଷି-ବରଙ୍କୁ କହିଲେ ଯେ ହେ ମୁନେ ! ମୋର ଏହି ମନଠାରୁ ବେଗଗାମୀ ପୁଷ୍ପକ ରଥ ରହିଅଛି । ଆମ୍ଭେ ଉଭୟେ ଏହି ରଥରେ ଆରୋହଣ ପୂର୍ବକ ଗମନ କରିବା । ୧ । ବର୍ତ୍ତମାନ କ୍ଷଣକାଳ ପ୍ରତୀକ୍ଷା କରନ୍ତୁ । ମୁଁ ପ୍ରାସାଦ କାର୍ଯ୍ୟରେ ନିଯୁକ୍ତ ବ୍ୟକ୍ତିମାନଙ୍କୁ ଆଦେଶ କରି ଓ ପ୍ରଭୁଙ୍କୁ ପ୍ରଦକ୍ଷିଣ ପୂର୍ବକ ଆଗମନ କରିବି । ନାରଦ ମଧ୍ୟ ନରପତିଙ୍କ ବାକ୍ୟରେ ଶ୍ରଦ୍ଧା ପ୍ରକାଶ ଓ ତାଙ୍କ ହସ୍ତଧାରଣ ପୂର୍ବକ ମହାବେଦୀରେ ପ୍ରବେଶ ହେଲେ । ବଳରାମ ଓ ସୁଭଦ୍ରାଦେବୀଙ୍କ ସହିତ ଜଗନ୍ନାଥ ଦେବଙ୍କୁ ବାରମ୍ବାର ପ୍ରଣାମ କରି ବ୍ରହ୍ମଲୋକ ଯାତ୍ରା ନିମନ୍ତେ ଅନୁମତି ପ୍ରାର୍ଥନା କଲେ । ୩ ।

ଇନ୍ଦ୍ରଦ୍ୟୁମ୍ନୋଽପି ବଚସା ବପୁଷା ମନସା ହରିମ୍ ।
ପ୍ରଦକ୍ଷିଣୀକୃତ୍ୟ ପୁନନତ୍ୱା ସାଷ୍ଟାଙ୍ଗମୁନ୍ମନାଃ ।
ବ୍ରହ୍ମଲୋକଗତିଂ ବଧ୍ୱା ଯାଚତେ ସ୍ମ କୃତାଞ୍ଜଳିଃ ।୪।
ଉଭୌ ତୌ ଦିବ୍ୟଯାନେନ ଜଗ୍ମତୁର୍ମୁନିଭୂଭୃତୌ ।
ପ୍ରଦକ୍ଷିଣୀକୃତ୍ୟ ରବିଂ ବ୍ୟୋମମଣ୍ଡଳମଧ୍ୟଗମ୍ ।
ଉପର୍ଯ୍ୟୁପରି ଜଗ୍ମାତେ ବ୍ୟତୀତ୍ୟ ଧ୍ରୁବମଣ୍ଡଳମ୍ ।୫।
ଜନଲୋକଗତୈଃ ସିଦ୍ଧୈଃ ସତ୍ୱରବନତୋନ୍ମୁଖୈଃ ।
ବୀକ୍ଷ୍ୟମାଣୌ ମୁଦା ଯୁକ୍ତୌ ସଂଲପନ୍ତୌ ପରସ୍ପରମ୍ ।
ଭଗବଚ୍ଚରିତଂ ବିପ୍ରା ମନୋମଳବିଶୋଧନମ୍ ।୬।
ଜୀବନ୍ମୁକ୍ତୋ ମୁନିଶ୍ରେଷ୍ଠଃ ସର୍ବଲୋକଂ ଭ୍ରମନ୍ସ୍ୱୟମ୍ ।
ଯଥା ନ ସିଦ୍ଧତଦ୍ୱାରସ୍ତଥାୟଂ ମର୍ତ୍ତ୍ୟବାସ୍ୟପି ।
ଭୂପତିଃ ପ୍ରଯଯୌ ଶୀଘ୍ରଂ ବିଷ୍ଣୁଭକ୍ତିପ୍ରସାଦତଃ ।୭।

---

ହେ ବିପ୍ରଗଣ ! ଇନ୍ଦ୍ରଦ୍ୟୁମ୍ନ କାୟ ମନ ବାକ୍ୟରେ ହରିଦେବଙ୍କୁ ପ୍ରଦକ୍ଷିଣ କରି ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ କୃତାଞ୍ଜଳି ପୁଟରେ ବ୍ରହ୍ମଲୋକକୁ ଗମନ କରିବା ପାଇଁ ପ୍ରାର୍ଥନା କଲେ । ୪ । ତଦନନ୍ତର ଉଭୟେ ସେହି ଦିବ୍ୟଯାନରେ ଅଧିଷ୍ଠିତ ହୋଇ ଗମନ କରିବାକୁ ଲାଗିଲେ, କ୍ରମଶଃ ନଭୋମଣ୍ଡଳବର୍ତ୍ତୀ ସୂର୍ଯ୍ୟମଣ୍ଡଳ ପ୍ରଦକ୍ଷିଣ କରି ଧ୍ରୁବମଣ୍ଡଳ ଅତିକ୍ରମ ପୂର୍ବକ ଊର୍ଦ୍ଧ୍ୱରୁ ଊର୍ଦ୍ଧ୍ୱତର ସ୍ଥାନକୁ ପ୍ରାପ୍ତ ହେଲେ । ୫ । ଏହି ସମୟରେ ଜନଲୋକବାସୀ ସିଦ୍ଧଗଣ ଯଥା ଶୀଘ୍ର ଅଗ୍ରଭାଗରେ ମୁଖକୁ ଅବନତ କରି ଏହାଙ୍କୁ ଦେଖିବାକୁ ଲାଗିଲେ । ଏମାନେ ମନୋମଳ ବିଶୋଧକ ଭଗବତ୍ ଚରିତ ବିଷୟରେ ପରସ୍ପର ବାକ୍ୟାଳାପ କରି କରି ହର୍ଷାନ୍ୱିତ ହେଲେ । ୬ । ମୁନିଶ୍ରେଷ୍ଠ ଜୀବନ୍ମୁକ୍ତ ମହାତ୍ମା ନାରଦ ଯେପରି ଅବାରିତ ଦ୍ୱାରରେ ସର୍ବଲୋକ ଭ୍ରମଣ କରି ଯାତା କଲେ, ଏହି ନରଲୋକ ବାସୀ ନରପାଳ ମଧ୍ୟ ଏକମାତ୍ର ବିଷ୍ଣୁଭକ୍ତି ପ୍ରସାଦରେ ସେହିପରି ତାଙ୍କ ସହଯୋଗ ନେଇ ଯଥାଶୀଘ୍ର ଗମନର ଅଧିକାରୀ ହେଲେ । ୭ ।

ବ୍ରହ୍ମାଣ୍ଡବିଷୟେ ନୈତଦ୍ଦୁଷ୍ପ୍ରାପଂ ବସ୍ତୁ ବିଦ୍ୟତେ ।
ବିଷ୍ଣୁଭକ୍ତେନ ଯଲ୍ଲଭ୍ୟମପରଂ ମୁକ୍ତମେବ ଯଃ ।୮।
ମର୍ତ୍ତ୍ୟଲୋକଗତୈଃ ସିଦ୍ଧୈଃ ସାଦରାଭ୍ୟର୍ଚ୍ଚିତୌ ଚ ତୌ ।
ଇନ୍ଦ୍ରଦ୍ୟୁମ୍ନୋ ନ ସସ୍ମାର ପାର୍ଥିବଂ ଦେହମାତ୍ମନଃ ।୯।
କ୍ରମାଦୂର୍ଦ୍ଧ୍ୱଗତଂ ଗଚ୍ଛନ୍ ପଶ୍ୟନ୍ ସୌଖ୍ୟୈକଭାଜନାନ୍ ।
ନର୍ଦ୍ଦନ୍ଧ୍ୱାନଭିଲାଷୋଽଥ ତତ୍କ୍ଷଣାଦେବ ପୌରୁଷାନ୍ ।୧୦।
କେବଲଂ ଭଗବତ୍ପ୍ରୀତ୍ୟୈ କର୍ମଭୂମୌ ଚକାର ଯତ୍ ।
ପ୍ରାସାଦଂ ଚନ୍ତୟାମାସ ସମ୍ପୂର୍ଣ୍ଣୋ ବା ନ ବା ଭବେତ୍ ।୧୧।
ମୟ୍ୟାଗତେ ବ୍ରହ୍ମଲୋକଂ ଶତ୍ରୁଭିର୍ବାଭିଭୂୟତେ ।
ଶ୍ଳାଘନ୍ତି ବା ଭୃତ୍ୟାସ୍ତେ ସେବକା ଦ୍ରବ୍ୟଲୋଭତଃ ।୧୨।

---

ଏହି ନିଖିଳ ବ୍ରହ୍ମାଣ୍ଡ ରାଜ୍ୟରେ ବିଷ୍ଣୁଭକ୍ତର କିଛି ହେଲେ ଦୁର୍ଲଭ ହୁଏ ନାହିଁ । ଅଧିକନ୍ତୁ ସେ ମୁକ୍ତି ପର୍ଯ୍ୟନ୍ତ ଲାଭ କରିବାକୁ ସମର୍ଥ ହୋଇଥାଏ ।୮। ସୁତରାଂ ସେ ମର୍ତ୍ତ୍ୟ ଲୋକରେ ଉପସ୍ଥିତ ହୋଇ ତତ୍ରସ୍ଥ ସିଦ୍ଧଗଣଙ୍କ ଦ୍ୱାରା ସାଦର ଅଭ୍ୟର୍ଥିତ ହେଲେ । ସେତେବେଳେ ଇନ୍ଦ୍ରଦ୍ୟୁମ୍ନ ନିଜ ଦେହକୁ ଆଉ ପାର୍ଥିବ ବୋଲି ସ୍ମରଣ କଲେ ନାହିଁ । ଏହି ଭାବରେ କ୍ରମଶଃ ଯେତେ ଊର୍ଦ୍ଧ୍ୱକୁ ଗମନ କଲେ, ସେତେ ପରମ ସୁଖୀ ବ୍ରହ୍ମରହିତ ପୁରୁଷ ସମସ୍ତଙ୍କୁ ଦେଖି ଦେଖି ଆଶୁ ସନ୍ତୋଷ ଲାଭ କଲେ ।୧୦। କେବଳ ଭଗବାନଙ୍କ ପ୍ରୀତି ନିମନ୍ତେ କର୍ମ ଭୂମିରେ ଯେଉଁ ପ୍ରାସାଦଟି ନିର୍ମିତ ହୋଇଅଛି, ଏକମାତ୍ର ତାହାର ହିଁ ଚିନ୍ତା ମନରେ ଉପସ୍ଥିତ ହେବାକୁ ଲାଗିଲା ଯେ ଏହା ସମ୍ପୂର୍ଣ୍ଣ ହୋଇଅଛି କି ନା ? ମୁଁ ବ୍ରହ୍ମଲୋକକୁ ଯାଉଅଛି, ଇତି ଅବସରରେ ଶତ୍ରୁମାନେ ଆସି ଏହାକୁ ବିନଷ୍ଟ କରି ଅଧିକାର କରିନେବେ କି ? କିମ୍ବା ନିଯୁକ୍ତ ସେବକମାନେ ଦ୍ରବ୍ୟ ଲୋଭରେ ତହିଁରେ ଯତ୍ନ ସହିତ ଆଦର କରନ୍ତି ? ।୧୨।

ଗୃହୀତବେତନାଃ ଶିଲ୍ପିବୃନ୍ଦା ମନ୍ଦକତ୍ୱାସ୍ତଥା ।
ନ ଶୀଘ୍ରଂ ଘଟୟିଷ୍ୟନ୍ତି ମୟି ବ୍ରହ୍ମଲୋକଂଗତେ । ୧୩ ।
ଯାବଦ୍ ଗମିଷ୍ୟେ ଧାତାରଂ ଗୃହୀତ୍ୱାହଂ ଚତୁର୍ମୁଖମ୍ ।
ତାବନ୍ନ ପୁନରେବ ସ୍ୟାତ୍ ପ୍ରାସାଦୋ ମୟି ଦୂରଗେ । ୧୪ ।
ଇହାସ୍ମାତାସ୍ତୁ ଯେ ପୂର୍ବେ ନ ପୁନସ୍ତେ କ୍ଷିତିଂ ଗତାଃ ।
ମନ୍ତ୍ରୀଣୋ ମମ ସାମନ୍ତା ଇତ୍ଥଂ ବା ଦୁଷ୍ଟମାନସାଃ । ୧୫ ।
ରାଜ୍ୟଂ ମମ ହରିଷ୍ୟନ୍ତି ଦ୍ୱିଷନ୍ତଃ କମୁ ସାମ୍ପ୍ରତମ୍ । ୧୬ ।
ଇତ୍ଥମୁଦ୍‌ବିଗ୍ନମନସଂ ଚିନ୍ତ୍ୟମାନଂ ମହୀପତିମ୍ ।
ଅତୀତାନାଗତଜ୍ଞାନଜ୍ଞଧୀର୍ମୁନିରୁବାଚ ତମ୍ । ୧୭ ।

---

ମୁଁ ବ୍ରହ୍ମଲୋକକୁ ଆସିଲେ ବୋଲି ବେତନ ଭୋଗୀ ଶିଳ୍ପିବୃନ୍ଦ ଅବଶିଷ୍ଟ କର୍ତ୍ତବ୍ୟ କାର୍ଯ୍ୟରେ ଆଳସ୍ୟ ପ୍ରକାଶ କରି ତାହାକୁ ଶୀଘ୍ର ସଂପାଦନ କରିବେ ନାହିଁ ।୧୩। ଯେ ପର୍ଯ୍ୟନ୍ତ ମୁଁ ଚତୁର୍ମୁଖ ବିଧାତାଙ୍କୁ ନେଇ ପ୍ରତ୍ୟାବର୍ତ୍ତନ ନ କରିବି, ସେ ପର୍ଯ୍ୟନ୍ତ ମୋର ଦୂରରେ ଅବସ୍ଥିତି ହେତୁ ପ୍ରାସାଦ କାର୍ଯ୍ୟ ଶୀଘ୍ର ସମ୍ପନ୍ନ ହେବ ନାହିଁ । ଯେଉଁମାନେ ଥରେ ମାତ୍ର ଏହି ଲୋକକୁ ଆସନ୍ତି, ସେମାନେ ପୁନର୍ବାର ଆଉ ପୃଥିବୀକୁ ଫେରନ୍ତି ନାହିଁ । ଏହିପରି ବିବେଚନା କରି ସାମନ୍ତ ଗଣ ଦୁଷ୍ଟ ଚିତ୍ତରେ ମୋର ରାଜ୍ୟ ହରଣ କରିବେ କି ? ।୧୬। ମହୀପତି ଇନ୍ଦ୍ରଦ୍ୟୁମ୍ନ ଏ ପ୍ରକାର ଉଦ୍‌ବେଗ ସହିତ ଚିନ୍ତାକରି ପାଉଛନ୍ତି, ଏହା ସେହି ଭୂତ ଭବିଷ୍ୟତ ବେତ୍ତା ମୁନି-ବର ଜାଣିପାରି ତାଙ୍କୁ କହିଲେ,—ହେ ରାଜେନ୍ଦ୍ର ! ଆପଣ ଏ

କିଂ ଚିନ୍ତୟସି ରାଜେନ୍ଦ୍ର ତ୍ୱମେବଂ ଦୀନମାନସଃ ।
ଯତ୍ର ଗତ୍ୱାଗତାବାବାଂ ନ ଚିନ୍ତାବିଷୟସ୍ତୋ ହ୍ୟୟମ୍ ।
ନାଧୟସ୍ତୋ ବ୍ୟାଧୟସ୍ତଷ୍ଟାତ୍ର ପ୍ରଭବନ୍ତି କଦାଚନ ।
ନ ଜରା ନ ଚ ବା ମୃତ୍ୟୁଃ କିମନ୍ୟଦ୍ଦୁଃଖହେତୁକମ୍ ।
କୃତାର୍ଥୋଽପି ମହାଭାଗ ଯନ୍ନାନୁଷବପୁଃ ସ୍ୱୟମ ।
ବ୍ରହ୍ମଲୋକ ଇହାୟାତଃ ପ୍ରତ୍ୟକ୍ଷଂ ଦୃଷ୍ଟବାନ୍ ହରିମ୍ । ୧୮ ।
ଇହାୟାତା ନ ଶୋଚନ୍ତି ହେୟସ୍ତେ ସଂସାରକୃତ୍ୟକେ ।
ବ୍ରୁବାଣମିତ୍ଥଂ ଭୂପାଲସ୍ତମୁବାଚ ମୁନୀଶ୍ୱରମ୍ ।
ନ ହି ଶୋଚାମି ଭଗବନ୍ ରାଜ୍ୟସ୍ୱଜନବନ୍ଧୁଷୁ ।
ସମାରବ୍ଧୋ ଭଗବତଃ ପ୍ରାସାଦୋ ଯୋ ମୟାଧୁନା ।
ଅତ୍ରାଗତଂ ମାଂ ତେ ମତ୍ୱା ନାନୁତିଷ୍ଠନ୍ତି ସେବକାଃ । ୧୯ ।

---

ପ୍ରକାର ଦୁଃଖ ମନରେ କି ଚିନ୍ତା କରୁଅଛନ୍ତି ? ଆମ୍ଭେମାନେ ଯେ ସ୍ଥାନକୁ ଯାଇଅାଏ, ସେ ସ୍ଥାନ ଚିନ୍ତା କରିବାର ସ୍ଥଳ ନୁହେଁ । ସେଠାରେ ଅଧି ଓ ବ୍ୟାଧି କଦାପି ପ୍ରଭୁତ୍ୱ କରିପାରେ ନାହିଁ । ଜରାମୃତ୍ୟୁ ବା ଅନ୍ୟ କୌଣସି ଦୁଃଖ ସେଠାରେ ନାହିଁ । ହେ ମହାଭାଗ ! ତୁମ୍ଭେ କୃତାର୍ଥ ହେଲ । କାରଣ ସ୍ୱୟଂ ନର ଶରୀରରେ ହିଁ ଏହି ବ୍ରହ୍ମ ଲୋକକୁ ଆସି ହରିଦେବଙ୍କୁ ପ୍ରତ୍ୟକ୍ଷ ଦର୍ଶନ କରି-ଅଛ । ୮ । ଯେଉଁମାନେ ଏହି ଲୋକକୁ ଆଗମନ କରନ୍ତି, ସେମାନେ ଅଉ ତୁଚ୍ଛ ସଂସାର କାର୍ଯ୍ୟ ପାଇଁ ଶୋକ କରନ୍ତି ନାହିଁ । ମୁନୀଶ୍ୱର ଏ ପ୍ରକାର କହନ୍ତେ, ନରପତି ତାଙ୍କୁ କହିଲେ ଯେ, ହେ ଭଗବାନ୍ ! ମୁଁ ରାଜ୍ୟ ବା ସ୍ୱଜନ ବନ୍ଧୁ ପ୍ରଭୃତିଙ୍କ ନିମନ୍ତେ କୌଣସି ପ୍ରକାର ଶୋକ କରୁନାହିଁ । ବର୍ତ୍ତମାନ ଭଗବାନଙ୍କର ଯେଉଁ ପ୍ରାସାଦଟି ଆରମ୍ଭ କରିଅଛି, ସେବକଗଣ ମୋତେ ଏହି ସ୍ଥାନରେ ଆଗତ ଜାଣି, ସେଥିପ୍ରତି ମନଯୋଗ କରୁ-ନାହାନ୍ତି । ୧୯ ।

ଆରବ୍ଧସ୍ୟ ପ୍ରତିଷ୍ଠା ହି କର୍ତ୍ତବ୍ୟା ନିଶ୍ଚିତା ମୁନେ ।
ତସ୍ୟାନ୍ତରାୟଂ ସମ୍ଭାବ୍ୟ ଦୂଃଖିତଂ ମେ ମନଃ ପ୍ରଭୋ । ୨୦ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ପ୍ରହୃଷ୍ଟୋ ମୁନିରବ୍ରବୀତ୍ ।
ପ୍ରଜାପତିସମସ୍ତ୍ୱଂ ହି ନ ହି ସାମାନ୍ୟଭୂପତିଃ । ୨୧ ।
କେନାପ୍ୟପକୃତଂ ନୈବ ଭୂମୌ ପୂର୍ବମନୁଷ୍ଠିତମ୍ ।
କଂ ପୁନସ୍ତବ କୃତ୍ୟାନ୍ତୁ ଯଃ ସୃଷ୍ଟି ସ୍ଥିତିଧ୍ୱଂସକଂ । ୨୨ ।
ବ୍ରହ୍ମଲୋକଗତସ୍ୟାପି ପ୍ରତାପଯଶସୀ ତବ ।
ତ୍ରୈଲୋକ୍ୟଂ ଭ୍ରମତୋ ନିତ୍ୟଂ ଯଥା ସୂର୍ଯ୍ୟନିଶାକରୌ । ୨୩ ।
ଯସ୍ୟ କାର୍ଯ୍ୟେଷୁ ଭଗବାନ୍ ସହାୟୋଽସୌ ଚତୁର୍ମୁଖଃ ।
ତେଷୁ କଂ ରାଜଶାର୍ଦ୍ଦୂଳ ବିଘ୍ନଶଙ୍କାପି ଜାୟତେ । ୨୪ ।

---

ହେ ପ୍ରଭୋ ! ଯାହା ଆରମ୍ଭ ହୋଇଅଛି, ତାହାର ପ୍ରତିଷ୍ଠା କାର୍ଯ୍ୟ ନିଶ୍ଚୟ କରିବାକୁ ହେବ । କିନ୍ତୁ ବର୍ତ୍ତମାନ ତାହାର ବିଘ୍ନ ସମ୍ଭାବନାରେ ମୋର ମନ ଦୁଃଖିତ ହେଉଅଛି ।୨୦। ମୁନିବର ନାରଦ ରାଜାଙ୍କର ଉକ୍ତ ବାକ୍ୟକୁ ଶ୍ରବଣ କରି ଅତ୍ୟନ୍ତ ହର୍ଷ ସହିତ କହିଲେ, ତୁମ୍ଭେ ତ ସାମାନ୍ୟ ନରପତି ନୁହଁ, ପ୍ରଜାପତି ପିତାମହ ହିଁ ତୁମ୍ଭର ତୁଳନା ସ୍ଥଳ । ବହୁ ପୂର୍ବରୁ ପୃଥିବୀରେ କୌଣସି ବ୍ୟକ୍ତି ଯେତେବେଳେ ତୁମ୍ଭର ଅପକାର କରି ନାହାନ୍ତି, ବର୍ତ୍ତମାନ ତୁମ୍ଭର ଏକମାତ୍ର କର୍ତ୍ତବ୍ୟ କାର୍ଯ୍ୟରେ କିଏ ବା ବ୍ୟାଘାତ କରିବ ? ବିଶେଷତଃ ଯେଉଁ କାର୍ଯ୍ୟରେ ସୃଷ୍ଟି ସ୍ଥିତି ପ୍ରଳୟକାରୀ ପୁରୁଷ ଅର୍ଥାତ୍ ଭଗବାନ ସହାୟକ ହୋଇଅଛନ୍ତି ।୨୨। ତୁମ୍ଭେ ଏହି ବ୍ରହ୍ମଲୋକରେ ଆଗତ ହେଲେ, ତୁମ୍ଭର ପ୍ରତାପ ଓ ଯଶ ଚନ୍ଦ୍ର ସୂର୍ଯ୍ୟ ତୁଲ୍ୟ ତ୍ରିଭୁବନରେ ବିଚରଣ କରୁଅଛି । ବିଶେଷତଃ ହେ ରାଜଶାର୍ଦ୍ଦୂଳ ! ଯେଉଁ ମାନଙ୍କର କାର୍ଯ୍ୟାବଳୀରେ ଭଗବାନ ଚତୁର୍ମୁଖ ବ୍ରହ୍ମା ସର୍ବଦା ସହାୟ ହୁଅନ୍ତି, ସେମାନଙ୍କର ବିଘ୍ନ ଆଶଙ୍କା କି ହୋଇଥାଏ ? କଦାପି ନୁହେଁ । ୨୪ ।

ଏଷଦୂରେଽସ୍ତି ରାଜେନ୍ଦ୍ର ପ୍ରତ୍ୟକ୍ଷଃ ସ ଶଚୀପତିଃ ।
ସଦୋମଧ୍ୟଗତଃ ଶକ୍ରଃ ସାକ୍ଷାତ୍ତ୍ରିଜଗତାଂ ପତିଃ । ୨୫ ।
ବିଶେଷତୋ ଜଗନ୍ନାଥପ୍ରାସାଦେ କଃ ପୁମାନ୍ନୃପ ।
ବାଞ୍ଛତୁଂ ମନସାପୀଚ୍ଛେତ୍ ତସ୍ମ ଶଙ୍କାସ୍ତୁ ମା ତବ । ୨୬ ।
ତଦଗ୍ରତଃ ପଶ୍ୟ ଭୂପ ଚନ୍ଦ୍ରକୋଟିସମଦ୍ୟୁତି ।
ପରତୋ ହ୍ଲାଦଜନକଃ ସୁଧାସାଗରକୋଟିବତ୍ ।
ଯଷ୍ଟାସ୍ତ୍ରଂ ତେଜସୋ ରାଶିର୍ଜାନୀହି ବ୍ରହ୍ମସଦ୍ମନଃ । ୨୭ ।
ଇତ୍ଥମାଳପତୌ ତୌ ତୁ ବ୍ରହ୍ମଲୋକାନ୍ତିକଂ ଗତୌ ।
ଶୁଶ୍ରୁବାତେ ସୁଦୂରସ୍ଥୌ ବ୍ରହ୍ମର୍ଷୀଣାଂ ମୁଖୋଦ୍ଗତମ୍ ।
ସ୍ୱାଧ୍ୟାୟଶବ୍ଦଂ ସୁମହଂ ସ୍ପଷ୍ଟବର୍ଣ୍ଣକ୍ରମସ୍ୱରମ୍ । ୨୮ ।
ଇତିହାସପୁରାଣାନି ଛନ୍ଦଃ କଳ୍ପାନ ଗାଥିକାଃ ।
ଅସଙ୍କୀର୍ଣ୍ଣୋଜ୍ଜ୍ୱଳପଦାଃ ଶୁଶ୍ରୁବାତେ ପ୍ରବାଗଣଃ । ୨୯ ।

ହେ ମହାରାଜ ! ଏହି ଦୂରରେ ଦେଖାଯାଉଅଛି, ଏହି ସ୍ଥାନରେ ସାକ୍ଷାତ ତ୍ରିଜଗତ୍ପତି ସେହି ଶଚୀପତି ଇନ୍ଦ୍ରଦେବ ସଭାମଣ୍ଡଳୀ ମଧ୍ୟଗତ ହୋଇ ପ୍ରତ୍ୟକ୍ଷ ଭାବରେ ଅବସ୍ଥାନ କରିଅଛନ୍ତି । ୨୫ । ଆପଣ ଉତ୍କଣ୍ଠା ପରିତ୍ୟାଗ କରନ୍ତୁ । ସେହି ଜଗନ୍ନାଥଦେବଙ୍କ ପ୍ରାସାଦରେ କେହି ହେଲେ ବାସ ନିମିତ୍ତ ମନରେ ହେଁ ଅଭିଳାଷ କରିବେ ନାହିଁ । ହେ ଭୂପତେ ! ବର୍ତ୍ତମାନ ଦର୍ଶନ କରନ୍ତୁ, ଏହି ଇନ୍ଦ୍ରାଳୟର ଉପରି ଭାଗରେ କୋଟିଚନ୍ଦ୍ର ସଦୃଶ ଦୀପ୍ତିଶୀଳ ସନ୍ତୋଷ ଦାୟକ କୋଟି କୋଟି ପୀୟୂଷସାଗରବତ୍ ପରିତୃପ୍ତି ସାଧକ ତେଜରାଶି ଦୃଷ୍ଟ ହେଉଅଛି, ଏହା ହିଁ ବ୍ରହ୍ମାଙ୍କର ବାସସ୍ଥାନ ଜାଣିବେ ।୨୭। ରାଜା ଓ ମୁନିବର ନାରଦ ଏହିପରି ଭାବରେ ଆଳାପ କରି ବ୍ରହ୍ମଲୋକ ନିକଟରେ ଉପସ୍ଥିତ ହୋଇ ଦୂରରୁ ବ୍ରହ୍ମର୍ଷିମାନଙ୍କ ମୁଖନିର୍ଗତ ସୁସ୍ପଷ୍ଟ ବର୍ଣ୍ଣକର୍ମ ସମ୍ପନ୍ନ ସୁସ୍ୱର ସୁପଦ ବେଦାଧ୍ୟୟନ ଧ୍ୱନି ଶ୍ରବଣ କଲେ । ୨୮ । ପୁନରାୟ ସ୍ପଷ୍ଟ ରୂପ ଓ ଉଚ୍ଚ ଶବ୍ଦଯୁକ୍ତ ପୁରାଣ ଇତିହାସ ଛନ୍ଦ କଳ୍ପ ଏବଂ ଗାଥା

ଯତ୍ରୈତଦ୍ଭ୍ରାଜଶାଦ୍ଧ୍ୱଂଳ ଜାନୀହ୍ୱ ବ୍ରହ୍ମଣଃ ପୁରମ୍ ।୩୦।
ସର୍ଷ୍ଵ ହ୍ୱ ଦୃଶ୍ୟତେ ଚୈଷା ଯତ୍ର ଲୋକପିତାମହଃ ।
ସାର୍ଦ୍ଧଂ ବ୍ରହ୍ମର୍ଷିମୁଖ୍ୟୈଶ୍ଚ ସୁଖାସୀନଶ୍ଚତୁର୍ମୁଖଃ ।୩୧।
ନାନାଚୈତନ୍ୟଶରଣଂ ଜୀବନ୍ମୁକ୍ତୈରୁପାସିତମ୍ ।
ଯତ୍ରାଗତା ନିବର୍ତ୍ତନ୍ତେ ନ ସଂସାରବ୍ଧିସଙ୍କଟେ ।୩୨।
ସତତ୍ର ବ୍ରହ୍ମଣୋ ନାମ ଯସ୍ୟାସ୍ୟଂ ଭୁବନୋତ୍ତମଃ ।
ସତ୍ୟଲୋକ ଇତି ଖ୍ୟାତସ୍ତଦୂର୍ଦ୍ଧ୍ୱଂ ନାସ୍ତି କଞ୍ଚନ ।୩୩।
ଅପ୍ୟେବ କଞ୍ଚିଦୁପରି ଅଧଷ୍ଟାଣ୍ଡକପାଳତଃ ।
ବୈକୁଣ୍ଠଭବନଂ ରାଜନ୍ ମୁକ୍ତା ଯତ୍ର ବସନ୍ତି ବୈ ।୩୪।

---

ସକଳ ଭିନ୍ନ ଭିନ୍ନ ଭାବରେ ଶୁଣିଲେ । ଋଷିବର କହୁଛନ୍ତି, ହେ ନୃପବର ! ଯେଉଁ ସ୍ଥାନରେ ଏ ସମସ୍ତ ଶୁଣିବାକୁ ମିଳୁଅଛି, ତାହାହିଁ ବ୍ରହ୍ମାଙ୍କର ନିବାସ ବୋଲି ଜାଣ । ଏହି ଯେଉଁ ସଭା ଦେଖା ଯାଉଅଛି, ତହିଁରେ ଲୋକ ପିତାମହ ବ୍ରହ୍ମା ବ୍ରହ୍ମର୍ଷିମାନଙ୍କ ସହିତ ସୁଖରେ ସମାସୀନ ହୋଇଅଛନ୍ତି । ୩୧ । ସେ (ବ୍ରହ୍ମା) ବିବିଧ ଚେତନ ପଦାର୍ଥର ଆଶ୍ରୟ ଓ ଜୀବନ୍ମୁକ୍ତ ମାନଙ୍କର ସତତ ଉପାସ୍ୟ ଅଟନ୍ତି । ଜୀବଗଣ ଥରେ ମାତ୍ର ଏହି ସ୍ଥାନକୁ ଆଗମନ କରି ପାରିଲେ, ଆଉ ସଂସାର ସାଗରରେ ପତିତ ହୁଅନ୍ତି ନାହିଁ ।୩୨। "ସତ୍", ଏହା ହିଁ ବ୍ରହ୍ମାଙ୍କ ନାମଧେୟ । ସୁତରାଂ ତାହାଙ୍କର ଭୁବନୋତ୍ତମର ନାମ ମଧ୍ୟ "ସତ୍ୟ" ବୋଲି ଲୋକରେ ଖ୍ୟାତ । ଏହାର ଉପରି ଭାଗରେ କିଛି ନାହିଁ, କେବଳ ଏହାର ଉପରି ଭାଗରେ କିଞ୍ଚିତ୍ ବ୍ରହ୍ମାଙ୍କ ଅଣ୍ଡ କପାଳର ଅଧଃ ସୀମାରେ ବୈକୁଣ୍ଠ ଭବନ ରହିଅଛି । ହେ ରାଜନ୍ ! ମୁକ୍ତ ପୁରୁଷମାନେ ସେହି ସ୍ଥାନରେ ନିବାସ କରନ୍ତି । ୩୪ ।

ଯତ୍ର ଯୋଗେଶ୍ୱରଃ ସାକ୍ଷାଦ୍ ଯୋଗିଚିନ୍ତ୍ୟୋ ଜନାର୍ଦ୍ଦନଃ ।
ଚୈତନ୍ୟବପୁରାସ୍ତେ ବୈ ସାନ୍ଦ୍ରାନନ୍ଦାତ୍ମକଃ ପ୍ରଭୁଃ ।
ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ମୃତ୍ୟୁସଂସାରବର୍ତ୍ମନି ।୩୫।
ସ ଏଷ ସ୍ରଷ୍ଟା ଲୋକାନାଂ ମତ୍ସ୍ୟକୂର୍ମାଦିରୂପଧୃକ୍ ।
ରକ୍ଷିତା ରୁଦ୍ରରୂପେଣ ସଂହର୍ତ୍ତା ଲୋକଭାବନଃ ।
ଇନ୍ଦ୍ରଦ୍ୟୁମ୍ନଂ ବଦନ୍ନିତ୍ଥଂ ପ୍ରାପ ବ୍ରହ୍ମନିକେତନମ୍ ।୩୬।
କ୍ଷଣେନ ଚ ସଭାଦ୍ୱାର ପ୍ରକୋଷ୍ଠେ ନ୍ୟବର୍ତ୍ତତ ।
ଯତ୍ର ତିଷ୍ଠନ୍ତି ଦିକ୍ପାଲାଃ ଶକ୍ରାଦ୍ୟାଃ ପିତରସ୍ତଥା ।
ଚିରଂ କାଳଂ ଧ୍ୟାନପରାସ୍ତଥା ମନ୍ୱନ୍ତରାଧିପାଃ ।
ପୃଥଗ୍ଜନନିଭା ଦ୍ୱାଃସ୍ଥା ନର୍ଷିଭାନ୍ତଃପ୍ରବେଶନାଃ ୩୭।
ଇନ୍ଦ୍ରଦ୍ୟୁମ୍ନେନ ସହିତଂ ନାରଦଂ ପ୍ରବିଲୋକ୍ୟ ସଃ ।
ଦ୍ୱାରପାଲଃ ସବିନୟଂ ନନାମ ନତକନ୍ଧରଃ ।୩୮।

---

ଉକ୍ତ ସ୍ଥାନରେ ସାକ୍ଷାତ ଯୋଗେଶ୍ୱର ଯୋଗୀମାନଙ୍କ ଚିନ୍ତନୀୟ ପ୍ରଭୁ ଜନାର୍ଦ୍ଦନ ବାସ କରୁଛନ୍ତି, ଯେ ଚୈତନ୍ୟ ଶରୀର ଓ ସାନ୍ଦ୍ରାନନ୍ଦମୟ, ଯାହାଙ୍କୁ ପ୍ରାପ୍ତ ହେଲେ ଆଉ ମୃତ୍ୟୁ ପଥର ପଥିକ ହେବାକୁ ପଡ଼େ ନାହିଁ, ସେହି ଲୋକ ସ୍ରଷ୍ଟା ମତ୍ସ୍ୟ କୂର୍ମାଦି ରୂପରେ ଲୋକ ରକ୍ଷିତା ଏବଂ ସଂହର୍ତ୍ତା ରୁଦ୍ରଦେବ ମଧ୍ୟ ଏହି ସ୍ଥାନରେ ବାସ କରନ୍ତି । ଋଷିବର ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି କଥା କହି କହି ବ୍ରହ୍ମ ଭବନ ନିକଟରେ ଉପସ୍ଥିତ ହେଲେ ।୩୬। କ୍ଷଣକାଳ ମଧ୍ୟରେ ହିଁ ସଭାଦ୍ୱାରର ପ୍ରକୋଷ୍ଠ ପ୍ରାନ୍ତରେ ଉପନୀତ ହୋଇ ଦେଖିଲେ, ଦ୍ୱାର ଦେଶରେ ଇନ୍ଦ୍ରାଦି ଦିଗପାଳଗଣ, ପିତୃଗଣ ଓ ମନ୍ୱନ୍ତରର ଅଧିପତି ବୃନ୍ଦ ବହୁକାଳରୁ ନୀଚଜନ ସଦୃଶ ଦ୍ୱାରପାଳଙ୍କୁ ଉପାସନା କରୁଅଛନ୍ତି । ତଥାପି ସେ (ଦ୍ୱାରପାଳ) ସେମାନଙ୍କୁ କୌଣସି ପ୍ରକାରେ ସଭାଗୃହ ମଧ୍ୟକୁ ପ୍ରବେଶ ପାଇଁ ଅନୁମତି ଦେଉନାହାନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କ ସହ ନାରଦଙ୍କୁ ଦେଖିବା ମାତ୍ରେ ହିଁ ସେହି ଦ୍ୱାରପାଳ ଅବନତ ମସ୍ତକ ନେଇ ବିନୟ ସହ ପ୍ରଣାମ କଲେ । ୩୮ ।

ଚତୁର୍ଦ୍ଦଶାନାଂ ଲୋକାନାଂ ଭ୍ରମଣେ ରସିକଃ ପ୍ରଭୋ ।
ତ୍ୱୟା ବିନା ଶୋଭତେ ନୋ ସ୍ୱାମିଂସ୍ତବ ପିତୁଃ ସଭା ।
ସନ୍ତ୍ୟେବ ମୁନୟଃ ଶ୍ରେଷ୍ଠା ବ୍ରହ୍ମଣ୍ୟା ବ୍ରହ୍ମବାଦିନଃ ।
ଗୋତମାଦ୍ୟାସ୍ତଥାପ୍ୟେଷା ନ ରମ୍ୟା ବ୍ରହ୍ମଣଃ ସଭା ।୩୯।
ବହ୍ନୟୋଽପି ରଜନ୍ୟାଂ ହି ଚନ୍ଦ୍ରେଣୈବ ପ୍ରକାଶତେ ।
ଇତି ସ୍ତୁବନ୍ ଦଦୌ ତସ୍ୟ ପ୍ରବେଶଂ ବିନୟାନ୍ୱିତଃ ।୪୦।
ଇତି ଶ୍ରୀସ୍କାନ୍ଦେ ନାରଦେନ ସହେନ୍ଦ୍ରଦ୍ୟୁମ୍ନସ୍ୟ ବ୍ରହ୍ମଲୋକ-
ଗମନଂ ନାମ ଦ୍ୱାବିଂଶୋଽଧ୍ୟାୟଃ ।୨୨।

---

ପୁନଶ୍ଚ ଦ୍ୱାରପାଳ କହିବାକୁ ଲାଗିଲେ—ହେ ପ୍ରଭୋ ! ଆପଣ ଚତୁର୍ଦ୍ଦଶ ଭୁବନ ଭ୍ରମଣରେ ରସିକ ଅଟନ୍ତି । ସୁତରାଂ ହେ ସ୍ୱାମିନ୍ ! ଆପଣଙ୍କ ବିନା ଆପଣଙ୍କ ପିତୃସଭା ଶୋଭା ପାଉନାହିଁ । ଯଦ୍ୟପି ବ୍ରହ୍ମତତ୍ପର, ବ୍ରହ୍ମଜ୍ଞ ପ୍ରବର, ଶ୍ରେଷ୍ଠ ଶ୍ରେଷ୍ଠ ଗୌତମ ପ୍ରଭୃତି ମୁନିମାନେ ଏଠାରେ ଅଛନ୍ତି, ତଥାପି ବ୍ରହ୍ମାଙ୍କ ସଭାରେ ଆପଣ ନ ଥିଲେ ରମଣୀୟ ହୁଏନାହିଁ । ୩୯ । ଦେଖନ୍ତୁ, ରାତ୍ରି ବହୁତାରା ପ୍ରଭାରେ ପ୍ରଭାପ୍ରାପ୍ତ ହେଲେ ମଧ୍ୟ ଏକ ତାରା-ନାଥଙ୍କ ବ୍ୟତୀତ ସେମାନଙ୍କ ପ୍ରଭା ପ୍ରକାଶିତ ହୁଏନାହିଁ । ଦ୍ୱାରପାଳ ଏହିପରି ସ୍ତବକରି ବିନୟର ସହିତ ତାଙ୍କୁ ଦ୍ୱାର ଛାଡି଼ ଦେଲେ । ୪୦ ।

॥ ଦ୍ୱାବିଂଶ ଅଧ୍ୟାୟ ସମାପ୍ତ ॥

———

## ତ୍ରୟୋବିଂଶୋଽଧ୍ୟାୟଃ

ନାରଦ ଉବାଚ

ଦୌବାରିକାୟଂ ରାଜର୍ଷିରିନ୍ଦ୍ରଦ୍ୟୁମ୍ନୋ ମହାଯଶାଃ ।
ସାର୍ବଭୌମୋ ବୈଷ୍ଣବାଗ୍ର୍ୟୋ ଧାତାରଂ ଦ୍ରଷ୍ଟୁମାଗତଃ ।
ଯାତ୍ୟୟଂ ପୁରତସ୍ତସ୍ୟ ଯଦି ତ୍ୱମନୁମନ୍ୟସେ ।୧।
ଇତ୍ୟୁକ୍ତସ୍ତଂ ପୁନଃ ପ୍ରାହ ନାରଦଂ ମୁନିସତ୍ତମମ୍ ।
ସ୍ୱାମିଂସ୍ତ୍ୱଯାଗତୋ ଯୋଽସୌ ନ ସାମାନ୍ୟୋ ହି ବୁଧ୍ୟତେ ।
ଯତ୍ର ପଶ୍ୟସି ଦିକ୍‌ପାଲାନ୍ ପିତୄନ୍ମନ୍ୱନ୍ତରାଧିପାନ୍ ।
ତତ୍ରାୟଂ ମର୍ତ୍ତ୍ୟନିଲୟସ୍ତିଷ୍ଠେଦଦ୍ଭୁତ ପୌରୁଷଃ ।
ଭବାନ୍ ଗତ୍ୱା ପଦ୍ମଯୋନିଂ ବିଜ୍ଞାପ୍ୟୈନଂ ପ୍ରବେଶୟ ।୨।
ସପ୍ତଦ୍ୱାରଗତୋ ଯୋଽସୌ ଦିକ୍‌ପାଲୈଃ ସହ ଯାପ୍ୟତି ।
ଏକାଗ୍ରଚିତ୍ତୋ ଭଗବାନ୍ ଗାୟନେ ଚତୁରାନନଃ ।୩।

---

## ତ୍ରୟୋବିଂଶ ଅଧ୍ୟାୟ

ଶ୍ରୀ ନାରଦ କହିଲେ—ହେ ଦ୍ୱାରପାଳ ! ଏହି ଇନ୍ଦ୍ରଦ୍ୟୁମ୍ନ, ଏ ହେଉଛନ୍ତି ରାଜର୍ଷି, ମହା ଯଶସ୍ୱୀ, ସାର୍ବଭୌମ ତଥା ବୈଷ୍ଣବ-ଚୂଡ଼ାମଣି, ବିଧାତାଙ୍କୁ ଦର୍ଶନ କରିବା ନିମନ୍ତେ ଆସିଛନ୍ତି । ବର୍ତ୍ତମାନ ତୁମ୍ଭେ ଅନୁମତି ଦେଲେ ତାଙ୍କ ନିକଟକୁ ଯାଇ-ପାରିବେ । ୧ । ଏହା ଶ୍ରବଣ କରି ଦ୍ୱାରପାଳ ପୁନରପି ନାରଦଙ୍କୁ କହିଲେ—ହେ ସ୍ୱାମିନ୍ ! ଆପଣଙ୍କ ସହିତ ଯେ ଆସିଛନ୍ତି, ସେ କଦାପି ସାମାନ୍ୟ ବ୍ୟକ୍ତି ବୋଲି ବିବେଚିତ ହୋଇ ପାରନ୍ତି ନାହିଁ । ତଥାଚ ଯେଉଁ ସ୍ଥାନରେ ଏହି ଦିଗପାଳଗଣ, ପିତୃଗଣ ଓ ମନ୍ୱନ୍ତର ଅଧିପତିବୃନ୍ଦ ଅବସ୍ଥାନ କରୁଅଛନ୍ତି, ଏହି ଅମିତ ପ୍ରଭାବ ମର୍ତ୍ତ୍ୟବାସୀ ରଜା ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ସେଠାରେ କିଛି ସମୟ ଅବସ୍ଥାନ କରନ୍ତୁ । ୨ । ଆପଣ ପଦ୍ମଯୋନି ବ୍ରହ୍ମାଙ୍କ ନିକଟକୁ ଯାଇ ଉକ୍ତ ବିଷୟରେ ବିଜ୍ଞାପନପୂର୍ବକ ଏହାଙ୍କୁ ସପ୍ତପ୍ରବିଷ୍ଟ

ଅସ୍ମାକଂ ଦ୍ୱାର୍ନିଯୁକ୍ତାନାଂ ପ୍ରତୀକ୍ଷ୍ୟୋଽବସରୋ ଧ୍ରୁବମ୍ ।
ନ କ୍ରୋଧୋ ମୟି କର୍ତ୍ତବ୍ୟୋ ଦାସେ ତବ ପିତୁଶ୍ଚ ତେ ।
ଇତ୍ୟୁକ୍ତୋ ନାରଦୋ ଗତ୍ୱା ବ୍ରହ୍ମାଣଂ ଜଗତାଂ ପତିମ୍ । ୪ ।
ନତ୍ୱା ସାଷ୍ଟାଙ୍ଗପତନଂ ବିଜ୍ଞପ୍ତୋ ବସୁଧାଧିପଃ ।
କଟାକ୍ଷେଣାଦିଶତ୍ ସୋଽଥ ଇନ୍ଦ୍ରଦ୍ୟୁମ୍ନପ୍ରବେଶନମ୍ ।
ନୋବାଚ କଞ୍ଚିଦ୍ ଭଗବାନ୍ ଗାନେ ଦତ୍ତାବଧାନତଃ । ୫ ।
ଦିବ୍ୟଗାଥକସଙ୍ଗୀତେ କୌତୁକାକ୍ଷିପ୍ତମାନସଃ ।
ଜ୍ଞାତେଙ୍ଗିତଂ ନାରଦୋଽଥ ଇନ୍ଦ୍ରଦ୍ୟୁମ୍ନଂ ନୃପୋତ୍ତମମ୍ ।
ପ୍ରବେଶୟାମାସ ତତଃ ଶକ୍ରାଦ୍ୟୈଃ ସୁନପାର୍ଶ୍ୱିତମ୍ । ୬ ।
ଦୃଷ୍ଟ୍ୱା ପିତାମହଂ ଦୂରାତ୍ ସ୍ରଷ୍ଟାରଂ ଜଗତାଂ ନୃପଃ ।
ଅମନ୍ୟତ ଦ୍ୱିଜଶ୍ରେଷ୍ଠାଃ ସାକ୍ଷାଦ୍ଦାରୁମୟଂ ହରିମ୍ । ୭ ।

---

କରନ୍ତୁ । ଆମ୍ଭେମାନେ ଦ୍ୱାରନିଯୁକ୍ତ ଅଧୀନ ବ୍ୟକ୍ତି । ଏଣୁ ସ୍ୱାମୀଙ୍କର ନିର୍ଦ୍ଦିଷ୍ଟ ଆଦେଶକୁ ଅପେକ୍ଷା କରୁଥାଉଁ । ଅତଏବ ଆପଣଙ୍କର ଓ ଭବଦୀୟ ପିତୃଦେବଙ୍କର ଏହି ଦାସମାନଙ୍କ ପ୍ରତି କ୍ରୋଧ ଯେପରି ନ ହୁଏ । ଦ୍ୱାରପାଳ ଏହିପରି କହନ୍ତେ, ଋଷିବର ଜଗତ୍‌ପତି ବ୍ରହ୍ମାଙ୍କ ନିକଟରେ ଉପସ୍ଥିତ ହୋଇ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ପୃଥିବୀପତି ଇନ୍ଦ୍ରଦ୍ୟୁମ୍ନଙ୍କର ବିଷୟ ଅବଗତ କରାଇବା ମାତ୍ରେ ହିଁ, ବିଧାତା କଟାକ୍ଷ-ଇଙ୍ଗିତ ଦ୍ୱାରା ତାହାଙ୍କୁ ପ୍ରବେଶ କରିବା ପାଇଁ ଅନୁମତିଦେଲେ । ୩-୫ । ସେତେବେଳେ ବ୍ରହ୍ମସଭାରେ ସଙ୍ଗୀତ ହେଉଥିଲା, ଭଗବାନ୍ ବ୍ରହ୍ମା ତହିଁରେ ପ୍ରଣିଧାନରତ ଥିବାରୁ ମୁଖଦ୍ୱାରା କିଛି ବ୍ୟକ୍ତ କଲେନାହିଁ । ଉତ୍ତମ ଗାନରେ କୌତୁକାନ୍ୱିତ ନାରଦ ବିଧାତାଙ୍କ ଇଙ୍ଗିତକ୍ରମେ ନୃପୋତ୍ତମ ଇନ୍ଦ୍ରଦ୍ୟୁମ୍ନଙ୍କୁ ସଭାସ୍ଥଳରେ ପ୍ରବେଶ କରାଇଲେ । ତଦବସ୍ଥାରେ ଇନ୍ଦ୍ରାଦି ଦେବଗଣ ବର୍ତ୍ତି ବସ୍ତ୍ରଯୁରର ସହିତ ଦେଖିବାକୁ ଲାଗିଲେ । ହେ ଦ୍ୱିଜଗଣ ! ନୃପବର ଦୂରରୁ ଜଗତ୍‌ସ୍ରଷ୍ଟା ପିତାମହଙ୍କୁ ଦେଖିପାରି, ଏତେକାଳ ପରେ ତାଙ୍କର ସେହି ଦାରୁନିର୍ମିତ ଜଗନ୍ନାଥଙ୍କୁ ସାକ୍ଷାତ୍ ଜଗନ୍ନାଥ ବୋଲି ମାନିବାକୁ ଲାଗିଲେ । ରାଜା

ଶନୈଃ ଶନୈ ର୍ଯୟୌ ଭୂପଃ ପ୍ରଣନାମ କୃତାଞ୍ଜଳିଃ ।
ସ୍ତୁବନ୍ନମନ୍ ପ୍ରଣିପତନ୍ ସାଧ୍ୱସସ୍ଖଳିତଂ ବ୍ରଜନ ।
କଞ୍ଚିଦ୍ଦୂରେ ସ୍ଥିତୋ ଭୂପୋ ନାରଦସ୍ୟ ନିଦେଶତଃ । ୮ ।
ତତଃ ପୁଣ୍ୟଂ ଗୀୟମାନଂ ଚରିତଂ ସିନ୍ଧୁଜାପତେଃ ।
ଶୃଣ୍ୱଂଶ୍ଚତୁର୍ମୁଖସ୍ତସ୍ଥୌ ମୁହୂର୍ତ୍ତଂ ଦ୍ୱିଜପୁଙ୍ଗବାଃ । ୯ ।
ସାବିତ୍ରୀସାରଦାଭ୍ୟାଂ ସ ବୀଜ୍ୟମାନସ୍ତୁ ପାର୍ଶ୍ୱୟୋଃ ।
ଶୁଦ୍ଧଦେହଧରୈର୍ଦ୍ଦେବୈଃ ସ୍ତୂୟମାନଃ ସ୍ୱୟମ୍ଭୁବଃ । ୧୦ ।
କଳାକାଷ୍ଠାନିମେଷୈସ୍ତୁ କଳୟନ୍ ଯୁଗପର୍ଯ୍ୟୟମ୍ ।
ନ ଜରାଜନ୍ମମରଣରୂପାଦ୍ୟପରିଣାମକମ୍ ।
ଯସ୍ୟ ଲୋକଗତାନାଂ ବୈ ନାଥୟୋ ବ୍ୟାଧୟସ୍ତଥା । ୧୧ ।
ମନ୍ୱନ୍ତରଦଶୋ ଯତ୍ର ଯୁଗାବର୍ତ୍ତାଦୟସ୍ତଥା ।
କଳ୍ପାନ୍ତରା ନ ବିଦ୍ୟନ୍ତେ ସ ସାକ୍ଷାତ୍ ପରମେଶ୍ୱରଃ ।
ଗୀତାବସାନେ ତଂ ଭୂପମୁବାଚ ପ୍ରହସନ୍ନିବ । ୧୨ ।

---

ଇନ୍ଦ୍ରଦ୍ୟୁମ୍ନ କୃତାଞ୍ଜଳି ପୁଟେ ମୃଦୁମୃଦୁ ଗମନ ଓ ପ୍ରଣାମ କରିବାକୁ ଲାଗିଲେ ଏବଂ ସ୍ତବ, ନମସ୍କାର ଓ ପ୍ରଣିପାତ ପୂର୍ବକ ଭୟରେ ସ୍ଖଳିତ ପରି ନାରଦଙ୍କ ଆଜ୍ଞା ଅନୁଯାୟୀ କିଛି ଦୂର ଦେଶରେ ଅବସ୍ଥାନ କଲେ । ୮ । ହେ ଦ୍ୱିଜଗଣ ! ତଦନନ୍ତର ଲକ୍ଷ୍ମୀନାଥଙ୍କ ପରମ ପବିତ୍ର ଚରିତ୍ର ଗାନ ଶ୍ରବଣ କରି କରି ଚତୁର୍ମୁଖ ମୁହୂର୍ତ୍ତକାଳ ଅବସ୍ଥାନ କଲେ । ଦେବୀ ସାବିତ୍ରୀ ଓ ବାଗ୍‌ଦେବୀ ସାରଦା ତାଙ୍କ ଦୁଇ ପାର୍ଶ୍ୱରେ ବୀଜନ କରୁଥିଲେ, ନିର୍ମଳ ଦେହଧାରୀ ଦେବଗଣ ମଧ୍ୟ ବ୍ରହ୍ମାଙ୍କୁ ସ୍ତବ କରୁଥିଲେ । ସେ ସ୍ୱୟଂ କଳାକାଷ୍ଠା ଓ ନିମେଷାଦି ଦ୍ୱାରା ଯୁଗ ପର୍ଯ୍ୟାୟର ସଂଖ୍ୟା କରୁଥିଲେ । ୧୦ । ଯାହାଙ୍କର ଲୋକଗତ ବ୍ୟକ୍ତିମାନଙ୍କ ଜରା ଜନ୍ମ ମରଣ ଓ ରୂପ ପରିବର୍ତ୍ତନ ପ୍ରଭୃତି ସଂଘଟିତ ହୁଏ ନାହିଁ ଏବଂ ଆଧିବ୍ୟାଧି ଲେଶ ମାତ୍ର ମଧ୍ୟ ନାହିଁ, ଯାହାଙ୍କ ଭୁବନରେ ମନ୍ୱନ୍ତର, ଯୁଗାବର୍ତ୍ତନ ଓ କଳ୍ପାନ୍ତର ପ୍ରଭୃତି କିଛିମାତ୍ର ବିଦ୍ୟମାନ ନଥାଏ, ସେହି ସାକ୍ଷାତ୍ ପରମେଶ୍ୱର ସଙ୍ଗୀତ ଅବସାନରେ

ଇନ୍ଦ୍ରଦ୍ୟୁମ୍ନ ମହାସତ୍ତ୍ୱ ସାକ୍ଷାତ ତ୍ୱଂ ଭଗବତ୍ପ୍ରିୟଃ ।
ଅନ୍ୟସ୍ୟ ଦୁର୍ଲଭୋ ଲୋକଃ ସତ୍ୟାଖ୍ୟୋ ବିଦିତସ୍ତ୍ୱବ । ୧୩ ।
ଅତ୍ରାଗନ୍ତୁଂ ହି ବାଞ୍ଛନ୍ତି ମୁନୟଃ କ୍ଷୀଣକଲ୍ମଷାଃ ।
ତପୋନିଷ୍ଠାଶ୍ଚ ତିଷ୍ଠନ୍ତି ଯାବଦାଭୂତସମ୍ପ୍ଳବମ୍ । ୧୪ ।
ଚତୁର୍ଦ୍ଦଶସୁ ଲୋକେଷୁ ସୃଷ୍ଟାନାଂ ପ୍ରାଣିନାଂ ହି ଯତ୍ ।
ଚୈତନ୍ୟାନି ବିଚିତ୍ରାଣି ସର୍ବେଷାମାଶ୍ରୟୋ ହ୍ୟସୌ । ୧୫ ।
ଜାନନ୍ନପି ହି ତତ୍ କାର୍ଯ୍ୟଂ ମାନସୂନୁଃ ପରନ୍ତପମ୍ ।
ଉବାଚ ପରମପ୍ରୀତ ଇନ୍ଦ୍ରଦ୍ୟୁମ୍ନଂ ପିତାମହଃ ।
କିମର୍ଥମାଗତୋ ହ୍ୟତ୍ର ତଦ୍ବ୍ରୂହି ହୃଦୟସ୍ଥିତମ୍ । ୧୬ ।
ମୟି ଦୃଷ୍ଟେ ନ ଦୁଷ୍ପ୍ରାପମମୃତଂ କିନ୍ନୁ ବାଞ୍ଛିତମ୍ । ୧୭ ।

---

ଭୂପତିଙ୍କୁ ହସି ହସି କହିବାକୁ ଲାଗିଲେ—ହେ ଇନ୍ଦ୍ରଦ୍ୟୁମ୍ନ ! ମହାସତ୍ତ୍ୱ ! ତୁମ୍ଭେ ଭଗବାନଙ୍କର ସାକ୍ଷାତ୍ ପ୍ରିୟପାତ୍ର, ଆମ୍ଭର ଏହି ସତ୍ୟଲୋକ ଅନ୍ୟପକ୍ଷରେ ଅତ୍ୟନ୍ତ ଦୁର୍ଲଭ, ଏହା ତୁମ୍ଭେ ଜାଣିଅଛ । ୧୩ । ମୁନିଗଣ ନିଷ୍ପାପ ହୋଇ ମଧ୍ୟ ଏହି ଲୋକକୁ ଆଗମନାର୍ଥ ବାଞ୍ଛା କରୁଅଛନ୍ତି ଏବଂ ମହାପ୍ରଳୟ କାଳ ପର୍ଯ୍ୟନ୍ତ ଏଥିପାଇଁ ତପସ୍ୟା ପରାୟଣ ହୋଇଥାନ୍ତି । ଚତୁର୍ଦ୍ଦଶ ଭୁବନ ମଧ୍ୟରେ ସୃଷ୍ଟ ପ୍ରାଣୀମାନଙ୍କର ଯେଉଁ ସମସ୍ତ ପୃଥକ୍ ପୃଥକ୍ ବିଚିତ୍ର ଚୈତନ୍ୟ ବିଷୟ ରହିଅଛି, ତତ ସମୁଦାୟ ଏହି ଲୋକକୁ ଆଶ୍ରୟ କରିଅଛି । ୧୫ । ଯଦ୍ୟପି ପିତାମହ ବ୍ରହ୍ମା, ଇନ୍ଦ୍ରଦ୍ୟୁମ୍ନଙ୍କର ସମସ୍ତ ଉଦ୍ଦେଶ୍ୟ ଜାଣିଅଛନ୍ତି, ତଥାପି ପରମ ପ୍ରୀତି ସହକାରେ ତାହାଙ୍କୁ ସମ୍ମାନ ପୂର୍ବକ ପ୍ରଶ୍ନ କଲେ—ତୁମ୍ଭେ କି ଉଦ୍ଦେଶ୍ୟ ନେଇଁ ଏଠାକୁ ଆସିଅଛ ? ମନୋଗତ ବିଷୟ ପ୍ରକାଶ କର । ଯେତେବେଳେ ମୋର ଦର୍ଶନ ପାଇଛ, ସେତେବେଳେ ଅମୃତ ମଧ୍ୟ ତୁମ୍ଭ ପକ୍ଷରେ ଦୁଷ୍ପ୍ରାପ୍ୟ ନୁହେଁ । ୧୭ ।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ଅନ୍ତର୍ଯ୍ୟାମୀ ତ୍ୱ ଭଗବାନ୍ ତ୍ୱଦଜ୍ଞାତଂ କୁତୋ ଭବେତ୍ ।
ତଥାପି ପ୍ରଶ୍ନୋ ଯୋ ନାଥ ମଯ୍ୟନୁକ୍ରୋଶ ଏବ ସଃ । ୧୮ ।
ମୂର୍ଦ୍ଧ୍ନ୍ୟାଧାସ୍ୟ ତ୍ୱଦନୁଜ୍ଞାଂ କଥିତାଂ ତବ ସୂନୁନା ।
ଇଷ୍ଟାଃ ସହସ୍ରଂ କ୍ରତବସ୍ତଦନ୍ତେ ଦାରୁଦେହଭୃତ୍ ।
ଆବିର୍ବଭୂବ ଭଗବାନ୍ ଭୂତଭବ୍ୟଭବତ୍ପ୍ରଭୁଃ । ୧୯ ।
ତ୍ୱଦନୁଗ୍ରହସମ୍ପତ୍ତିବଶାଦେବାବଲୋକୟନ୍ ।
ତାଦୃଶଂ ପୁଣ୍ଡରୀକାକ୍ଷଂ ଯେନ ତ୍ୱଲ୍ଲୋକମାଗତଃ । ୨୦ ।
ତସ୍ୟାରବ୍ଧୋ ମୟା ଦେବ ପ୍ରାସାଦସ୍ତତ୍ର ଚେତ ସ୍ୱୟମ୍ ।
ଗତ୍ୱା ଦେବଂ ଜଗନ୍ନାଥଂ ସ୍ଥାପୟିଷ୍ୟସି ଚ ପ୍ରଭୋ ।
ତ୍ୱଦନୁଗ୍ରହସ୍ତୁ ସଫଲୋ ଭବେଦନ୍ତେ ଲୋକଭାବନ । ୨୧ ।

---

ଅତଏବ ସାମାନ୍ୟ ବାଞ୍ଛିତ ବିଷୟ କଥା କ'ଣ କହିବି ? ଏହା ଶ୍ରବଣ କରି ଇନ୍ଦ୍ରଦ୍ୟୁମ୍ନ କହିଲେ—ଭଗବାନ୍ ! ଆପଣ ଅନ୍ତର୍ଯ୍ୟାମୀ, ଆପଣଙ୍କର ଅଜ୍ଞାତ କଣ ରହିପାରେ । ତଥାପି ଯେଉଁ ପ୍ରଶ୍ନ କରୁଅଛନ୍ତି, ହେ ନାଥ ! ଏହା ମୋ ପ୍ରତି କରୁଣା ପ୍ରକାଶ ମାତ୍ର । ୧୮ । ଆପଣଙ୍କର ପୁତ୍ର ଋଷିବର ନାରଦଙ୍କ ମୁଖରୁ ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ ପୂର୍ବକ ସହସ୍ର ଅଶ୍ୱମେଧ ଯଜ୍ଞ ସମ୍ପାଦନ କରିଅଛି । ତାର ସମାପ୍ତି କାଳରେ ଭୂତ ଭବିଷ୍ୟତ ବର୍ତ୍ତମାନ ଏହି କାଳତ୍ରୟର ପ୍ରଭୁ ଜଗନ୍ନାଥ-ଦେବ ଦାରୁ ଦେହରେ ଆବିର୍ଭୂତ ହୋଇଅଛନ୍ତି । ମୁଁ ଆପଣଙ୍କ ଅନୁଗ୍ରହରେ ସେହି ପୁଣ୍ଡରୀକାକ୍ଷ ଦେବଙ୍କୁ ଅବଲୋକନ ପୂର୍ବକ ଆପଣଙ୍କ ଏହି ସତ୍ୟଲୋକକୁ ଆସିବା ପାଇଁ ସମର୍ଥ ହୋଇଅଛି । ୨୦ । ପ୍ରଭୋ ! ମୁଁ ପ୍ରଭୁଙ୍କ ନିମନ୍ତେ ପ୍ରାସାଦ ଆରମ୍ଭ କରିଅଛି, ବର୍ତ୍ତମାନ ଆପଣ ସ୍ୱୟଂ ଗମନ ପୂର୍ବକ ଯଦି ସେହି ପ୍ରାସାଦରେ (ଶ୍ରୀମନ୍ଦିରରେ) ଶ୍ରୀଜଗନ୍ନାଥ-ଦେବଙ୍କୁ ସ୍ଥାପନ କରନ୍ତି, ତାହାହେଲେ ହେ ଲୋକଭାବନ ! ମୋ ପ୍ରତି ଏତେ ଦିନର ଅନୁଗ୍ରହ ସଫଳ ହେବ । ୨୧ ।

ଏତଦର୍ଥଂ ଜଗନ୍ନସ୍ୱାମି ନାରଦେନ ସହାଧୁନା ।
ତ୍ୱତ୍ପାଦପଦ୍ମଯୁଗଳଂ ଦ୍ରଷ୍ଟୁଂ ତ୍ୱଲ୍ଲୋକମାଗତଃ । ୧୨ ।
ପ୍ରସୀଦ ମାଂ କୁରୁଷ୍ୱେଦଂ ଜଗନ୍ନାଥସ୍ତ୍ୱମେବ ହି ।
ତ୍ୱମେବ ସ ଜଗନ୍ନାଥୋ ନ ଭେଦୋ ଯୁବୟୋର୍ବିଭୋ ।
ସ୍ଥାପ୍ୟଃ ସ୍ଥାପୟିତା ତ୍ୱଂ ହି ବେଦ୍ୟୋ ବେଦୟିତା ଭବାନ୍ । ୧୩ ।

ଜୈମିନିରୁବାଚ

ଏବଂ ବିଜ୍ଞାପନାନ୍ତେ ତୁ ଦୁର୍ବାସାଃ ସହସା ମୁନିଃ ।
ପ୍ରଣମ୍ୟ ସାଷ୍ଟାଙ୍ଗପାତଂ କୃତାଞ୍ଜଳିପୁଟଃ ସ୍ଥିତଃ ।
ପ୍ରୋବାଚ ବିନୟାଦ୍‌ବାକ୍ୟଂ ଧାତାରଂ ଜଗତାଂ ଗୁରୁମ୍ । ୧୪ ।
ବିଭୋ ଦ୍ୱାରପ୍ରଦେଶେଽସ୍ମିନ୍ ଦୌବାରିକନିବାରିତାଃ ।
ଲୋକପାଲାଃ ସପିତରସ୍ତଥା ମନ୍ୱନ୍ତରାଧିପାଃ ।
ତିଷ୍ଠନ୍ତି ଦୀନଜନବତ୍ ସୁଚିରଂ ଲୋକଭାବନ ।
ତଦାଜ୍ଞାପୟ ପଶ୍ୟନ୍ତୁ ତବ ପାଦସରୋରୁହମ୍ । ୧୫ ।

---

ମୁଁ ଏଥି ନିମନ୍ତେ ସମ୍ପ୍ରତି ଋଷିବର ନାରଦଙ୍କ ସହିତ ଭବଦୀୟ ପାଦଯୁଗଳ ଦର୍ଶନାର୍ଥ ଆପଣଙ୍କ ଲୋକକୁ ଆସିଅଛି । ହେ ଜଗତ୍ସ୍ୱାମିନ୍ ! ଆପଣ ମୋ ପ୍ରତି ପ୍ରସନ୍ନ ହୋଇ ଏହି ଅଭୀଷ୍ଟ ସିଦ୍ଧ କରନ୍ତୁ । ଆପଣ ହିଁ ଜଗନ୍ନାଥ । ହେ ବିଭୋ ! ଆପଣ ହିଁ ସେହି ଜଗନ୍ନାଥ । ତାଙ୍କ ଓ ଆପଣଙ୍କ ଭିତରେ କିଛି ପ୍ରଭେଦ ଦେଖା-ଯାଏନାହିଁ । ବର୍ତ୍ତମାନ ସେ ସ୍ଥାପନୀୟ, ଆପଣ ସ୍ଥାପନକର୍ତ୍ତା; ସେ ବେଦ୍ୟ, ଆପଣ ବେଦୟିତା ହୋଇଅଛନ୍ତି । ୨୨ । ଜୈମିନି କହିଲେ, ନରପତି ଇନ୍ଦ୍ରଦ୍ୟୁମ୍ନ ଏହି ପ୍ରକାର କହିବାବେଳେ, ମୁନିବର ଦୁର୍ବାସା ହଠାତ୍ ବ୍ରହ୍ମ ସଭରେ ଉପସ୍ଥିତ ହୋଇ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ କୃତାଞ୍ଜଳିପୁଟେ ବିନୟ ସହକାରେ ଜଗଦ୍‌ଗୁରୁ ବିଧାତାଙ୍କୁ କହିବାକୁ ଲାଗିଲେ—ହେ ବିଭୋ ! ଆପଣଙ୍କ ଦ୍ୱାର ଦେଶରେ ଲୋକପାଳଗଣ ଓ ମନ୍ୱନ୍ତରାଧିପତି-ମାନେ ଦ୍ୱାରପାଳ କର୍ତ୍ତୃକ ନିବାରିତ ହୋଇ ଅତି ଦୀନଜନ ପରି ଚିରକାଳ ଅବସ୍ଥାନ କରିଅଛନ୍ତି । ହେ ଲୋକ ଭାବନ୍ ! ଅନୁମତି କରନ୍ତୁ, ସେମାନେ ଆସି ଆପଣଙ୍କ ପାଦପଦ୍ମ ସନ୍ଦର୍ଶନ କରିବାର ସୌଭାଗ୍ୟ ଲାଭ କରନ୍ତୁ । ୨୫ ।

ତଚ୍ଛ୍ରୁତ୍ୱା ଦେବଦେବସ୍ତୁ ତଦା ଦୁର୍ବାହସୋ ବଚଃ ।
ପ୍ରହସ୍ୟ ବଚନଂ ପ୍ରାହ ନୈଷାଂ ପ୍ରସ୍ତାବ ଏବ ହି ।
ଇନ୍ଦ୍ରଦ୍ୟୁମ୍ନେନ ସ୍ପର୍ଦ୍ଧନ୍ତେ ତେ କଂ ମୋହବଶ ନୁଗାଃ । ୨୬ ।
ଜୀବନ୍ମୁକ୍ତୋଽସ୍ୱଂ ନୃପତିଃ କର୍ମକ୍ଷୀଣାଘସଂହତିଃ ।
ମତ୍ତ୍ୱସନ୍ତତିଃ ପଞ୍ଚମୋଽସ୍ୱଂ ବୈଷ୍ଣବୋ ବିଷ୍ଣୁତତ୍ପରଃ ।
ଏତେ ହି ସୁଖଭୋଗାସ୍ତୁ କର୍ମିଣଃ ପ୍ରାପ୍ତପୌରୁଷାଃ ।
ଅନାଗତଂ ପ୍ରାର୍ଥୟନ୍ତେ ତପସ୍ତପ୍ତ୍ୱାହି ଦେବତାଃ । ୨୭ ।
ମମାନୁଗ୍ରହତଶ୍ଚୈତେ ଆୟାତା ମଦୁପାସନେ ।
ତଥାପି ତ୍ୱଦନୁଜ୍ଞାତା ଆୟାନ୍ତୁ ମମ ଦର୍ଶନେ । ୨୮ ।
ତତଃ ପ୍ରବିଷ୍ଟାସ୍ତେ ଦେବା ଧୁର୍ବାସୋ ବଚନେନ ବୈ ।
ଦଣ୍ଡବତ୍ ପ୍ରଣେମୁର୍ବ୍ରହ୍ମାଣଂ ଗାୟକାନାଂ ସମୀପତଃ । ୨୯ ।

---

ଦେବଦେବ ପିତାମହ ଦୁର୍ବାସାଙ୍କର ଏହି କଥା ଶ୍ରବଣ କରି ହାସ୍ୟ ସହକାରେ କହିଲେ—ତୁମ୍ଭେ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରବେଶ ଓ ଲୋକପାଳ ପ୍ରଭୃତିଙ୍କ ନିବାରଣ ଦେଖି ଏହି କଥା କହୁଅଛ । ନରପତିଙ୍କ ସହିତ କୌଣସି ବିଷୟରେ ସେମାନଙ୍କର ପ୍ରସ୍ତାବ ହୋଇ ପାରିବ ନାହିଁ । ସେମାନେ ମୋହ ବଶୀଭୂତ ହୋଇ ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ସ୍ପର୍ଦ୍ଧା କରୁଅଛନ୍ତି । ୨୬ । ଏହି ନରପତି ଜୀବନ୍ମୁକ୍ତ, ସତ୍କର୍ମ ସମୂହଦ୍ୱାରା ପାପ ସମୂହ କ୍ଷୟ କରିଅଛନ୍ତି । ମୋର ଅଧସ୍ତନ ପଞ୍ଚମ ସନ୍ତାନ ବୈଷ୍ଣବ ଓ ବିଷ୍ଣୁତତ୍ପର । କିନ୍ତୁ ଏହି ଦେବତାମାନେ ସୁଖଭୋଗ ନିମନ୍ତେ କର୍ମ ଆଚରଣ କରି ପୌରୁଷ ପ୍ରାପ୍ତ ହୋଇ, ଆମ୍ଭର ଏହି ଲୋକକୁ ଆଗମନାର୍ଥ ତପସ୍ୟା କରିବା ହେତୁ, ମୋର ଅନୁଗ୍ରହରେ ମଦୀୟ ଉପାସନା ବାସନାରେ ଦ୍ୱାରଦେଶ ପର୍ଯ୍ୟନ୍ତ ଆସି ପାରିଅଛନ୍ତି । ଯାହାହେଉ, ବର୍ତ୍ତମାନ ତୁମ୍ଭର ଆଦେଶ ନେଇ ମୋତେ ଦର୍ଶନ କରିବା ନିମନ୍ତେ ଆସି ପାରନ୍ତି । ୨୮ । ଏହାପରେ ଦୁର୍ବାସାଙ୍କ ଆହ୍ୱାନ-କ୍ରମେ ଦେବଗଣ ସଭାରେ ପ୍ରବିଷ୍ଟ ହୋଇ ଗାୟକମାନଙ୍କ

ଇନ୍ଦ୍ରଦ୍ୟୁମ୍ନଂ ନରପତିଂ କୃତାଞ୍ଜଳିମୁପସ୍ଥିତମ୍ ।
ତାନ ଲୋକପାଲାନ୍ ପ୍ରଣତାନ କଟାକ୍ଷେଣ ଜଗତ୍ପ୍ରଭୁଃ ।
ଅନୁଜଗ୍ରାହ ପଥଯ୍ୟନ୍ ଇନ୍ଦ୍ରଦ୍ୟୁମ୍ନଂ ସ ସାଦରମ୍ । ୩୦ ।
ରାଜନ୍ କୃତସ୍ତ୍ୱୟା ସତ୍ୟଂ ପ୍ରାସାଦୋ ଭଗବଦ୍ଧିତୌ ।
ନାସ୍ତଂ ନ କାଳସ୍ତଦ୍ରାଜ୍ୟଂ ନ ବା ଭୂତ୍ ସନ୍ତତିନୃପ ।
ଗୀତଗାନାବସରତୋ ଭୂୟାନ୍ କାଳୋ ଗତସ୍ତବ । ୩୧ ।
ମନ୍ୱନ୍ତରଂ ହି ଦେବାନାଂ ଯୁଗାନାମେକସପ୍ତତିଃ ।
ତବ ବଂଶୋଽପି ବିଚ୍ଛିନ୍ନଃ କୋଟିଶଃ କ୍ଷିତିପା ଗତାଃ ।
ଦେବୋଽସ୍ତି ତେ ଚ ପ୍ରାସାଦୋ ଦ୍ୱୟମବାବଶିଷ୍ୟତେ ! ୩୨ ।

---

ନିକଟରେ ରହି, ଦୂରରୁ ବ୍ରହ୍ମାଙ୍କୁ ପ୍ରଣାମ କଲେ । ଜଗତ୍ପ୍ରଭୁ ପଦ୍ମଯୋନି ସମ୍ମୁଖସ୍ଥିତ କୃତାଞ୍ଜଳି ନରପତି ଇନ୍ଦ୍ରଦ୍ୟୁମ୍ନଙ୍କୁ ଏବଂ ସମସ୍ତ ପ୍ରଣତ ଲୋକପାଳଙ୍କୁ କଟାକ୍ଷ ନିକ୍ଷେପରେ ଅନୁଗ୍ରହ କରି ନରପତିଙ୍କୁ ସାଦରେ କହିବାକୁ ଲାଗିଲେ । ୩୦ । ହେ ରାଜନ୍ ! ତୁମ୍ଭେ ଯେଉଁ ଭଗବାନଙ୍କ ନିମନ୍ତେ ପ୍ରାସାଦ ( ମନ୍ଦିର ) ପ୍ରସ୍ତୁତ କରିଅଛ, ତାହା ଯଥାର୍ଥ ସତ୍ୟ ଅଟେ । କିନ୍ତୁ ଯେଉଁ ସମୟରେ ସେହି ପ୍ରାସାଦ ନିର୍ମାଣ ହୋଇଥିଲା, ସେହି ସମୟ ବହୁ କାଳ ଉତ୍ତୀର୍ଣ୍ଣ ହୋଇ ଯାଇଅଛି । ତୁମ୍ଭର ସେ ରାଜ୍ୟ ମଧ୍ୟ ବିଲୁପ୍ତ ହୋଇ ଯାଇଛି । ତୁମ୍ଭର ସନ୍ତାନ ସନ୍ତତି ପରମ୍ପରା ମଧ୍ୟ କେହି ନାହିଁ । ଯେଉଁ ସମୟରେ ସଙ୍ଗୀତ ହେଉଥିଲା, ସେହି କାଳରେ ତୁମ୍ଭ ପକ୍ଷେ ଅତି ଦୀର୍ଘ କାଳ ଗତ ହୋଇଯାଇଛି ।୩୧। ଦେବତାମାନଙ୍କର ଏକସପ୍ତତି ଯୁଗ ହେଲେ ଏକ ମନ୍ୱନ୍ତର ହୁଏ, ଏହି ମନ୍ୱନ୍ତର ପରିମିତ କାଳ ମଧ୍ୟରେ କେବଳ ଯେ ତୁମ୍ଭର ବଂଶ ବିଚ୍ଛିନ୍ନ ହୋଇଯାଇଛି ତାହା ନୁହେଁ, କୋଟି କୋଟି କ୍ଷିତିପତିମାନେ ମଧ୍ୟ ବିଗତ ହୋଇ ଯାଇଛନ୍ତି । କେବଳ ସେହି ଦାରୁମୂର୍ତ୍ତି ଦେବବର ଏବଂ ତୁମ୍ଭର ପ୍ରାସାଦ ଏହି ଦୁଇଟି ସେଠାରେ ବିଦ୍ୟମାନ ଅଛି ।୩୨।

ଦ୍ୱିତୀୟସ୍ୟ ମନୋରାର୍ଦ୍ଧଯୁଗଂ ସ୍ୱାରୋଚିଷସ୍ୟ ଚ ।
ମମାନ୍ତିକେ ତେ ବସତୋ ମୃତ୍ୟୁର୍ବା ନ ଜରା ତଥା ।
ବିପର୍ଯ୍ୟୟୋ ଋତୂନାଂ ବା ନ କାଳପରିଣାମିତା । ୩୩ ।
ତଦ୍‌ଗଚ୍ଛ ଭୂମୌ ରାଜେନ୍ଦ୍ର ଦେବଂ ପ୍ରାସାଦମେବ ଚ ।
ଆତ୍ମସମ୍ବନ୍ଧନଂ କୃତ୍ୱା ପୁନରାୟାହି ବେଗବାନ୍ ।
ଅଥବାହଂ ପ୍ରୟାସ୍ୟାମି ତବାନୁପଦମେବ ହି । ୩୪ ।
ତ୍ୱମଗ୍ରତୋ ଧରାଂ ଗତ୍ୱା ଯାବତ୍‌ସମ୍ଭାରମୃଦ୍ଧିମତ୍ ।
କରିଷ୍ୟସି ମହାଭାଗ ତାବଦେବ ବ୍ରଜାମ୍ୟହମ୍ । ୩୫ ।
ଇତ୍ୟାଜ୍ଞାପ୍ୟେନ୍ଦ୍ରଦ୍ୟୁମ୍ନଂ ତଂ ଭଗବାନ୍ ସ ପିତାମହଃ ।
ଦେବାନ୍ ପୁରଃସ୍ଥିତାନାହ ବିନୟାନତକନ୍ଧରାନ୍ ।
ବଦ୍ଧାଞ୍ଜଲୀନ୍ ସନ୍ନତାଂଶାନ୍ ତତ୍‌ପଦନ୍ୟସ୍ତ ବୀକ୍ଷଣାନ୍ ।
ଉବାଚ ଭଗବାନ୍ ସ୍ନିଗ୍‌ଧଗମ୍ଭୀରବଚସାଂ ହି ବାଃ । ୩୬ ।

---

ଦ୍ୱିତୀୟ ମନୁ ସ୍ୱାରୋଚିଷଙ୍କ ଏହି ଆଦ୍ୟ ଯୁଗକାଳ, ତୁମ୍ଭେ ମୋ ନିକଟ ରହି ଅତିବାହିତ କଲ; ତଥାପି ମୃତ୍ୟୁ ବା ଜରାର ବଶୀଭୂତ ହେଲନାହିଁ । ଋତୁ ବିପର୍ଯ୍ୟୟ ମଧ୍ୟ ଅନୁଭବ ହେଲନାହିଁ ଏବଂ କାଳର ପରିଣାମ ବି ପରିଦୃଷ୍ଟ ହେଲା ନାହିଁ ।୩୩। ଅତଏବ ହେ ରାଜେନ୍ଦ୍ର ! ତୁମ୍ଭେ ବର୍ତ୍ତମାନ ଭୂଲୋକକୁ ଗମନ କର । ଦେବ ଓ ପ୍ରାସାଦକୁ ଆତ୍ମ ଆୟତ୍ତ କରି ଶୀଘ୍ର ମୋ ନିକଟକୁ ଆସିବ । ଅଥବା ଆସିବାର ଆବଶ୍ୟକ କଣ ? ମୁଁ ମଧ୍ୟ ତୁମ୍ଭର ପଶ୍ଚାତ୍ ଯାଉଅଛି । ତୁମ୍ଭେ ସର୍ବାଦୌ ଧରାଧାମରେ ଉପସ୍ଥିତ ହୋଇ ଯଥା ସମୟରେ ସମୃଦ୍ଧି ସହ ଦ୍ରବ୍ୟ ସମ୍ଭାର ଆୟୋଜନ କରିବ, ମୁଁ ସେହି ଅବସରରେ ସେଠାରେ ଉପସ୍ଥିତ ହେବି ।୩୫। ହେ ଦ୍ୱିଜଗଣ ! ଭଗବାନ୍ ପିତାମହ ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି ଆଜ୍ଞା ପ୍ରଦାନ କରି ସମ୍ମୁଖରେ ଆଗତ କୃତାଞ୍ଜଳି, ବିନୟାବନତ-କନ୍ଧରାଂଶ ବ୍ରହ୍ମପାଦ ବିନ୍ୟସ୍ତଲୋଚନ ଦେବବୃନ୍ଦଙ୍କୁ ସ୍ନିଗ୍‌ଧ

କମର୍ଥମ ଗତାଃ ସର୍ବେ ଯୁଗପତ୍ତ୍ରିଦବୌକସଃ ।
ଯତ୍କାର୍ଯ୍ୟଂ ବୋ ମୟା କାର୍ଯ୍ୟଂ ବକ୍ତୁମର୍ହଥ ମା ଚିରମ୍ । ୩୭ ।

ଜୈମିନିରୁବାଚ

ଇତି ଶ୍ରୁତ୍ୱା ବଚସ୍ତସ୍ୟ ଧାତୁସ୍ତ୍ରିଦଶା ବିଗତକ୍ଲମାଃ ।
ପ୍ରତ୍ୟୁଚୁର୍ହର୍ଷିତାଃ ସର୍ବେ ଭଗବନ୍ତଂ ପିତାମହମ୍ । ୩୮ ।

ଦେବା ଊଚୁଃ

ଉପାସିତଃ ପୁରାସ୍ମାଭିର୍ଯୋ ନୀଳାଦ୍ରୌ ମଣୀମୟଃ ।
ଅନ୍ତର୍ହିତଃ କଥଂ ଦେବ ଇଦାନୀଂ ଦାରୁରୂପଧୃକ୍ ।
ଆବିର୍ଭୂତଃ କଟୋ ଗନ୍ତେ ଇନ୍ଦ୍ରଦ୍ୟୁମ୍ନସ୍ୟ ଭୂପତେଃ । ୩୯ ।
ଏତସ୍ୟ କାରଣଂ ଜ୍ଞାତୁଂ ଭବତଃ ପାଦପଙ୍କଜମ୍ ।
ଆରାଧୟିତୁମିହାୟାତାଃ ପ୍ରସୀଦ କଥୟସ୍ୱ ତତ୍ । ୪୦ ।

---

ଗମ୍ଭୀର ଭାଷାରେ ପଚାରିଲେ—ହେ ତ୍ରିଦିବବାସୀଗଣ ! ତୁମ୍ଭେ ସମସ୍ତେ ସମ୍ମିଳିତ ହୋଇ କି ନିମନ୍ତେ ଆସିଅଛ ? ତୁମ୍ଭମାନଙ୍କର ଯେଉଁ କାର୍ଯ୍ୟ ତାହା ମୁଁ କରିବି । ଯଥାଶୀଘ୍ର କହନ୍ତୁ । ଜୈମିନି କହିଲେ—ତ୍ରିଦଶଗଣ ବିଧାତାଙ୍କର ଏହି ସାଦର ବାକ୍ୟ ଶ୍ରବଣ କରି ସମସ୍ତେ ଆଶ୍ୱସ୍ତ ହୋଇ ହର୍ଷର ସହିତ ଭଗବାନ ପିତାମହଙ୍କୁ ପ୍ରତ୍ୟୁତ୍ତର କରିବାକୁ ଲାଗିଲେ । ୩୫-୩୮ । ଦେବଗଣ କହିଲେ, ଆମ୍ଭେମାନେ ଏଥିପୂର୍ବରୁ ନୀଳପର୍ବତରେ ଯେଉଁ ନୀଳମଣିମୟ ଦେବଙ୍କର ଉପାସନା କରୁଥିଲୁ, ସେ କି ନିମିତ୍ତ ଅନ୍ତର୍ହିତ ହେଲେ ? ବର୍ତ୍ତମାନ ବା କି ନିମନ୍ତେ ଇନ୍ଦ୍ରଦ୍ୟୁମ୍ନ ଭୂପତିଙ୍କର ଯଜ୍ଞ ଶେଷରେ ଦାରୁରୂପ ଧାରଣ ପୂର୍ବକ ଆବିର୍ଭୂତ ହେଲେ ? ଆମ୍ଭେମାନେ ଉକ୍ତ ବିଷୟର କାରଣ ଜାଣିବା ପାଇଁ ଆପଣଙ୍କ ପାଦ ପଙ୍କଜ ଆରାଧନା ନିମନ୍ତେ ଏଠାକୁ ଆସିଅଛୁ ।୪୦।

ଇତ୍ୟୁକ୍ତସ୍ତ୍ରିଦଶୈର୍ଦ୍ଦେବୋ ଭଗବାନ୍ ପଙ୍କଜାସନଃ ।
ରହସ୍ୟମେତଦ୍ ଭୋ ଦେବାଃ କସ୍ୟଚନ୍ନୋଦିତଂ ପୁରା ।
ସର୍ବେ ସମୁଦିତା ଯସ୍ମାଦପୃଚ୍ଛତ ଚରାଗତାଃ ।
ତତୋ ବଃ କଥୟିଷ୍ୟାମି ପୁରାଣାଂ ଗୁହ୍ୟମୁତ୍ତମମ୍ । ୪୧ ।
ପୂର୍ବେ ପରାର୍ଦ୍ଧେ ଭୋ ଦେବାଃ କ୍ଷେତ୍ରଂ ତତ୍ର ପୁରୁଷୋତ୍ତମମ୍ ।
ନୀଳାଶ୍ମବପୁରାସ୍ଥାୟ ନ ତତ୍ୟାଜ ଜନାର୍ଦ୍ଦନଃ । ୪୨ ।
ସାମ୍ପ୍ରତଂ ମେ ଦ୍ୱିତୀୟସ୍ତୁ ପରାର୍ଦ୍ଧଂ ସମୁପସ୍ଥିତମ୍ ।
ମନୁଃ ସ୍ୱାୟମ୍ଭୁବୋ ନାମ ଶ୍ୱେତବାରାହକଳ୍ପକେ ।
ପ୍ରବର୍ତ୍ତତେଽସ୍ମିଂ ଲୋକେ ବୈ ପ୍ରାତରଦ୍ୟ ଦିନସ୍ୟ ଚ ।
ଦାରୁମୂର୍ତ୍ତିରସ୍ମିଂ ଦେବୋ ଭୁବନାନାଂ ହି ମଧ୍ୟମେ । ୪୩ ।

---

ହେ ଦେବ ! ପ୍ରସନ୍ନ ହୋଇ ଏହାର ବୃତ୍ତାନ୍ତ ବର୍ଣ୍ଣନ କରନ୍ତୁ । ଦେବବୃନ୍ଦଙ୍କ ଦ୍ୱାରା ଭଗବାନ ପଙ୍କଜାସନ ଏହି ଭାବରେ ଜିଜ୍ଞାସିତ ହୋଇ କହିଲେ— ହେ ଦେବଗଣ ! ଏହି ଗୋପନୀୟ ବିଷୟ ଏଥିପୂର୍ବରୁ କାହା ନିକଟରେ ପ୍ରକାଶ କରିନାହିଁ । ତେବେ ତୁମ୍ଭେମାନେ ନିତାନ୍ତ ସନ୍ତୋଷ ଓ ଆଗ୍ରହ ସହକାରେ ଜାଣିବା ପାଇଁ ଧର୍ମକାଳ ଉପସ୍ଥିତ ଅଛ, ଏଥିପାଇଁ ସୁରଗଣଙ୍କର ଯେ ଗୁହ୍ୟତମ ବୃତ୍ତାନ୍ତ, ତାହା ବର୍ଣ୍ଣନ କରୁଛି । ହେ ଦେବଗଣ ! ଏଥିପୂର୍ବେ ମୋର ଏକ ପରାର୍ଦ୍ଧକାଳ ବ୍ୟାପୀ ସେହି ପୁରୁଷୋତ୍ତମ କ୍ଷେତ୍ରରେ ଭଗବାନ ଜନାର୍ଦ୍ଦନ ନୀଳକାନ୍ତ ମଣିମୟ ଶରୀର ଅବଲମ୍ବନ ପୂର୍ବକ ଅବସ୍ଥାନ କରୁଥିଲେ । ବର୍ତ୍ତମାନ ମୋର ଦ୍ୱିତୀୟ ପରାର୍ଦ୍ଧ କାଳ ଉପସ୍ଥିତ । ଏହି ଦିବସର ପ୍ରାତଃକାଳରେ ଶ୍ୱେତବାରାହ କଳ୍ପେ ସ୍ୱାୟମ୍ଭୁବ ମନୁ ପ୍ରବର୍ତ୍ତିତ ହୋଇଛନ୍ତି । ପ୍ରଭୁ ଜନାର୍ଦ୍ଦନ ଏହି ପ୍ରାତଃକାଳରୁ ଭୁବନସ୍ଥ ଭୂଲୋକରେ ଦାରୁମୂର୍ତ୍ତି ହୋଇ ଅଧିଷ୍ଠିତ ହୋଇଅଛନ୍ତି ।୪୩।

ମମାୟୁଷଃପ୍ରମାଣନ୍ତୁ ମାନୟନ୍ ସ୍ଥାସ୍ୟତେ ବିଭୁଃ ।
ମମାତ୍ମା ଏଷ ଭଗବାନ୍ ଅହମେତନ୍ମୟଃ ସୁରାଃ ।
ନାବୟୋର୍ବିଦ୍ୟତେ କଶ୍ଚିଦସ୍ମିନ୍ ସ୍ଥାବରଜଙ୍ଗମେ ।୪୪।
କ୍ଷୀରୋଦାର୍ଣ୍ଣବମଧ୍ୟେ ତୁ ଶ୍ୱେତଦ୍ୱୀପେଽହିତଳ୍ପକେ ।
ଯଃ ଶେତେ ଯୋଗନିଦ୍ରାଂ ତାଂ ମାନୟନ୍ ପୁରୁଷୋତ୍ତମଃ ।
ସ ମୂଳଂ ଜଗତାମାଦ୍ୟସ୍ତସ୍ୟ ରୋମାଣି ଯାନି ବୈ ।
ତାନି କଳ୍ପଦ୍ରୁମସ୍ଥାନି ଶଙ୍ଖଚକ୍ରାଙ୍କିତାନି ବୈ ।୪୫।
ତନ୍ମଧ୍ୟସ୍ଥୋ ହ୍ୟୟଂ ବୃକ୍ଷଶ୍ଚୈତନ୍ୟାଧିଷ୍ଠିତଃ ସୁରା ।
ସ୍ୱୟମ୍ଭୁପୂଜିତଃ ସିନ୍ଧୋ ସଲିଲେ ସାରପୌରୁଷଃ ।୪୬।
ଭୋଗାନ୍ ଭୋକ୍ତୁଂ ତ୍ରିଲୋକସ୍ଥାନ୍ ଦାରୁବର୍ଷ୍ମା ଜନାର୍ଦ୍ଦନଃ ।
ଅନେକଜନ୍ମସାହସ୍ରୈର୍ଭକ୍ତିଯୋଗେନ ଗ୍ରବତଃ ।୪୭।

---

ମଦାୟୁ ପରମାୟୁର ସୀମାକାଳ ପର୍ଯ୍ୟନ୍ତ ଏହି ରୂପରେ ପ୍ରଭୁ ଅବସ୍ଥାନ କରିବେ । ହେ ସୁରଗଣ ! ଭଗବାନ ମୋର ଆତ୍ମା ଏବଂ ମୁଁ ମଧ୍ୟ ତାଙ୍କର ଆତ୍ମା । ଏହି ସ୍ଥାବର ଜଙ୍ଗମ ମଧ୍ୟରେ ଆମ୍ଭ ଉଭୟଙ୍କର କଅଣ ହେଲେ ପ୍ରଭେଦ ନାହିଁ ।୪୪। ଯେ କ୍ଷୀରୋଦ ସମୁଦ୍ର ମଧ୍ୟରେ ଶ୍ୱେତଦ୍ୱୀପରୂପ ଶଯ୍ୟାରେ ସେହି ଯୋଗନିଦ୍ରା ଦେବୀଙ୍କୁ ବହୁ ମାନ ପ୍ରଦର୍ଶନ କରି ଆଶ୍ରୟ ପୂର୍ବକ ଶୟନ କରିଥାନ୍ତି, ସେହି ପୁରୁଷୋତ୍ତମ ହିଁ ଏହି ଚରାଚର ଜଗତର ଆଦ୍ୟ କାରଣ ଏବଂ ତାଙ୍କ ଶରୀରସ୍ଥ ରୋମରାଜି ହିଁ କଳ୍ପଦ୍ରୁମସ୍ଥ ଓ ଶଙ୍ଖ-ଚକ୍ରାଙ୍କିତ ।୪୫। ତନ୍ମଧ୍ୟରେ ଚୈତନ୍ୟର ଅଧିଷ୍ଠାନ-ଭୂତ ସେହି ସାର ପୌରୁଷ ବୃକ୍ଷଟି ଅଗ୍ରେ ହିଁ ସିନ୍ଧୁ ଜଳରେ ଆବିର୍ଭୂତ ହୋଇଛନ୍ତି । ହେହି ଜନାର୍ଦ୍ଦନ ତ୍ରିଲୋକସ୍ଥିତ ସମସ୍ତ ଭୋଗ-ସମ୍ଭୋଗ ବାସନାରେ ଦାରୁ ବିଗ୍ରହ ଧାରଣ କରିଅଛନ୍ତି । ଏ ବହୁ ସହସ୍ର ଜନ୍ମରେ ଭକ୍ତିର ସହିତ ତନ୍ମୟ ହୋଇଥାନ୍ତି ।୪୭।

ଘୋର-ସଂସାରନାଶାୟ ମୟା ପୂର୍ବଂ ପ୍ରଯାଚିତଃ ।
ପୁନଃ ପୁନଃ ସୃଷ୍ଟିହାନିପାଳନୋଦ୍‌ବିଗ୍ନଚେତସା । ୪୮ ।
ଅଶେଷକର୍ମନାଶାୟ ଜଗତାଂ ସଦ୍ୟମୁକ୍ତୟେ ।
ଧାରଣାଧ୍ୟାନଯୋଗାନାଂ ଦୁଷ୍କରାଣାଂ ବିନାପି ହି ।
ମୋକ୍ଷାୟ ଭଗବାନାବିରଭୂତ୍ ପୁରୁଷୋତ୍ତମଃ । ୪୯ ।
ପ୍ରଚ୍ଛନ୍ନବର୍ଷ୍ମରେତଦ୍ ବୈ ତସ୍ୟାନ୍ନାସ୍ୟ ବିମୃଶୟେତ୍ ।
ଧର୍ମିଷ୍ଠାହ୍ୱପ୍ରମାଣେନ ଯାଦୃଗଦୃଷ୍ଟଃ ସ ଏବ ହି ।
ଚତୁର୍ବର୍ଗପ୍ରଦୋ ଦେବୋ ଯୋ ଯଥା ତଦ୍ ବିଭାବୟେତ୍ । ୫୦ ।
ତଦ୍ଦର୍ଶନପରିକ୍ଷୀଣପାପସଙ୍ଘାଃ କ୍ରମାଦ୍ ଭୁବି ।
ଭବନ୍ତି ନିର୍ମଳାତ୍ମାନଃ ପୁରୁଷା ମୁକ୍ତିଭାଜନମ୍ । ୫୧ ।

---

ମୁଁ ଏହି ଘୋର ସଂସାର ବିନାଶ ବାସନାରେ ପୂର୍ବରୁ ତାଙ୍କୁ ପ୍ରାର୍ଥନା କରିଥିଲି । କାରଣ ପୁନଃ ପୁନଃ ସୃଷ୍ଟି ଓ ହାନି ଏବଂ ପାଳନ ବିଷୟରେ ନିତାନ୍ତ ଉଦବିଗ୍ନ ହୋଇ ପଡ଼ିଥିଲି । ଜୀବ-ମାନଙ୍କର ଅଶେଷ କର୍ମ ବିନାଶ ପାଇଁ ଜଗତର ସଦ୍ୟ ମୁକ୍ତି ସଂପାଦନାର୍ଥ, ଧ୍ୟାନ ଧାରଣା ପ୍ରଭୃତି ଦୁଷ୍କର ଯୋଗ ବ୍ୟତୀତ ମୋକ୍ଷ ପ୍ରଦାନ ବାସନାରେ ସେହି ପୁରୁଷୋତ୍ତମ ଭଗବାନ ଆବିର୍ଭୂତ ହୋଇଥିଲେ ।୪୯। ତାଙ୍କର ଏହି ଦାରୁମୟ ବିଗ୍ରହ ବିଷୟରେ ବିତର୍କ କରିବା ଉଚିତ ନୁହେଁ । ଯିଏ ଯେଉଁ ପ୍ରକାର ଭାବରେ ତାଙ୍କୁ ଦର୍ଶନ କରନ୍ତି, ଧର୍ମିଷ୍ଠ ଲୋକମାନଙ୍କ ଗୃହୀତ ପ୍ରମାଣାନୁସାରେ ସେ (ଭଗବାନ) ଜଗନ୍ନାଥ ତାଙ୍କ ନିକଟରେ ସେହି ପ୍ରକାର ପରିଦୃଷ୍ଟ ହୋଇ ଧର୍ମ, ଅର୍ଥ, କାମ, ମୋକ୍ଷ ପର୍ଯ୍ୟନ୍ତ ଦାନ କରନ୍ତି ।୫୦। ତାଙ୍କ ଦର୍ଶନରେ ଜୀବଗଣ କ୍ରମଶଃ କ୍ଷୀଣ ପାପ ହୋଇ ଭୂମଣ୍ଡଳରେ ନିର୍ମଳାତ୍ମା ଓ ପରିଶେଷରେ ମୁକ୍ତିଭାଜନ ହୋଇଥାନ୍ତି । ଜୈମିନି କହିଲେ—ଦେବଗଣ

ଜୈମିନିରୁବାଚ

ଏତଚ୍ଛ୍ରୁତ୍ୱା ତତୋ ଦେବାଃ ପଦ୍ମଯୋନେର୍ବଚୋଽମୃତମ୍ ।
ତୁଷ୍ଟାଃ ସଞ୍ଚିନ୍ତୟାମାସୁଃ ହୃଷ୍ଟେନାନ୍ତରାତ୍ମନା ।
ଅଚିରସ୍ଥାୟି ଦେବତ୍ୱଂ ବିହାୟୈତଦ୍ ଭୁବଂ ଗତାଃ ।
ତସ୍ମିନ୍ କ୍ଷେତ୍ରବରେ ଦେବମାରାଧମଃ ସୁସଂଯତାଃ ।୫୨।
ହର୍ଷସମ୍ଫୁଲ୍ଲନୟନାନ୍ ସୁରାନ୍ ଦୃଷ୍ଟ୍ୱା ପିତାମହଃ ।
ଇନ୍ଦ୍ରଦ୍ୟୁମ୍ନାନୁଗ୍ରହାୟ ଯଃ ପ୍ରକାଶଂ ଗତଃ ପ୍ରଭୁଃ ।୫୩।
ଯା ଯାତ୍ରା ପ୍ରତିମାସସ୍ୟ ସ୍ୱୟମେବ ବଦିଷ୍ୟତି ।
ବରାନ୍ ପ୍ରଦାସ୍ୟତି ବହୂନ୍ ଭଗବାନ୍ ଭକ୍ତବତ୍ସଳଃ ।୫୪।
ପ୍ରାସାଦମିନ୍ଦ୍ରଦ୍ୟୁମ୍ନସ୍ୟ ପ୍ରତିଷ୍ଠାପୟିତୁଂ ବିଭୁମ୍ ।
ଅହଞ୍ଚାପି ଗମିଷ୍ୟାମି ଯୂୟଂ ତତ୍ର ପ୍ରୟାତ ବୈ ।୫୫।
ଇନ୍ଦ୍ରଦ୍ୟୁମ୍ନୋଽଗ୍ରତୋ ଯାତୁ ପ୍ରତିଷ୍ଠାଦ୍ରବ୍ୟସମ୍ଭୃତୌ ।
ସହାୟାସ୍ତସ୍ୟ ଭବତ ଯୂୟଂ କ୍ଷୀଣାଧିକାରିଣଃ ।୫୬।

---

ପଦ୍ମଯୋନିଙ୍କର ଏହି ଅମୃତାୟମାନ ବାକ୍ୟ ଶ୍ରବଣ କରି ସନ୍ତୁଷ୍ଟ ହୃଦୟରେ ଚିନ୍ତା କରିବାକୁ ଲାଗିଲେ । ଆମ୍ଭେମାନେ ଅଦ୍ୟାବଧି ଅଚିରସ୍ଥାୟୀ ଦେବତ୍ୱପଦକୁ ପରିତ୍ୟାଗ ପୂର୍ବକ ଭୂଲୋକରେ ଯାଇ ଏବଂ ସେହି କ୍ଷେତ୍ରୋତ୍ତମରେ ଦେବୋତ୍ତମଙ୍କୁ ସଂଯତଚିତ୍ତ ହୋଇ ଆରାଧନା କରିବୁ । ୫୨ । ପିତାମହ ଦେବତାମାନଙ୍କୁ ହର୍ଷ ଉତ୍-ଫୁଲ୍ଲ ଲୋଚନରେ ସନ୍ଦର୍ଶନ କରି କହିଲେ, ପ୍ରଭୁ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ଅନୁଗ୍ରହାର୍ଥ ପ୍ରକାଶିତ ହୋଇଛନ୍ତି, ତାଙ୍କର ଯେଉଁ ପ୍ରତିମାସର ଯାତ୍ରା, ଉତ୍ସବ, ତାହା ସେ ନିଜେ ବ୍ୟକ୍ତ କରିବେ । ଆଉ ମଧ୍ୟ ସେହି ଭକ୍ତବତ୍ସଳ ଭଗବାନ ବହୁ ବର ପ୍ରଦାନ କରିବେ । ।୫୪। ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାସାଦରେ ପ୍ରଭୁଙ୍କୁ ପ୍ରତିଷ୍ଠା କରିବାପାଇଁ ମୁଁ ମଧ୍ୟ ଯିବି, ତୁମ୍ଭେମାନେ ସେଠାକୁ ଯାତ୍ରା କର । ଇନ୍ଦ୍ରଦ୍ୟୁମ୍ନ ପ୍ରତିଷ୍ଠା ନିମିତ୍ତ ବହୁ ଦ୍ରବ୍ୟ ସମ୍ଭାର ଆୟୋଜନ ନିମନ୍ତେ ଅଗ୍ରେ ହିଁ ଯାତ୍ରା କରନ୍ତୁ । ତୁମ୍ଭେମାନେ ବର୍ତ୍ତମାନ ନିଜ ନିଜ ଅଧିକାର ଛାଡ଼ି ସେଠାକୁ ଗମନ ପୂର୍ବକ ନୃପବରଙ୍କୁ ସାହାଯ୍ୟ କର । ସମ୍ପ୍ରତି

ମନ୍ୱନ୍ତରଂ ବ୍ୟତୀତଂ ବୈ ପ୍ରଥମଂ ସାମ୍ପ୍ରତଂ ନୃପ ।
ଇନ୍ଦ୍ରଦ୍ୟୁମ୍ନେନ ସହିତାସ୍ତତ୍ର ଗତ୍ୱା ସୁରୋତ୍ତମାଃ ।
ପ୍ରାସାଦପ୍ରତିମାନାଞ୍ଚ ବିଧାତୁଂ ସାମ୍ୟମସ୍ୟ ବୈ ।୫୭।
ତସ୍ମାନ୍ନ୍ରି ସମ୍ଭୃତସନ୍ତାନସମ୍ବନ୍ଧେ ଯୋଽଧୁନା ହ୍ୟସୌ ।
ଅସ୍ୟ ସନ୍ତତିସମ୍ବନ୍ଧ ସ୍ମରଣଂ ନାପି ଭୂତଲେ ।୫୮।
ମଦାଜ୍ଞୟା ପଦ୍ମନିଧିଃ ସର୍ବ ଯାସ୍ୟତି ଭୂତଲମ୍ ।
ପ୍ରତିଷ୍ଠାର୍ଥେ ଭଗବତଃ ସମ୍ପତ୍ତ୍ୟୈ ସର୍ବବସ୍ତୁନଃ ।୫୯।
ଇନ୍ଦ୍ରଦ୍ୟୁମ୍ନୋଽପି ହୃଷ୍ଟାତ୍ମା ଦୃଷ୍ଟ୍ୱା ବ୍ରାହ୍ମୀଂ ଶ୍ରିୟଂ ଦ୍ୱିଜାଃ ।
ମହଦାଶ୍ଚର୍ଯ୍ୟସମ୍ପନ୍ନଃ ପ୍ରଣିପତ୍ୟ ଜଗଦ୍ଗୁରୁମ୍ ।
ତଦାଜ୍ଞାଂ ଶିରସା ଧୃତ୍ୱା ଦେବୈଃ କ୍ଷୀଣାଧିକାରିଭିଃ ।
ଆଜଗାମ ଭୁବଂ ଶୀଘ୍ରଂ ବିଧିନା ଚାନୁମୋଦିତଃ ।୬୦।
ଇତି ଶ୍ରୀସ୍କାନ୍ଦେ ଭଗବତୋ ନୀଳମଣିମୟମୂର୍ତ୍ତେରନ୍ତର୍ଦ୍ଧାନସ୍ୟ
ପୁନର୍ଦାରୁମୟରୂପେଣାବିର୍ଭାବସ୍ୟ ବ୍ରହ୍ମଣା ଇନ୍ଦ୍ରଦ୍ୟୁମ୍ନସମୀପେ
ନୈବୃତ୍ତକଥନଂ ନାମ ଚତ୍ୱାରିଂଶୋଽଧ୍ୟାୟଃ ।୬୧।

---

ପ୍ରଥମ ମନ୍ୱନ୍ତର ଗତ ହୋଇଅଛି, ସେଥିପାଇଁ ଏହି ରାଜାଙ୍କର ହିଁ ଏହି ପ୍ରାସାଦ ଓ ପ୍ରତିମା, ଏହା ବିଶେଷ ଭାବରେ ନିଶ୍ଚିତ କରିବା ପାଇଁ ତୁମ୍ଭେମାନେ ରାଜାଙ୍କ ସହିତ ସେ ସ୍ଥାନକୁ ଯାତ୍ରା କର । ରାଜାଙ୍କ ସନ୍ତାନ ସମ୍ବନ୍ଧରେ ସ୍ମରଣ ନାହିଁ, ଉକ୍ତ କାରଣରୁ ବର୍ତ୍ତମାନ ରାଜା ସାହାଯ୍ୟହୀନ, ଅତଏବ ତୁମ୍ଭେମାନେ ପ୍ରତିଷ୍ଠାର ଦ୍ରବ୍ୟମାନ ଆୟୋଜନ କର ।୫୮। ମୋର ଆଦେଶ କ୍ରମେ ପଦ୍ମ-ନିଧି ଭଗବାନଙ୍କ ପ୍ରତିଷ୍ଠା ନିମନ୍ତେ ସକଳ ବସ୍ତୁ ସଂପାଦନାର୍ଥି ତୁମ୍ଭମାନଙ୍କ ସହିତ ଯିବେ । ହେ ଦ୍ୱିଜଗଣ ! ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କର ଏହି ପ୍ରକାର ଆଧିପତ୍ୟ ସନ୍ଦର୍ଶନରେ ହୃଷ୍ଟ ଓ ଅତ୍ୟାଶ୍ଚର୍ଯ୍ୟ ହୋଇ ବ୍ରହ୍ମାଙ୍କ ଅନୁମୋଦନ କ୍ରମେ ତାଙ୍କୁ (ଜଗଦ୍‌ଗୁରୁ ବ୍ରହ୍ମାଙ୍କୁ) ପ୍ରଣିପାତ ପୂର୍ବକ ତାହାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି କ୍ଷୀଣାଧିକାରୀ ଦେବତାମାନଙ୍କ ସହିତ ଭୂଲୋକକୁ ଆଗମନ କଲେ ।୬୦।

॥ ଚତ୍ୱାରିଂଶ ଅଧ୍ୟାୟ ସମାପ୍ତ ॥

# ଚତୁର୍ବିଂଶୋଽଧ୍ୟାୟଃ

ଜୈମିନିରୁବାଚ

ଆଗତ୍ୟ ଚ ଜଗନ୍ନାଥଂ ଚିରଦୁତ୍କଣ୍ଠମାନସଃ ।
ଦଣ୍ଡବତ୍ ପ୍ରଣନାମାସୌ ପୁନରୋମାଞ୍ଚକଞ୍ଚୁକଃ ।୧।
ନମୋ ବ୍ରହ୍ମଣ୍ୟ ଦେବାୟ ଗୋବ୍ରାହ୍ମଣ ହିତାୟ ଚ ।
ପ୍ରଣତାର୍ତ୍ତିବିନାଶାୟ ଚତୁର୍ବର୍ଗୈକହେତବେ ।
ହିରଣ୍ୟଗର୍ଭ ପୁରୁଷ-ପ୍ରଧାନାବ୍ୟକ୍ତରୂପିଣେ ।୨।
ଓଁ ନମୋ ବାସୁଦେବାୟ ଶୁଦ୍ଧଜ୍ଞାନସ୍ୱରୂପିଣେ ।୨।
ଇତ୍ୟୁଚ୍ଚରନ୍ ସ୍ତୁତିଂ ଭୂପଃ ସାନନ୍ଦାଶ୍ରୁବିଲୋଚନଃ ।
ପ୍ରଦକ୍ଷିଣଂ ପୁନଃ କୁର୍ବନ୍ନନାମ ଚ ପୁନଃ ପୁନଃ ।୩।
ତତୋଽନ୍ୟଦେବତା ଯା ବୈ ତତ୍ରାଗଚ୍ଛନ୍ମୁଦାନ୍ୱିତାଃ ।
ତୁଷ୍ଟୁବୁଃ ପ୍ରଣତା ଦେବଂ କୃତାଞ୍ଜଳିପୁଟା ମୁଦା ।୪।

---

## ଚତୁର୍ବିଂଶ ଅଧ୍ୟାୟ

ଶ୍ରୀ ଜୈମିନି କହୁଛନ୍ତି— ରାଜା ଇନ୍ଦ୍ରଦ୍ୟୁମ୍ନ ଚିରକାଳ ପରେ ଅତି ଉତ୍କଣ୍ଠିତ ଚିତ୍ତରେ ଆଗତ ହୋଇ ରୋମାଞ୍ଚିତ କଳେବରରେ ଶ୍ରୀଜଗନ୍ନାଥଦେବଙ୍କୁ ଦଣ୍ଡବତ ପ୍ରଣାମ କଲେ ।୧। ଯେ ବ୍ରହ୍ମଣ୍ୟ ଦେବ ଓ ଗୋ-ବ୍ରାହ୍ମଣହିତକାରୀ, ଯେ ପ୍ରଣତ ଜନଙ୍କର ଅଶୁଭ ବିନାଶକ ତଥା ଚତୁର୍ବର୍ଗ ଲାଭର ଏକମାତ୍ର ନିଦାନ, ଯେ ହିରଣ୍ୟ-ଗର୍ଭ ପୁରୁଷ ପ୍ରଧାନ ଓ ଅବ୍ୟକ୍ତରୂପୀ ଏବଂ ବିଶୁଦ୍ଧ ଜ୍ଞାନ-ମୂର୍ତ୍ତି, ସେହି ବାସୁଦେବଙ୍କୁ ପ୍ରଣାମ କରୁଛି ।୨। ଭୂପତି ଏହି ପ୍ରକାରେ ବହୁବିଧ ସ୍ତୁତିବାକ୍ୟ ଉଚ୍ଚାରଣ ପୂର୍ବକ ଆନନ୍ଦାଶ୍ରୁ ଲୋଚନରେ ପ୍ରଦକ୍ଷିଣ କରି ପୁନର୍ବାର ପୁନଃ ପୁନଃ ପ୍ରଣାମ କରିବାକୁ ଲାଗିଲେ । ତଦନନ୍ତର ଅନ୍ୟାନ୍ୟ ସେହି ସମସ୍ତ ଦେବ-ଗଣ ସେଠାରେ ଉପସ୍ଥିତ ହୋଇ ହର୍ଷ ସହିତ କୃତାଞ୍ଜଳି-ପୁଟେ ନତ ଭାବରେ ଦେବଙ୍କୁ ସ୍ତୁତି କରିବାକୁ ଲାଗିଲେ ।୪।

ଦେବା ଊଚୁଃ

ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସ ଭୂମିଂ ସର୍ବତୋବ୍ୟାପ୍ୟ ଅତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ ।୫।

ଯଃ ପୁମାନ୍ ପରମଂ ବ୍ରହ୍ମ ପରମାତ୍ମେତି ଗୀୟତେ ।
ଭୂତଂ ଭବ୍ୟଂ ଭବିଷ୍ୟଞ୍ଚ ସର୍ବଂ ପୁରୁଷ ଏବ ତତ୍ ।୬।

ଏତାବାନସ୍ୟ ମହିମା ଜ୍ୟାୟାନେଷ ପୁମାନ୍ ପ୍ରଭୁଃ ।
ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ।୭।

ଛନ୍ଦାଂସି ଜଜ୍ଞିରେ ତ୍ୱତ୍ତସ୍ତ୍ୱତ୍ତୋ ଯଜ୍ଞ ପୁମାନପି ।
ତ୍ୱତ୍ତୋଽସ୍ୟାଶ୍ଚ ବ୍ୟଜାୟନ୍ତ ଗାବୋ ମେଷାଦୟସ୍ତଥା ।୮।

---

ଦେବଗଣ କହୁଛନ୍ତି,—ଯାହାଙ୍କର ସହସ୍ର ମସ୍ତକ, ସହସ୍ର ଜ୍ଞାନେନ୍ଦ୍ରିୟ, ସହସ୍ର କର୍ମେନ୍ଦ୍ରିୟ, ଯେହି ନିଖିଳ ପାର୍ଥିବ ଦେହ-ବ୍ୟାପୀ, ପରମାତ୍ମା ପୁରୁଷଙ୍କ ନାଭିର ଊର୍ଦ୍ଧ୍ୱଭାଗରେ ଦଶଅଙ୍ଗୁଳି ସ୍ଥାନ ଅତିକ୍ରମ ପୂର୍ବକ ଅର୍ଥାତ୍ ହୃଦୟ ପଦ୍ମରେ ବିଜ୍ଞାନ ରୂପେ ଅବସ୍ଥାନ କରିଅଛନ୍ତି ।୫। ସେ ହିଁ ପରମ ପୁରୁଷ, ପରମାତ୍ମା ପରବ୍ରହ୍ମ ବୋଲି ଅଭିହିତ ହୋଇଥାନ୍ତି । ସେ ଭୂତ, ଭବିଷ୍ୟତ, ବର୍ତ୍ତମାନ ଏହି କାଳତ୍ରୟର ଗୋଚର । ଏହିପରି ସର୍ବଦେଶ, ସର୍ବକାଳ-ବ୍ୟାପକତା ଯାହାଙ୍କର ମହିମା, ଯେହି ପ୍ରଭୁ ସର୍ବଶ୍ରେଷ୍ଠ ପୁରୁଷ ଅଟନ୍ତି । ନିଖିଳ ପଞ୍ଚଭୂତ ଏହାଙ୍କର ଏକପାଦ, ଋକ୍, ଯଜୁଃ, ସାମ ଏହି ବେଦତ୍ରୟ ଏହାଙ୍କର ଅନ୍ୟତମ ପାଦତ୍ରୟ ।୭। ଏହାଙ୍କର ପାଦତ୍ରୟାତ୍ମକ ସୂର୍ଯ୍ୟରୂପ, ସ୍ୱର୍ଗରେ ମୁକ୍ତି ଦ୍ୱାର-ସ୍ୱରୂପ । ହେ ଦେବ ! ଆପଣ ସେହି ସର୍ବନିୟନ୍ତା ପରମାତ୍ମା ସ୍ୱରୂପ, ଆପଣଙ୍କଠାରୁ ଛନ୍ଦ ଉତ୍ପନ୍ନ ହୋଇଅଛି । ଆପଣଙ୍କ-ଠାରୁ ଯଜ୍ଞ ପୁରୁଷଙ୍କ ଉତ୍ପତ୍ତି । ଆପଣଙ୍କଠାରୁ ଅଶ୍ୱ, ଗୋ, ମେଷାଦି ଉତ୍ପନ୍ନ ହୋଇଅଛି ।୮।

ବ୍ରାହ୍ମଣୋ ମୁଖତୋ ଜାତା ବାହୁଜାଃ କ୍ଷତ୍ରିୟାସ୍ତଥା ।
ବିଶଶ୍ଚୋରୁଜାଃ ପଦ୍ଭ୍ୟାଂ ତଥା ଶୂଦ୍ରାଃ ସମାଗତାଃ । ୯ ।
ମନସଶ୍ଚନ୍ଦ୍ରମା ଜାତଶ୍ଚକ୍ଷୁଷସ୍ତେ ଦିବାକରଃ ।
କର୍ଣ୍ଣାଭ୍ୟାଂ ଶ୍ୱସନଃ ପ୍ରାଣୈର୍ଜଜ୍ଞେ ହ୍ୟାସ୍ୟା ହବ୍ୟବାଡ଼ପି । ୧୦ ।
ନାଭିତୋ ଗଗନଂ ଦ୍ୟୌଶ୍ଚ ମୂର୍ଦ୍ଧ୍ନସ୍ତେ ସମବର୍ତ୍ତତ ।
ପାଦାଭ୍ୟାଂ ତେ ଧରା ଜାତା ଦିଶଶ୍ଚାଷ୍ଟୌ ଶ୍ରୁତେର୍ଗତାଃ । ୧୧ ।

ସପ୍ତାସନ୍ ପରିଧୟସ୍ତ୍ୱତ୍ତ ଏକବିଂଶତ୍ ସମିଛ ବୈ ।
ଚରାଚରାଃ ସର୍ବଭାବାସ୍ତ୍ୱତ୍ତ ଏବ ହି ଜଜ୍ଞିରେ । ୧୨ ।
ତ୍ୱମେବ ଜଗତାଂ ନାଥସ୍ତ୍ୱମେବ ପରିପାଳକଃ ।
ଉଗ୍ରରୂପଶ୍ଚ ସଂହର୍ତ୍ତା ତ୍ୱମେବ ପରମେଶ୍ୱର । ୧୩ ।
ତ୍ୱମେବ ଯଜ୍ଞୋ ଯଜ୍ଞାଂଶସ୍ତ୍ୱଂ ଯଜ୍ଞେଶଃ ପରାତ୍ପରଃ ।
ଶବ୍ଦବ୍ରହ୍ମ ପରଂ ତ୍ୱଂ ହି ଶବ୍ଦବ୍ରହ୍ମାପି ବିଶ୍ୱରାଟ । ୧୪ ।

---

ଆପଣଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଊରୁରୁ ବୈଶ୍ୟ ଏବଂ ପାଦରୁ ଶୂଦ୍ର ଉତ୍ପନ୍ନ ହୋଇଅଛନ୍ତି ଏବଂ ମନରୁ ଚନ୍ଦ୍ର, ଚକ୍ଷୁରୁ ସୂର୍ଯ୍ୟ, କର୍ଣ୍ଣଦ୍ୱୟରୁ ପ୍ରାଣାଦି ପଞ୍ଚବାୟୁ, ଜିହ୍ୱାରୁ ଅଗ୍ନି, ନାଭିରୁ ଆକାଶ, ମସ୍ତକରୁ ସ୍ୱର୍ଗ, ପଦଦ୍ୱୟରୁ ପୃଥିବୀ ତଥା କର୍ଣ୍ଣରୁ ଅଷ୍ଟ-ଦିଗଙ୍କର ଉତ୍ପତ୍ତି ହୋଇଅଛି । ୧୧ । ଆପଣ ଯଜ୍ଞ ପୁରୁଷ ରୂପରେ ଆବିର୍ଭୂତ ହେଲେ ସପ୍ତ ସମୁଦ୍ର ଆପଣଙ୍କ ପରିଧି (ବେଷ୍ଟନଦ୍ରବ୍ୟ) ହୋଇଥିଲ । ଏକବିଂଶତି ଛନ୍ଦ ଆପଣଙ୍କର ସମିଧ ହୋଇଥିଲ । ଏହି ଚରାଚରାତ୍ମକ ନିଖିଳ ଜଗତ ହିଁ ଆପଣଙ୍କଠାରୁ ଉତ୍ପନ୍ନ ହୋଇଅଛି । ହେ ପରମେଶ୍ୱର ! ଆପଣ ହିଁ ଜଗତର ନାଥ ଓ ଜଗତର ପାଳନକର୍ତ୍ତା ଏବଂ ସଂହାରକର୍ତ୍ତା ହୋଇ ଉଗ୍ରମୂର୍ତ୍ତି ଧାରଣ କରନ୍ତି । ୧୩ । ଆପଣ ସ୍ୱ ପ୍ରକାଶ, ଯଜ୍ଞ, ଯଜ୍ଞାଂଶ, ପରାତ୍ପର ଯଜ୍ଞେଶ୍ୱର, ତଥା ପରମ ଶବ୍ଦବ୍ରହ୍ମ ଏବଂ ବିଶ୍ୱପ୍ରକାଶ ବ୍ରହ୍ମସ୍ୱରୂପ ସମ୍ରାଟ ଅଟନ୍ତି ।

ସ୍ୱରାଟ୍ ସମ୍ରାଡ୍ ଜଗନ୍ନାଥ ବିରାଡସି ଜଗତ୍ପତେ ।
ଅଧଶ୍ଚୋର୍ଦ୍ଧ୍ୱଞ୍ଚ ତିର୍ଯ୍ୟକ୍ତ୍ୱଂ ଭୂତ୍ୱା ବ୍ୟାପ୍ତଂ ଜଗନ୍ମୟ । ୧୫ ।
ପ୍ରାପ୍ନୁବନ୍ତି ପରଂ ସ୍ଥାନଂ ତ୍ୱାଂ ଯଜନ୍ତଶ୍ଚ ଯାଜ୍ଞିକାଃ ।
ଭୋଜ୍ୟଂ ଭୋକ୍ତା ହବିର୍ହୋତା ହବନଂ ତ୍ୱଂ ଫଳପ୍ରଦଃ । ୧୬ ।
ସମସ୍ତକର୍ମଭୋକ୍ତା ତ୍ୱଂ ସର୍ବକର୍ମାତ୍ମକଃ ପ୍ରଭୋ ।
ସର୍ବକର୍ମୋପକରଣଂ ସର୍ବକର୍ମ ଫଳପଦଃ । ୧୭ ।
କର୍ମପ୍ରେରୟିତା ତ୍ୱଂ ହି ଧର୍ମକାମାର୍ଥସିଦ୍ଧିଦଃ ।
ତ୍ୱାମୃତେ ମୁକ୍ତିଦଃ କୋଽନ୍ୟୋ ହୃଷୀକେଶ ନମୋଽସ୍ତୁ ତେ । ୧୮ ।

ନମୋଽସ୍ତ୍ୱନନ୍ତାୟ ସହସ୍ରମୂର୍ତ୍ତୟେ ।
ସହସ୍ରପାଦାକ୍ଷିଶିରୋରୁବାହବେ ।
ସହସ୍ରନାମ୍ନେ ପୁରୁଷାୟ ଶାଶ୍ୱତେ ।
ସହସ୍ରକୋଟୀଯୁଗଧାରିଣେ ନମଃ । ୧୯ ।

---

ହେ ଜଗନ୍ମୟ ! ଆପଣ ହିଁ ଅଧଃ, ଊର୍ଦ୍ଧ୍ୱ ଓ ତିର୍ଯ୍ୟକ ପ୍ରଦେଶ ପରିବ୍ୟାପ୍ତ କରିଅଛନ୍ତି । ୧୫ । ଯାଜ୍ଞିକଗଣ ଆପଣଙ୍କ ଉପାସନା କରି ପରମ ସ୍ଥାନ ପ୍ରାପ୍ତ ହୁଅନ୍ତି । ଆପଣ ହିଁ ଭୋଜ୍ୟ ଓ ଭୋକ୍ତା ; ଆପଣ ହିଁ ହବି, ହୋତା ଓ ହୋମସ୍ୱରୂପ ଫଳପ୍ରଦ । ହେ ପ୍ରଭୋ ! ଆପଣ ହିଁ ସମସ୍ତ କର୍ମର ଭୋକ୍ତା ଏବଂ ସମସ୍ତ କର୍ମସ୍ୱରୂପ । ଆପଣ ନିଖିଳ କର୍ମର ଉପକରଣ ତଥା ନିଖିଳ କର୍ମର ଫଳପ୍ରଦ । ଆପଣ ହିଁ ସମସ୍ତଙ୍କୁ କର୍ମରେ ନିଯୁକ୍ତ କରିଥାଆନ୍ତି । ୧୭ । ଆପଣ ହିଁ ଧର୍ମ, ଅର୍ଥ ଓ କାମର ସିଦ୍ଧି ପ୍ରଦାନ କରିଥାନ୍ତି । ହେ ହୃଷିକେଶ ! ଆପଣଙ୍କ ବ୍ୟତୀତ କିଏ ମୁକ୍ତି ପ୍ରଦାନ କରିପାରେ ? ସେହି ଅନନ୍ତ ସହସ୍ର ମୂର୍ତ୍ତି, ସହସ୍ର ପାଦ, ସହସ୍ର ଚକ୍ଷୁ ଓ ଶିର ଏବଂ ଉରୁ ଓ ବାହୁଧାରୀ, ସହସ୍ର ନାମଧେୟ ଶାଶ୍ୱତ ପୁରୁଷ ସେହି ସହସ୍ର କୋଟି ଯୁଗଧାରୀ ପୁରୁଷୋତ୍ତମଙ୍କୁ ପ୍ରଣାମ । ୧୯ ।

ବୟଂ ଚ୍ୟୁତାଧିକାରତ୍ୱାଂ ପ୍ରପନ୍ନାଃ ଶରଣଂ ପ୍ରଭୋ ।
ତ୍ରାହି ନଃ ପୁଣ୍ଡରୀକାକ୍ଷ ଅଗତୀନାଂ ଗତିର୍ଭବ । ୨୦ ।
ସଂସାରପତିତସ୍ୟୈକୋ ଜନ୍ତୋସ୍ତ୍ୱଂ ଶରଣଂ ପ୍ରଭୋ ।
ତ୍ୱତ୍ତ ସୃଷ୍ଟୌ ତ୍ୱାଦୃଶୋ ନାସ୍ତି ଯୋ ଦୀନମଣପାଳକଃ । ୨୧ ।
ଦୀନାନାଥୈକଶରଣଂ ପିତା ତ୍ୱଂ ଜଗତଃ ପ୍ରଭୋ ।
ପାତା ମୋକ୍ତା ତ୍ୱମେବେଶ ସର୍ବାପଦ୍ବିନିବାରକଃ । ୨୨ ।
ତ୍ରାହି ବିଷ୍ଣୋ ଜଗନ୍ନାଥ ତ୍ରାହି ନଃ ପରମେଶ୍ୱର !
ତ୍ୱାମୃତେ କମଳାକାନ୍ତ କଃ ଶକ୍ତଃ ମଣରକ୍ଷଣେ । ୨୩ ।
ଅନ୍ତର୍ଯ୍ୟାମିନ୍ନମସ୍ତେଽସ୍ତୁ ସର୍ବତେଜୋନିଧେ ନମଃ ।୨୪।

---

ପ୍ରଭୋ ! ଆମ୍ଭେମାନେ ଅଧିକାରଚ୍ୟୁତ ହୋଇ, ଆପଣଙ୍କର ଶରଣାପନ୍ନ ହୋଇଅଛୁ । ହେ ପୁଣ୍ଡରୀକାକ୍ଷ ! ଆମ୍ଭେମାନେ ଅଗତି, ଆପଣ ହିଁ ଆମ୍ଭମାନଙ୍କର ଏକମାତ୍ର ଗତି । ଆପଣ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ହେ ପ୍ରଭୋ ! ଆପଣ ହିଁ ସଂସାର ସାଗର ପତିତ ଜୀବର ଏକମାତ୍ର ଆଶ୍ରୟ ସ୍ୱରୂପ । ଆପଣଙ୍କର ଏହି ସୃଷ୍ଟିରେ ଆପଣଙ୍କ ତୁଲ୍ୟ ଦୀନ ପାଳକ ଅନ୍ୟ କେହି ନାହାନ୍ତି । ଆପଣ ଦୀନ-ଅନାଥ ବ୍ୟକ୍ତିମାନଙ୍କର ଏକମାତ୍ର ଆଶ୍ରୟ । ପ୍ରଭୋ ! ଆପଣ ହିଁ ଜଗତର ପିତା ଓ ଈଶ୍ୱର । ଆପଣ ଜଗତର ରକ୍ଷାକର୍ତ୍ତା ଓ ପାଳନ କର୍ତ୍ତା, ଆପଣ ସମସ୍ତ ଆପଦ ନିବାରକ । ୨୨ । ହେ ବିଷ୍ଣୋ ! ହେ ଜଗନ୍ନାଥ ! ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ହେ ପରମେଶ୍ୱର ! ହେ କମଳାକାନ୍ତ ! ଆପଣଙ୍କ ବ୍ୟତୀତ କିଏ ବା ଆମ୍ଭମାନଙ୍କୁ ରକ୍ଷା କରିବା ପାଇଁ ସମର୍ଥ ହେବେ ? ହେ ଅନ୍ତର୍ଯ୍ୟାମିନ୍ ! ଆପଣ ନିଖିଳ ତେଜର ଆଧାର ସ୍ୱରୂପ । ଆପଣଙ୍କୁ ନମସ୍କାର । ହେ ଦ୍ୱିଜଗଣ ! ଦେବବୃନ୍ଦ ଏହି

ଇତ ସ୍ତୁବନ୍ତସ୍ତେ ଦେବାଃ ପ୍ରଣିପତ୍ୟ ପୁନଃ ପୁନଃ ।
ଇନ୍ଦ୍ରଦ୍ୟୁମ୍ନେନ ସହିତା ବହିର୍ଭୂସ୍ତ ଦ୍ୱିଜୋତ୍ତମାଃ ।
କ୍ଷେତ୍ରଂ ଶ୍ରୀ ନରସିଂହସ୍ୟ ଗତ୍ୱା ତତ୍ର ପ୍ରଣିପତ୍ୟ ଚ ।
ନମସ୍କୃତ୍ୟ ପରଂ ଭକ୍ତ୍ୟା କୃତ୍ୱାଭ୍ୟର୍ଚ୍ୟ ନୃକେଶରୀମ୍ । ୧୫ ।
ନୀଳାଚଳାଦ୍ରେଃ ଶିଖରଂ ଯତ୍ର ପ୍ରାସାଦ ଉତ୍ତମଃ ।
ଜଗ୍ମୁସ୍ତେ ପଦ୍ମନିଧିନା ସାର୍ଦ୍ଧଂ ସମ୍ଭାରକାମ୍ୟୟା । ୧୬ ।
ଦଦୃଶୁସ୍ତେ ମହାପ୍ରାଂଶୁଂ ବ୍ୟାପ୍ତଂ ଗଗନମଣ୍ଡଳେ ।
ଉତ୍ତିଷ୍ଠନ୍ତଂ ବିନ୍ଧ୍ୟଗିରିଂ ରୋଦ୍ଧୁଂ ଭାନୋର୍ଗତିଂ କିମୁ । ୧୭ ।
ବ୍ୟାପ୍ନୁବାନଂ ଦିଶଃ ସର୍ବା ବିଚିତ୍ରଘଟନୋଜ୍ଜ୍ୱଳମ୍ ।
ବହୁକାଲେ ବ୍ୟତୀତାନ୍ତେ ସୁଶ୍ରୀଭର୍ଗିବଚତ୍ରୁତମ୍ । ୧୮ ।

---

ଶ୍ରବରେ ବହୁ ସ୍ତୁତି କରି ପୁନଃ ପୁନଃ ପ୍ରଣିପାତ ପୂର୍ବକ ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ସେଠାରୁ ବହିର୍ଗତ ହେଲେ ଏବଂ କ୍ଷେତ୍ର-ଧାମରେ ଶ୍ରୀ ନରସିଂହଙ୍କୁ ପ୍ରଣିପାତ ପୂର୍ବକ ନମସ୍କାର ଓ ପରମା ଭକ୍ତି ସହକାରେ ଅଭ୍ୟର୍ଥନା କଲେ । ତଦନନ୍ତର ନୀଳପର୍ବତ ଶିଖର ପ୍ରଦେଶରେ ଯେଉଁ ସ୍ଥାନରେ ଦେବୋତ୍ତମଙ୍କ ଉତ୍ତମ ପ୍ରାସାଦଟି ନିର୍ମିତ ହୋଇଛି, ସେଠାରେ ଦ୍ରବ୍ୟ ସମ୍ଭାର ପ୍ରସ୍ତୁତ କରିବା ନିମନ୍ତେ ପଦ୍ମନିଧିଙ୍କ ସହିତ ଗମନ କଲେ । ୧୬ । ଉପସ୍ଥିତ ହୋଇ ଦେଖିଲେ, ପ୍ରାସାଦଟି ଏତାଦୃଶ ଉନ୍ନତ ଯେ ଗଗନ ମଣ୍ଡଳ ଭେଦ କରୁଛି । ବିତର୍କ କଲେ ଯେ, ସୂର୍ଯ୍ୟଙ୍କ ଗତିରୋଧ ନିମିତ୍ତ ବିନ୍ଧ୍ୟପର୍ବତ କ'ଣ ଉଦ୍ୟତ ହୋଇଛି କି ? ଆଉ ମଧ୍ୟ ସମସ୍ତ ଦିଗ ବ୍ୟାପୀ ଅବସ୍ଥିତ ସେହି ବିଭିନ୍ନ ଚିତ୍ର ଶୋଭିତ ପ୍ରାସାଦ ଦୀର୍ଘକାଳର ହେଲେ ମଧ୍ୟ ବିଚିତ୍ର ସୌନ୍ଦର୍ଯ୍ୟ ବିସ୍ତାର କରୁଅଛି । ୧୮ ।

ତଂ ଦୃଷ୍ଟ୍ୱା ଚନ୍ତୟାମାସ ଇନ୍ଦ୍ରଦ୍ୟୁମ୍ନଃ ସ ବୈଷ୍ଣବଃ ।
ଘଟିତାର୍ଦ୍ଧେ ମୟା ଯାତଂ ସତ୍ୟଲୋକମିତଃ ପୁରା ।
ଅତଶ୍ଚାଦ୍ଧୃଷ୍ଟିପଥଗଃ ପୂର୍ଣ୍ଣଃ ପ୍ରାସାଦ ଉତ୍ତମଃ । ୨୯ ।

ଅନୁଗ୍ରହାଦ ବୈ ଦେବସ୍ୟ ନାହ ମାନୁଷପୌରୁଷମ୍ ।
ମନ୍ୱନ୍ତରସମାପ୍ତିଃ ତ୍ୱ ସୂର୍ଯ୍ୟଚନ୍ଦ୍ରେନ୍ଦ୍ରଗୋଧିକା ।
ତଥାପି ଦୃଶ୍ୟତେ ଶୁଦ୍ଧଂ ପ୍ରାସାଦୋ ହ୍ୟେଷ ଦୁର୍ଲଭଃ । ୩୦ ।

ବଲ୍ମୀକସଦୃଶା ହ୍ୟେତେ ପ୍ରାସାଦା ମାନୁଷୈଃ କୃତାଃ ।
ଶୀର୍ଯ୍ୟନ୍ତ ଗେହଶୈଙ୍କୃଷୈରଲ୍ପକାଳଗତାସ୍ତୁତଃ ।
ମଦନୁକ୍ରୋଶବୁଦ୍ଧ୍ୟା ତୁ ରକ୍ଷିତଂ ଭବନଂ ହରେଃ । ୩୧ ।

---

ବଷ୍ଣୁପରାୟଣ ଇନ୍ଦ୍ରଦ୍ୟୁମ୍ନ ଏପରି ଅବକୃତ ତତ୍‌କୃତ ପ୍ରାସାଦକୁ ଦେଖି ଚନ୍ତା କରିବାକୁ ଲାଗିଲେ, ମୁଁ ଏଥି ପୂର୍ବରୁ ଯେତେବେଳେ ସତ୍ୟଲୋକକୁ ଯାଇଥା କଲି, ସେତେବେଳେ ଏହା ସୁଘଟିତ ହେବା ପାଇଁ ଅର୍ଦ୍ଧାବଶେଷ ଥିଲା । ବର୍ତ୍ତମାନ ଯେ ଏହା ସହସା ଉତ୍ତମ-ରୂପେ ସଂମ୍ପୂର୍ଣ୍ଣ ହୋଇଅଛି, ତାହା କେବଳ ଦେବଙ୍କର ଅନୁଗ୍ରହ; ମନୁଷ୍ୟର ପୌରୁଷ ସାଧ୍ୟ ନୁହେଁ । ମନ୍ୱନ୍ତର ଘଟଣାରେ ଚନ୍ଦ୍ର, ସୂର୍ଯ୍ୟ, ଇନ୍ଦ୍ର ପର୍ଯ୍ୟନ୍ତ ବିଲୀନ ହୁଅନ୍ତି । ତଥାପି ଏହି ଦୁର୍ଲଭ ପ୍ରାସାଦଟି ରହିଅଛି । ଏହି ସମସ୍ତ ବଲ୍ମୀକ ତୁଲ୍ୟ ପ୍ରାସାଦ ମନୁଷ୍ୟ-କୃତ, ଉପରିଭାଗରେ ବୃକ୍ଷାଦି ଉତ୍ପନ୍ନ ହେବାରୁ ଏଗୁଡ଼ିକ ଶୀର୍ଣ୍ଣ ହୋଇଯାଇଛି । ଏହାର ସ୍ଥିତିକାଳ ଅତି ଅଳ୍ପ । ତେବେ ଭଗବାନ ମୋ ପ୍ରତି ଅନୁଗ୍ରହ କରି ନିଜର ନିକେତନକୁ ରକ୍ଷା କରି ଅଛନ୍ତି ।୩୧।

ତଦସ୍ଥାନ ସ ସହାସ୍ମାନ୍ ବୈ ଜଗାଦ ପ୍ରଶ୍ରୟଂ ବଚଃ ।
ଜାନୀତ ଜଗଦୀଶସ୍ୟ ପ୍ରାସାଦଂ କାରିତଂ ମୟା ।
ଆବିର୍ବଭୂବ ଭଗବାନ୍ ଦାରୁରୂପବପୁଃ ସ୍ୱୟମ୍ । ୩୨ ।

ତଦାନ୍ତରୀକ୍ଷଗା ବାଣୀ ମାମୁବାଚାଶରୀରିଣୀ ।
ସହସ୍ରପାଣିସମ୍ମିତଂ ନୀଳାଦ୍ରେଃ ଶିଖରୋପରି ।
ପ୍ରାସାଦଂ କାରୟସ୍ୱେତ ସ୍ଥିତୟେ ଜଗଦୀଶିତୁଃ । ୩୩ ।

ଏତତ୍ ପ୍ରତିଷ୍ଠାନବିଧୌ ସ୍ୱୟମଭ୍ୟାଗମିଷ୍ୟତି ।
ପଦ୍ମଯୋନିଃ ସ୍ୱୟଂ ସାର୍ଦ୍ଧଂ ସିଦ୍ଧବ୍ରହ୍ମର୍ଷିଦୈବତୈଃ ।

ତଦତ୍ର କ୍ରିୟତେ କୋ ବା ସମ୍ଭାରୋ ଜ୍ଞାୟତେ କଥମ୍ ।
ଇତ୍ୟୁକ୍ତବନ୍ତଂ ତେ ପ୍ରୋଚୁର୍ଦେବା ଭଗ୍ନାଧିକାରିଣଃ । ୩୪ ।

---

ଇନ୍ଦ୍ରଦ୍ୟୁମ୍ନ ତତସ୍ଥ ସାହାଯ୍ୟକାରୀ ବ୍ୟକ୍ତିମାନଙ୍କୁ ପ୍ରୀତିବାକ୍ୟରେ କହିଲେ—ତୁମ୍ଭେମାନେ ଜାଣ କି, ଜଗଦୀଶ୍ୱରଙ୍କର ପ୍ରାସାଦ ମୁଁ ପ୍ରସ୍ତୁତ କରିଥିଲି, ଯହିଁରେ ଭଗବାନ୍ ସ୍ୱୟଂ ହିଁ ଦାରୁରୂପ ଶରୀର ନେଇ ଆବିର୍ଭୂତ ହୋଇଅଛନ୍ତି । ୩୨ । ସେହି ସମୟରେ ଆକାଶବାଣୀ ମୋତେ କହିଲେ ଯେ, ଜଗଦୀଶ୍ୱରଙ୍କ ବାସ ନିମିତ୍ତ ନୀଳପର୍ବତର ଶିଖର ଭାଗରେ ସହସ୍ର ହସ୍ତ ପରିମିତ ଏକ ପ୍ରାସାଦ ପ୍ରସ୍ତୁତ କରାଅ । ତହିଁରେ ଦେବବରଙ୍କ ପ୍ରତିଷ୍ଠା ନିମନ୍ତେ ପଦ୍ମଯୋନି ସ୍ୱୟଂ ହିଁ ସିଦ୍ଧ, ବ୍ରହ୍ମର୍ଷି ତଥା ଦୈବତଗଣଙ୍କ ସହିତ ଆଗମନ କରିବେ । ଅତଏବ ହେ ସୁରଗଣ ! ସଂପ୍ରତି କି ପ୍ରକାର ଦ୍ରବ୍ୟସମ୍ଭାର ପ୍ରସ୍ତୁତ କରିବା ଉଚିତ ଏବଂ ତାହା କି ପ୍ରକାରରେ ଜାଣିବାକୁ ହେବ ? ଏହା ଶ୍ରବଣ କରି ଭଗ୍ନାଧିକାର ଦେବଗଣ କହିଲେ, ହେ ରାଜନ୍ ! ଆମ୍ଭମାନଙ୍କୁ ଏ ବିଷୟ କିଛି ଜଣା

ଦେବା ଊଚୁଃ

ନ ଜାନୀମୋ ବୟମପି ବେତ୍ତ୍ୟସ୍ୟାକଂ ଗୁରୋର୍ଗୁରୁଃ ।
ଇଦାନୀଂ ନ ବଦେଽସ୍ମାକଂ ନ ହ୍ୟ ସ୍ୱର୍ଗପୁରୋହିତଃ । ୩୫ ।

ପଦ୍ମନିଧିରୁବାଚ

ସ୍ୱାମିନ୍ ବିଧେରନୁଜ୍ଞାନାଦାଗତୋଽସ୍ମି ତ୍ୱୟା ସହ ।
କର୍ତ୍ତବ୍ୟଂ କିଂ ମୟା ବ୍ରୂହି କିଂ ବା ବସ୍ତୁ ପ୍ରଦୀୟତେ । ୩୬ ।

ଜୈମିନିରୁବାଚ

ଇତି ହ୍ୟାଲପ୍ୟମାନାନାଂ ନାରଦଃ ପୁରତଃ ସ୍ଥିତଃ ।
ବ୍ରହ୍ମଣା ପ୍ରେରିତଃ ପୂର୍ବଂ ସର୍ବଶାସ୍ତ୍ରବିଶାରଦଃ । ୩୭ ।
ସର୍ବସମ୍ଭାରବସ୍ତୂନି ଯଥାଶାସ୍ତ୍ରଂ ମୁନେ କୁରୁ ।
ସମ୍ପାଦୟିଷ୍ୟତି ତବ ଶାସନାତ୍ ପଦ୍ମକୋ ନିଧିଃ । ୩୮ ।

---

ନାହିଁ । ଆମ୍ଭମାନଙ୍କ ଗୁରୁଙ୍କ ଗୁରୁ ବୃହସ୍ପତି ହିଁ ଏସବୁ ଜାଣନ୍ତି । କାରଣ ସେ ଆମ୍ଭର ସ୍ୱର୍ଗୀୟ ପୁରୋହିତ । ଅତଏବ ଉକ୍ତ ବିଷୟ ଆମ୍ଭମାନଙ୍କର ବକ୍ତବ୍ୟ ନୁହେଁ । ୩୫ । ଏହି ସମୟରେ ପଦ୍ମନିଧି କହିଲେ, ହେ ସ୍ୱାମିନ୍ ! ମୁଁ ବିଧାତାଙ୍କ ଅନୁମତି କ୍ରମେ ଆପଣଙ୍କ ସହିତ ଆସିଅଛି, ବର୍ତ୍ତମାନ ମୋର କ'ଣ କର୍ତ୍ତବ୍ୟ ଏବଂ କେଉଁ କେଉଁ ବସ୍ତୁ ଦେବାକୁ ହେବ, ତାହା କହନ୍ତୁ । ୩୬ । ଜୈମିନି କହିଲେ—ବ୍ରହ୍ମା ପୂର୍ବରୁ ସର୍ବଶାସ୍ତ୍ର ବିଶାରଦ ଶ୍ରୀନାରଦଙ୍କୁ ପ୍ରେରଣ କରିଥିଲେ । ବର୍ତ୍ତମାନ ଏହିପରି କଥୋପକଥନ ସମୟରେ ସେ ( ନାରଦ ) ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ନରପତି ତାଙ୍କୁ କହିଲେ—ମୁନେ ! ଆପଣ ସପ୍ରତି ଦେବ ପ୍ରତିଷ୍ଠା ଉପଯୋଗୀ ସମସ୍ତ ଦ୍ରବ୍ୟ ସମ୍ଭାର ସମ୍ପନ୍ନ କରନ୍ତୁ । ଆପଣଙ୍କ ଆଦେଶକ୍ରମେ ପଦ୍ମନିଧି ହିଁ ସକଳ ସମ୍ପାଦନ କରିବେ । ୩୮ ।

ଦୃଷ୍ଟ୍ୱା ତଂ ତେ ମୁଦା ମୁକ୍ତା ଉତ୍ତସ୍ଥୁଃ ତ୍ୱରଣଃ ଦ୍ରୁତମ୍ ।
ଷଡ଼ର୍ଘ୍ୟପୂଜଯା ତସ୍ୟ ପୂଜାଞ୍ଚକ୍ରେ ନୃପୋତ୍ତମଃ ।
ପ୍ରଣେମୁସ୍ତେଽପି ତଂ ଦେବା ମନୁଷ୍ୟାକାରଧାରଣଃ ।
ଉଚେ ତମିନ୍ଦ୍ରଦ୍ୟୁମ୍ନୋଽପି ପ୍ରତିଷ୍ଠାବିଧିବସ୍ତୁନ । ୩୯ ।

ଇନ୍ଦ୍ରଦ୍ୟୁମ୍ନ ଉବାଚ

ନାହଂ ବେଦ୍ମି ମୁନିଶ୍ରେଷ୍ଠ ଚିତ୍ତଂତ୍ର ତ୍ୟକ୍ତଃ ପୁରୋଧସା ।
ଆଦେଶସ୍ୱ କ୍ରମାଦ୍ ବ୍ରହ୍ମନ୍ ସମ୍ପାଦ୍ୟଂ ଯଦ୍ ଵଦେଵ ହି । ୪୦ ।
ଇତି ଶ୍ରୀସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନରାଜକୃତଭଗବତ୍ପ୍ରତିଷ୍ଠାବର୍ଣ୍ଣନମ
ଚତୁର୍ବିଂଶୋଽଧ୍ୟାୟଃ । ୨୪ ।

---

ଦେବଗଣ ନାରଦଙ୍କୁ ଦେଖି ସନ୍ତୁଷ୍ଟ ଚିତ୍ତରେ ଉତ୍ଥାନ ପୂର୍ବକ ସମ୍ମାନ କଲେ । ନୃପବର ଷଡ଼ର୍ଘ୍ୟ ଘଟିତ ପୂଜାଦ୍ୱାରା ଅର୍ଚ୍ଚନା କଲେ । ମନୁଷ୍ୟାକୃତି ଦେବଗଣ ମଧ୍ୟ ତାଙ୍କୁ ପ୍ରଣାମ କଲେ । ଇନ୍ଦ୍ରଦ୍ୟୁମ୍ନ ପ୍ରତିଷ୍ଠାର ବସ୍ତୁ ସମସ୍ତ ସମ୍ପାଦନ ସମ୍ପର୍କରେ କହିଲେ, ହେ ମୁନିଶ୍ରେଷ୍ଠ ! ମୁଁ ଉପସ୍ଥିତ ବିଷୟରେ କିଛି ଜାଣେ ନାହିଁ । ବିଶେଷତଃ ପୌର୍ଦ୍ଧନ ବ୍ୟାପୀ ମୋର ପୁରୋହିତ ସଂସର୍ଗ ପରିତ୍ୟକ୍ତ ହୋଇଅଛି । ଅତଏବ ହେ ମୁନେ ! ଯେଉଁ ପ୍ରକାରେ ସଂପାଦନ କରିବାକୁ ହେବ, ଆପଣ ତାହା କ୍ରମରେ ଆଦେଶ କରନ୍ତୁ । ୪୦ ।

॥ ଚତୁର୍ବିଂଶ ଅଧ୍ୟାୟ ସମାପ୍ତ ॥

---

## ପଞ୍ଚବିଂଶୋଽଧ୍ୟାୟଃ

ଜୈମିନିରୁବାଚ

ଇତ୍ୟୁକ୍ତୋ ନାରଦଃ ସୋଽପି ଯଥାଶାସ୍ତ୍ରଂ ବିଗୃହ୍ୟ ବୈ ।
ଆଲେଖ୍ୟ କ୍ରମଶଃ ପତ୍ରେ ରାଜ୍ଞେ ତସ୍ମୈ ନ୍ୟବେଦୟତ୍ ॥ ୧ ॥
ରାଜାପି ପତ୍ରଂ ତଚ୍ଛ୍ରୁତ୍ୱା ସୋଽବଧାର୍ଯ୍ୟ ପୁନଃ ପୁନଃ ।
ପ୍ରଦଦୌ ପଦ୍ମନିଧୟେ ଲିଖିତାନ୍ୟତ୍ର ଯାନି ବୈ ॥ ୨ ॥
ସମ୍ପାଦୟ ପଦ୍ମନିଧେ ଶାଲାଂ ପର୍ଣ୍ଣମୟୀଂ କୁରୁ ।
ବ୍ରହ୍ମଣଃ ସଦନଂ ଶୁଭ୍ରଂ ବ୍ରହ୍ମର୍ଷୀଣାଞ୍ଚ ନିର୍ମଲମ୍ ॥ ୩ ॥
ଇନ୍ଦ୍ରାଦୀନାଂ ସୁରାଣାଞ୍ଚ ସିଦ୍ଧାନାଂ ମର୍ତ୍ତ୍ୟବାସିନାମ୍ ।
ମୁନୀନ୍ଦ୍ରାଣାଂ ନିବାସାଂଶ୍ଚ ରାଜ୍ଞାଂ ପାତାଳବାସିନାମ୍ ।
ତଥା ଚ ନାଗରାଜାନଂ ନିଧେ ତୈଲୋକ୍ୟବାସିନାମ୍ ।
ପଣ୍ୟଯୋଗ୍ୟାସ୍ତୁନୈପୁଣ୍ୟଂ ଗୃହଂ ଗୃହମତନ୍ଦ୍ରିତମ୍ ।
କାରୟାଶୁ ନିଧେ ଦ୍ରବ୍ୟସମ୍ଭାରଂ ଯାବଦେବ ତୁ ॥ ୪ ॥

---

## ପଞ୍ଚବିଂଶ ଅଧ୍ୟାୟ

ଜୈମିନି କହୁଛନ୍ତି, ନରପତିଙ୍କ ଦ୍ୱାରା ଶ୍ରୀ ନାରଦ ଜିଜ୍ଞାସିତ ହୋଇ ଯଥା ଶାସ୍ତ୍ର ବିଗ୍ରହ ପୂର୍ବକ କ୍ରମଶଃ ସମସ୍ତ ବିବରଣ ପତ୍ରରେ ଲେଖି ତାଙ୍କ ନିକଟକୁ ପ୍ରେରଣ କଲେ । ୧ । ଇନ୍ଦ୍ରଦ୍ୟୁମ୍ନ ସେହି ପତ୍ର ଶ୍ରବଣ କରି ବିବେଚନା ପୂର୍ବକ ପଦ୍ମନିଧିଙ୍କୁ ପ୍ରଦାନ କଲେ । ରାଜା କହିଲେ, ହେ ପଦ୍ମନିଧେ ! ତୁମ୍ଭେ ସମସ୍ତ ସମ୍ପାଦନ କର । ପ୍ରଥମରେ ପର୍ଣ୍ଣମୟୀ ଶାଳା ସମୂହ ପ୍ରସ୍ତୁତ କର । ବ୍ରହ୍ମାଙ୍କ ସଦନ (ଗୃହ) ଶୁକ୍ଳବର୍ଣ୍ଣ ଓ ବ୍ରହ୍ମର୍ଷିମାନଙ୍କ ନିଳୟ ନିର୍ମଳ ହେବ । ଇନ୍ଦ୍ରାଦି ସୁରଗଣ, ସିଦ୍ଧଗଣ ତଥା ମର୍ତ୍ତ୍ୟବାସୀ ମୁନୀନ୍ଦ୍ରମାନଙ୍କ ନିବାସ ଏବଂ ରାଜଗଣ ଓ ପାତାଳ-ବାସୀ ନାଗରାଜମାନଙ୍କ ସ୍ଥିତି ନିମନ୍ତେ ଉପଯୁକ୍ତ ଗୃହ ନିର୍ମାଣ କର । ୩ । ହେ ପଦ୍ମନିଧେ ! ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏହି ତ୍ରିଲୋକର ଲୋକସମୂହ ଉପଯୋଗୀ ପଣ୍ୟଦ୍ରବ୍ୟ ରାଶିକୁ ଉଭୟ

ବିଶ୍ୱକର୍ମାପି ଚ ତବ ସାହାଯ୍ୟଂ ରଚୟିଷ୍ୟତି । ୫ ।
ଇତ୍ୟାଦିଶନ୍ତଂ ସ ମୁନିରିନ୍ଦ୍ରଦ୍ୟୁମ୍ନମୁବାଚ ତମ୍ ।
ସମ୍ଭାରାନ୍ ପୃଥଗେତଙ୍କି କର୍ତ୍ତବ୍ୟଂ ସାବଧାନତ । ୬ ।
ସୁବର୍ଣ୍ଣୈଃ ସୁଘଟିତାଂ ସାଧୁ ରଥତ୍ରୟମଲଂକୃତମ୍ ।
ଦୁକୂଳରତ୍ନମାଲାଦ୍ୟୈର୍ଦିବ୍ୟମାଲ୍ୟୈଶ୍ଚ ତଂ ମହତ । ୭ ।
ବାସୁଦେବସ୍ୟ ଚ ରଥୋ ଗରୁଡ଼ଧ୍ୱଜଚିହ୍ନିତଃ ।
ପଦ୍ମଧ୍ୱଜଃ ସୁଭଦ୍ରାୟା ରଥମୂର୍ଦ୍ଧନି ଧାର୍ଯ୍ୟତାମ୍ । ୮ ।
ଆସନଂ ଜଗତାଂ ଭୂପ ସ୍ୱୟମାସନବିଗ୍ରହଃ ।
ତଦ୍ୟାନେ ଜଗତାଂ ନାଥସ୍ତତୋ ଯାନଂ ନ ବିଦ୍ୟତେ ।
ପଶ୍ୟେଚ୍ଚରାଚରଂ ସର୍ବଂ ଜ୍ଞାନାଦର୍ଶେ ସୁନିର୍ମଳେ । ୯ ।

---

ପାର୍ଶ୍ୱରେ ନିକ୍ଷେପ ପୂର୍ବକ, ମଧ୍ୟବର୍ତ୍ତୀ ପ୍ରଶସ୍ତ ସରଳ ମାର୍ଗ ତଥା ଉପରି ଭାଗରେ ଶ୍ରେଣୀବଦ୍ଧ ଗୃହସମୂହ ସମ୍ପାଦନ କରିବାକୁ ଉଦ୍‌ଯୋଗୀ ହୁଅ । ହେ ନିଧେ ! ତୁମ୍ଭେ ଯଥାଶୀଘ୍ର ସକଳ ଦ୍ରବ୍ୟ ସମ୍ଭାର ପ୍ରସ୍ତୁତ କର । ବିଶ୍ୱକର୍ମା ଏହି କାର୍ଯ୍ୟରେ ତୁମ୍ଭଙ୍କୁ ସାହାଯ୍ୟ କରିବେ । ୫ । ଇନ୍ଦ୍ରଦ୍ୟୁମ୍ନ ଏହିପରି ଆଦେଶ କରିବା-ବେଳେ, ନାରଦ ତାଙ୍କୁ କହିଲେ—ରାଜନ୍ ! ସମସ୍ତ ସମ୍ଭାର ଯେପରି ସାବଧାନତା ସହିତ ପୃଥକ୍ ପୃଥକ୍ ସଞ୍ଚିତ ହେବ ଏବଂ ତିନିଗୋଟି ରଥ ଯେପରି ସୁଗଠିତ ହେବ ଓ ସ୍ୱର୍ଣ୍ଣ ଅଳଂକାରରେ ମଣ୍ଡିତ ହେବ । ଦୁକୂଳ, ମାଲ୍ୟ ଓ ରତ୍ନାଦି ଦ୍ୱାରା ଏହି ରଥତ୍ରୟ ଆବୃତ ହେବ । ୭ । ବାସୁଦେବଙ୍କ ରଥ ଗରୁଡ଼ ଧ୍ୱଜରେ ଚିହ୍ନିତ, ସୁଭଦ୍ରାଙ୍କ ରଥୋପରି ପଦ୍ମଧ୍ୱଜ ସ୍ଥାପନ କରିବେ । ହେ ନରପତି ! ଯେ ନିଖିଳ ଜଗତର ଆସନ, ସେ ସ୍ୱୟଂ ଆସନ ବିଗ୍ରହ । ଏଣୁ ସ୍ୱୟଂ ଜଗନ୍ନାଥ ହିଁ ତାଙ୍କ ଯାନ ବିଷୟରେ ଉଲ୍ଲିଖିତ ହେବେ । କାରଣ ତାଙ୍କ ବ୍ୟତୀତ ଆଉ ଅନ୍ୟ ଆଧାର ବିଦ୍ୟମାନ ନାହିଁ । ସେ ସୁନିର୍ମଳ ଜ୍ଞାନରୂପ ଆଦର୍ଶରେ ସମସ୍ତ ଚରାଚରକୁ ଦର୍ଶନ କରୁଅଛନ୍ତି । ୯ ।

ସ୍ଥିତୋ ହସ୍ତତଳେ ନିତ୍ୟଂ ନିର୍ମଲସ୍ତସ୍ୟ ଦର୍ପଣଃ ।
ତଳସ୍ଥତ୍ୱାଦସୌ ତାଳଃ ସଦା ତେନାଙ୍କିତଃ ପ୍ରଭୁଃ ।
ତତଃ ସ ଏବ ଶେଷସ୍ୟ ବଳଭଦ୍ରାବତାରିଣଃ । ୧୦ ।
ଅଥବା ସୀରିଣଃ କାର୍ଯ୍ୟଂ ସୀରମେବ ଧ୍ୱଜୋତ୍ତମମ୍ ।
ଧ୍ୱଜଃ ସ ନିର୍ମଲଃ କାର୍ଯ୍ୟସ୍ତସ୍ମାତ୍ତାଳଧ୍ୱଜୋତ୍ତମଃ । ୧୧ ।
ନ ବାସିତବ୍ୟୋ ଦେବୋଽସାବପ୍ରତିଷ୍ଠେ ରଥେ ନୃପ ।
ପ୍ରାସାଦେ ମଣ୍ଡପେ ବାପି ପୁରେ ତନ୍ନିଷ୍ଫଳଂ ଭବେତ୍ । ୧୨ ।
ତସ୍ମାତ୍ ପ୍ରତିଷ୍ଠା ପ୍ରଥମଂ ହରେଃ କାର୍ଯ୍ୟା ରଥସ୍ୟ ବୈ ।
ସମ୍ଭାରଃ କ୍ରିୟତାଂ ତସ୍ୟ ହ୍ୟନୁଷ୍ଠେୟା ମୟା ତୁ ସା । ୧୩ ।
ଇତ୍ୟାଜ୍ଞାଂ ମତ୍ପିତୁର୍ଲବ୍ଧ୍ୱା ଶୀଘ୍ରମାୟାମ୍ୟହଂ ନୃପ । ୧୪ ।
ତସ୍ୟ ତଦ୍ ବଚନଂ ଶ୍ରୁତ୍ୱା ଘଟିତଂ ସ୍ୟନ୍ଦନତ୍ରୟମ୍ ।
ନିଧିସମ୍ପାଦିତଦ୍ରବ୍ୟୈରେକାହାଦ୍ ବିଶ୍ୱକର୍ମଣା । ୧୫ ।

---

ତାହାଙ୍କ ହସ୍ତ ତଳରେ ସର୍ବଦା ନିର୍ମଳ ଦର୍ପଣ ଅବସ୍ଥାନ କରୁଅଛି । ଏହି ଦର୍ପଣ ତଳସ୍ଥିତ ହେତୁ ଏହାର ନାମ ତାଳ, ପ୍ରଭୁ ସର୍ବଦା ଏହି ତାଳ ଚିହ୍ନରେ ଚିହ୍ନିତ । ଅତଏବ ବଳଭଦ୍ର ଅବତାର ଅନନ୍ତଦେବଙ୍କ ରଥରେ ଏହି ତାଳଧ୍ୱଜ ଯୁକ୍ତ କରିବେ କିମ୍ବା ଲାଙ୍ଗଳୀ ଦେବଙ୍କ ଧ୍ୱଜ ଲାଙ୍ଗଳ କରିବା କର୍ତ୍ତବ୍ୟ । ଏହି ଧ୍ୱଜ ନିର୍ମଳରୂପେ ସମ୍ପାଦନ କରିବେ । ଫଳତଃ ତଦପେକ୍ଷା ତାଳଧ୍ୱଜ ପ୍ରଶସ୍ତ । ୧୧ । ହେ ଭୂପତେ ! ଦେବମାନଙ୍କୁ ଅପ୍ରତିଷ୍ଠିତ ରଥରେ କଦାପି ଆରୋହଣ କରାଇବେ ନାହିଁ । ଅପ୍ରତିଷ୍ଠିତ ପ୍ରାସାଦରେ ତଥା ମଣ୍ଡପରେ ଅଥବା ପୁର ମଧ୍ୟରେ ତାଙ୍କୁ ସ୍ଥାପନ କଲେ ନିଷ୍ଫଳ ହୁଏ । ଏଥିନିମନ୍ତେ ହରିଦେବଙ୍କ ରଥ ପ୍ରତିଷ୍ଠା ସର୍ବାଦୌ କର୍ତ୍ତବ୍ୟ । ଏଣୁ ତାଙ୍କ ଦ୍ରବ୍ୟ ସମ୍ଭାର ଆୟୋଜନ କର । ମୁଁ ଏହି ପ୍ରତିଷ୍ଠା କ୍ରିୟା ସମ୍ପାଦନ କରିବି । ୧୩ । ହେ ନୃପ ! ମୁଁ ମୋର ପିତାଙ୍କର ଏହି ଆଜ୍ଞା ପାଇ ଯଥାଶୀଘ୍ର ଆସିଲି । ଶ୍ରୀନାରଦଙ୍କ ଏହି ବଚନ ଶ୍ରବଣ କରି ସ୍ୱୟଂ ବିଶ୍ୱକର୍ମା ପଦ୍ମନିଧିଙ୍କ ଦ୍ୱାରା ସମ୍ପାଦିତ ଦ୍ରବ୍ୟ ନେଇ ଏକ ଦିବସ ମଧ୍ୟରେ ରଥ ନିର୍ମାଣ କରିଦେଲେ । ୧୫ ।

ସୁସ୍ଥଂ ସୁଚକ୍ରଘଟିତଂ ସୁବିସ୍ତୀର୍ଣ୍ଣଂ ସୁତୋରଣମ୍ ।
ସୁଧ୍ୱଜଂ ସୁପତାକଞ୍ଚ ନାନାଚିତ୍ରମନୋହରମ୍ । ୧୬ ।
ବିଚିତ୍ରବନ୍ଧନିର୍ମିତପୁତ୍ତଳୀବଲୟାନ୍ୱିତମ୍ ।
ଶୁଦ୍ଧହାଟକନିର୍ବ୍ୟୂଢ଼ସାକ୍ଷାଦ୍ରବିରଥୋପମମ୍ । ୧୭ ।
ମେଘଗମ୍ଭୀରନିର୍ଘୋଷଂ ଦୃଢ଼ାକର୍ଷଗୁଣୈର୍ଯୁତମ୍ ।
ବାତରଂହୋହୟୈର୍ଯୁକ୍ତଂ ଶତସଂଖ୍ୟୈଃ ସିତପ୍ରଭୈଃ ।
ଯଥାଶାସ୍ତ୍ରବିଧାନେନ ନାରଦେନ ପ୍ରତିଷ୍ଠିତମ୍ ।
ସୁଲଗ୍ନେ ସୁମୁହୂର୍ତ୍ତେ ଚ ସୁତିଥୌ ଜ୍ୟୋତିଷୋଦିତେ । ୧୮ ।

ମୁନୟ ଊଚୁଃ

ଭଗବନ୍ ଜୈମିନେ ବ୍ରୂହି ସର୍ବଜ୍ଞୋଽସି ଯତୋ ହି ନଃ ।
ବିଧିନା କେନ ହି ରଥଃ ପ୍ରତିଷ୍ଠାପ୍ୟୋ ହରେରୟମ୍ ।
ଯଥାବଦ୍ ଗଦତୋ ଯେନ ଜାନୀମୋ ବିଧିବିସ୍ତରମ୍ । ୧୯ ।

---

ରଥମାନଙ୍କର ଚକ୍ର ସୁଗଠିତ ଏବଂ ଅବୟବ ସୁବିସ୍ତୀର୍ଣ୍ଣ । ତୋରଣଗୁଡ଼ିକ ସୁଶୋଭନ ଧ୍ୱଜ, ପତାକାରାଜି ଦ୍ୱାରା ବିରାଜିତ । ରଥର ଗାତ୍ର ବିଭିନ୍ନ ଚିତ୍ର ଦ୍ୱାରା ସଜ୍ଜିତ । ବିଚିତ୍ର ବନ୍ଧନ କୌଶଳରେ ପୁତ୍ତଳିମିଥୁନ ସମୂହ ଯୁକ୍ତ ବିଶୁଦ୍ଧ ସ୍ୱର୍ଣ୍ଣ ଶୋଭିତ ରଥଗୁଡ଼ିକ ଦେଖିଲେ ବୋଧହେବ ସାକ୍ଷାତ୍ ସୂର୍ଯ୍ୟଦେବଙ୍କ ରଥ ବିରାଜ କରୁଅଛି । ୧୭ । ରଥମାନଙ୍କର ଗମନ କାଳରେ, ମେଘ ଗର୍ଜନ ସଦୃଶ ଗମ୍ଭୀର ନିର୍ଘୋଷ ଉତ୍ଥିତ ହୁଏ । ଏହାଙ୍କର ଆକର୍ଷଣ ରଜ୍ଜୁ ଅତ୍ୟନ୍ତ ଦୃଢ଼ । ଶତସଂଖ୍ୟ ଶୁଭ୍ରବର୍ଣ୍ଣ ବାୟୁ-ବେଗଗାମୀ ଘୋଟକ ସମୂହ ତହିଁରେ ସଂଯୋଜିତ ଅଛନ୍ତି । ଋଷିବର ନାରଦ, ଜ୍ୟୋତିଷ-ଶାସ୍ତ୍ର ଅନୁଯାୟୀ ଶୁଭ ଦିନରେ ରଥମାନଙ୍କର ପ୍ରତିଷ୍ଠା କରିଥିଲେ । ୧୮ । ମୁନିଗଣ କହିଲେ— ହେ ଜୈମିନେ ! ଆପଣ ସର୍ବଜ୍ଞ, ଅତଏବ ହରିଦେବଙ୍କର ରଥ କେଉଁ ବିଧି ବିଧାନରେ ପ୍ରତିଷ୍ଠା କରିବାକୁ ହୁଏ, ତାହା ବିଶଦ ଭାବରେ ବର୍ଣ୍ଣନ କରନ୍ତୁ ।

ଜୈମିନିରୁବାଚ

ଯଥା ପ୍ରତିଷ୍ଠିତସ୍ତେନ ନାରଦେନ ମହାତ୍ମନା ।
ତଦ୍ ବୋ ବଦିଷ୍ୟାମି ଦ୍ୱିଧଂ ଯଥା ଦୃଷ୍ଟଂ ପୁରା ମୟା । ୨୦ ।
ରଥସ୍ୟେଶାନଦିଗ୍‌ଭାଗେ ଶାଳାଂ କୃତ୍ୱା ସୁନିର୍ମଳାମ୍ ।
ତନ୍ମଧ୍ୟେ ମଙ୍ଗଳଂ କୃତ୍ୱା ବେଦୀନ୍ତତ୍ର ସୁଶୋଭନାମ୍ । ୨୧ ।
ଚତୁରସ୍ରାଂ ଚତୁର୍ହସ୍ତମିତାଂ ହସ୍ତୋଚ୍ଛ୍ରିତାଂ ଦ୍ୱିଜାଃ । ୨୨ ।
ପ୍ରତିଷ୍ଠାପୂର୍ବଦିବସେ ରାତ୍ରାବୁତ୍ତରତଃ ଶୁଭେ ।
ସୁମୁହୂର୍ତ୍ତେ ସ୍ୱସ୍ତିବାଚ୍ୟଂ କାରୟେଦଙ୍କୁରାର୍ପଣମ୍ । ୨୩ ।
ରାତ୍ରୌ ଚ ଦେବତାଭ୍ୟଶ୍ଚ ବଳିଂ ଦତ୍ତ୍ୱା ଯଥାବିଧି ।
ପ୍ରାତସ୍ତତୋ ବେଦିକାୟାଂ ମଧ୍ୟେ ମଣ୍ଡଳମାଲିଖେତ୍ । ୨୪ ।
ପଦ୍ମଂ ବା ସ୍ୱସ୍ତିକଂ ବାପି କୁମ୍ଭଂ ତତ୍ର ନିଧାୟ ଚ ।
ପଞ୍ଚଦ୍ରୁମକଷାୟୈଶ୍ଚ ତନ୍ମଧ୍ୟେ ପୂରୟେତ୍ ସୁଧୀଃ । ୨୫ ।

---

ଜୈମିନି କହିଲେ, ହେ ମୁନିଗଣ ! ପୂର୍ବକାଳରେ ମହାତ୍ମା ନାରଦ ଯେଉଁ ପ୍ରକାରେ ପ୍ରତିଷ୍ଠା କରିଥିଲେ ଏବଂ ମୁଁ ଯେପରି ଦର୍ଶନ କରିଥିଲି, ତାହା ତୁମ୍ଭମାନଙ୍କୁ କହୁଅଛି । ୨୦ । ରଥର ଈଶାନ କୋଣରେ ସୁନିର୍ମଳ ଗୃହ ନିର୍ମାଣ କରିବେ ଏବଂ ତନ୍ମଧ୍ୟରେ ବେଦୀ ପ୍ରସ୍ତୁତ କରି ତହିଁରେ ମଣ୍ଡଳ କରିବେ । ଏହି ବେଦୀ ସମଚତୁରସ୍ର, ଚତୁର୍ହସ୍ତ ପରିମିତ ଆୟତ (ଦୀର୍ଘ) ଓ ଏକ ହସ୍ତ ପ୍ରମାଣ ଉଚ୍ଚ ହେବ । ପ୍ରତିଷ୍ଠାର ପୂର୍ବଦିନ ରାତ୍ରି ଶେଷ ଶୁଭ ମୁହୂର୍ତ୍ତରେ ସ୍ୱସ୍ତି (ମଙ୍ଗଳ) ବାଚନ ପୂର୍ବକ ଅଙ୍କୁରରୋପଣ କରିବେ । ୨୩ । ରାତ୍ରିରେ ଯଥା ବିଧାନ ଅନୁଯାୟୀ ଦେବତା-ମାନଙ୍କୁ ପୂଜୋପହାର ପ୍ରଦାନ ପୂର୍ବକ, ପରଦିବସ ପ୍ରାତଃକାଳରେ ଉଲ୍ଲିଖିତ ବେଦୀ ମଧ୍ୟରେ ସର୍ବତୋଭଦ୍ର ମଣ୍ଡଳ ଅଥବା ତନ୍ମଧ୍ୟରେ ପଦ୍ମ ନିର୍ମାଣ କରିବା ତଣ୍ଡୁଳ ସ୍ଥାପନ କରି ତହିଁରେ ପୂର୍ଣ୍ଣକୁମ୍ଭ ସ୍ଥାପନ ପୂର୍ବକ ପଞ୍ଚକଷାୟ ଓ ଗଙ୍ଗାଦି ପୁଣ୍ୟ ତୀର୍ଥୋଦକ ଦ୍ୱାରା ଏହି କୁମ୍ଭ ପୂର୍ଣ୍ଣ କରିବେ । ଅନନ୍ତର ପଞ୍ଚ-

ଗଙ୍ଗାଦିପୁଣ୍ୟତୋୟାନି ପଲ୍ଲବାଃ ସପ୍ତମୃତ୍ତିକାଃ ।
ସର୍ବଗନ୍ଧାନ୍ ପଞ୍ଚରତ୍ନଂ ସର୍ବୌଷଧିଗଣାଂସ୍ତଥା ।

ଆପୂରୟିତ୍ୱା ବିଧିନା ଗୁରୁର୍ଯଃ ପ୍ରାଙ୍ମୁଖଃ ଶୁଚିଃ ।
ବିଷ୍ଣୁଂ ସ୍ମରନ୍ ପଞ୍ଚଗବ୍ୟଂ ପଶ୍ଚାଦପି ପ୍ରପୂରୟେତ୍ । ୨୬ ।

ଦୁକୂଲବେଷ୍ଟିତଂ କଣ୍ଠେ ମାଲ୍ୟୈର୍ଗନ୍ଧୈଃ ସୁଶୋଭନମ୍ ।
ଫଲପଲ୍ଲବସଂଯୁକ୍ତଂ କୃତକୌତୁକମଙ୍ଗଳମ୍ । ୨୭ ।

ପୂଜୟେତ୍ତତ୍ର ଦେବେଶଂ ନରସିଂହମନାମୟମ୍ ।
ମନ୍ତ୍ରରାଜେନ ବିଧିବଦୁପଚାରୈସ୍ତଥା ଦ୍ୱିଜାଃ । ୨୮ ।

ପ୍ରାର୍ଥୟିତ୍ୱା ପ୍ରସାଦାୟ ତସ୍ମିନ୍ନାବାହ୍ୟ ତଂ ହରିମ୍ ।
ବାହ୍ୟୋପଚାରୈର୍ବିଧିବତ୍ ପୂଜୟେଦ୍ ବିଧିବଦ୍ଦ୍ୱିଜାଃ । ୨୯ ।

ବାୟବ୍ୟାଂ ତସ୍ୟ କୁମ୍ଭସ୍ୟ ସମିଦାଜ୍ୟଚରୂଂସ୍ତଥା ।
ଅଷ୍ଟୋତ୍ତରସହସ୍ରନ୍ତୁ ଜୁହୁୟାଦ୍ ବିଧିବଦ୍ ଗୁରୁଃ । ୩୦ ।

---

ପଲ୍ଲବ, ସପ୍ତମୃତ୍ତିକା, ସମସ୍ତ ଗନ୍ଧଦ୍ରବ୍ୟ, ପଞ୍ଚରତ୍ନ ଓ ସର୍ବୌଷଧି ଦ୍ୱାରା ଏହା ପୂର୍ଣ୍ଣ କରିବେ । ତତ୍ପରେ ଆଚାର୍ଯ୍ୟ ବିଷ୍ଣୁଙ୍କୁ ସ୍ମରଣ କରି ଶୁଚି ହୋଇ ପଞ୍ଚଗବ୍ୟରେ ପୂର୍ଣ୍ଣ କରି ଏହି କୁମ୍ଭର ଗଳ ଦେଶରେ ବସ୍ତ୍ର ବେଷ୍ଟନ ପୂର୍ବକ ତଦୁପରି ଫଳ ସ୍ଥାପନ ଓ ଗନ୍ଧ ମାଲ୍ୟାଦି ଦ୍ୱାରା ଏହାକୁ ସୁଶୋଭିତ କରିବେ । ପରିଶେଷରେ ଉତ୍ସବ ସହିତ ଏହାର ମଙ୍ଗଳାଚରଣ କରିବେ । ୨୬ । ହେ ଦ୍ୱିଜଗଣ ! ଅନାମୟ ଦେବଦେବ ନରସିଂହ ଦେବଙ୍କୁ ପ୍ରଧାନ ମନ୍ତ୍ରଦ୍ୱାରା ବହୁବିଧ ଉପଚାର ସହିତ ଯଥାବିଧି ପୂଜା କରିବେ । ପ୍ରଥମତଃ ପ୍ରସନ୍ନତା ପ୍ରାର୍ଥନା କରି, ତହିଁରେ ଆବାହନ ତଦନନ୍ତର ମାନସ ଓ ବାହ୍ୟ ଉପଚାର ଯୋଗେ କରିବେ । ୨୯ । ପରିଶେଷରେ କୁମ୍ଭର ବାୟୁ କୋଣରେ ସମିଧ, ଆଜ୍ୟ ଓ ଚରୁଦ୍ୱାରା ହୋତା ବିଧିବତ୍ ଅଷ୍ଟୋତ୍ତର ସହସ୍ର ହୋମ କରିବେ । ୩୦ ।

ସମ୍ପାତାନ୍ ପାତୟେତ୍ତତ୍ର କୁମ୍ଭମଧ୍ୟେ ବଦାନ୍ୟତଃ ।
ରଥଂ ସୁଶୋଭନଂ କୃତ୍ୱା ପତାକାବସ୍ତ୍ରମାଲ୍ୟକୈଃ । ୩୧ ।

ସର୍ବାଙ୍ଗଂ ସେଚୟେତ୍ତସ୍ୟ ଗନ୍ଧଚନ୍ଦନବାରିଣା ।
ଧୂପୟେତ୍ତୁ କାଳାଗୁରୁଣା ଶଙ୍ଖକାହଳନିସ୍ୱନୈଃ । ୩୨ ।
ଧ୍ୱଜଂ ତସ୍ୟ ନୃସିଂହସ୍ୟ ପ୍ରତିଷ୍ଠାପ୍ୟ ସମୀରଣମ୍ ।

ପୂଜୟିତ୍ୱା ବିଧାନେନ ରକ୍ତସ୍ରଗ୍ଗନ୍ଧମାଲ୍ୟକୈଃ ।
ଇମଂ ମନ୍ତ୍ରଂ ସମୁଚ୍ଚାର୍ଯ୍ୟ ସୁପର୍ଣ୍ଣଂ ପ୍ରାର୍ଥୟେତ୍ତତଃ । ୩୩ ।

ଯୋ ବିଶ୍ୱପ୍ରାଣହେତୁସ୍ତନୁରପି ଚ ହରେର୍ଯାନକେତୁସ୍ୱରୂପୋ ।
ଯଂ ସଂସ୍ମୃତ୍ୟୈବ ସଦ୍ୟଃ ସ୍ୱୟମୁରଗବଧୂବର୍ଗଗର୍ଭାଃ ପତନ୍ତି ।

ଚଞ୍ଚଚ୍ଚଣ୍ଡୋରୁତୁଣ୍ଡତ୍ରୁଟିତଫଣିବସାରକ୍ତମାଂସାଙ୍କିତାସ୍ୟଂ
ବନ୍ଦେ ଛନ୍ଦୋମୟନ୍ତଂ ଖଗପତିମମଳଂ ସ୍ୱର୍ଣ୍ଣବର୍ଣ୍ଣଂ ସୁପର୍ଣ୍ଣମ୍ । ୩୪ ।

---

ତଦନନ୍ତର କୁମ୍ଭ ମଧ୍ୟରେ ସମ୍ପାତ ପାତ କରି ପତାକା, ବସ୍ତ୍ର ଏବଂ ମାଲ୍ୟଦ୍ୱାରା ରଥକୁ ସୁସଜ୍ଜିତ କରିବେ ତଥା ଗନ୍ଧ ଚନ୍ଦନ ଜଳଦ୍ୱାରା ରଥର ସର୍ବାଙ୍ଗ ସେଚନ କରିବେ । ଶଙ୍ଖ ଓ କାହାଳ ବାଦ୍ୟ ଯୋଗରେ କାଳାଗୁରୁ ଧୂପଦ୍ୱାରା ଧୂପିତ କରିବେ । ଅନନ୍ତର ନୃସିଂହଦେବଙ୍କ ସଦାଗ୍ରଗମନଶୀଳ ଧ୍ୱଜ ପ୍ରତିଷ୍ଠା କରି ରକ୍ତବର୍ଣ୍ଣ ମାଲ୍ୟ ଓ ଗନ୍ଧ ମାଲ୍ୟଦ୍ୱାରା ପୂଜା ପୂର୍ବକ ଏହି ମନ୍ତ୍ର ଉଚ୍ଚାରଣ କରି ସୁପର୍ଣ୍ଣଙ୍କ ନିକଟ ପ୍ରାର୍ଥନା କରିବେ । ୩୩ । ଯେ ଏହି ବିଶ୍ୱସଂସାର ପ୍ରାଣର ହେତୁ, ଯେ ହରିଦେବଙ୍କର ଅଙ୍ଗ ସ୍ୱରୂପ ଓ ତାଙ୍କର ରଥର କେତୁ ରୂପରେ ବିରାଜ କରିଅଛନ୍ତି, ଯାହାଙ୍କୁ ମନରେ ଏକବାର ଚିନ୍ତା କଲେ ତତ୍କ୍ଷଣାତ୍ ଉରଗ ବଧୂମାନଙ୍କର ଗର୍ଭ ସକଳ ସ୍ୱତଃ ପତିତ ହୋଇଯାଏ, ଯାହାଙ୍କର ମୁଖମଣ୍ଡଳ ଚଞ୍ଚଳ ଓ ପ୍ରଚଣ୍ଡ, ତୁଣ୍ଡ ଖଣ୍ଡିତ ସର୍ପ ସମୂହର ବସା, ରକ୍ତ ଓ ମାଂସଦ୍ୱାରା ସର୍ବଦା ରଞ୍ଜିତ; ମୁଁ ସେହି ଛନ୍ଦୋମୟ ସୁବର୍ଣ୍ଣ ସୁପର୍ଣ୍ଣ ଖଗପତିଙ୍କୁ ବନ୍ଦନା କରୁଅଛି । ୩୪ ।

ବ୍ରହ୍ମଘୋଷୈଃ ଶଙ୍ଖନାଦୈର୍ନାନାବାଦ୍ୟସୁବିସ୍ତରୈଃ ।
ରଥମୂର୍ଦ୍ଧ୍ନି ସ୍ଥାପୟେତ୍ତଂ ପୌରୁଷଂ ସୂକ୍ତମୁଚ୍ଚରନ୍ । ୩୫ ।

ତସ୍ୟୋପରିଷ୍ଟାତ୍ତଂ କୁମ୍ଭଂ ସମନ୍ତାତ୍ ପ୍ଲାବୟେତ ରଥମ୍ ।
ତ୍ରିରୁଚ୍ଚରନ୍ମୂଳମନ୍ତ୍ରଂ ସେଚୟେଦ୍ ବ୍ରହ୍ମଣା ସହ । ୩୬ ।

ତତଃ ପୂର୍ଣ୍ଣାହୁତିଂ ଦତ୍ତ୍ୱା ବ୍ରହ୍ମଣେ ଦକ୍ଷିଣାଂ ଦଦେତ୍ ।
ଆଗ୍ରହୈର୍ଯ୍ୟା ଦକ୍ଷିଣାଂ ଦଦ୍ୟାଦ୍ ଯେନ ତୁଷ୍ୟେତ ବା ଗୁରୁଃ । ୩୭ ।

ବ୍ରାହ୍ମଣାନ୍ ଭୋଜୟେଦନ୍ତେ ପାୟସଂ ମଧୁସର୍ପିଷା । ୩୮ ।

ଦ୍ୱାଦଶାକ୍ଷରମନ୍ତ୍ରେଣ ବଳଭଦ୍ରସ୍ୟ କାରୟେତ୍ତୁ ।
ଲାଙ୍ଗଳଂ ପରମାରଂ ତନ୍ମନ୍ତ୍ରଃ ସ୍ୟାଲ୍ଲାଙ୍ଗଳଧ୍ୱଜେ ।
ବଳଂ ପ୍ରପୂଜୟେତ୍ତତ୍ର ମୂଳମନ୍ତ୍ରଃ ପ୍ରକୀର୍ତ୍ତିତଃ । ୩୯ ।

---

ଏହାପରେ ପ୍ରାର୍ଥନା ପରେ ବେଦଧ୍ୱନି, ଶଙ୍ଖନାଦ ଏବଂ ବିବିଧ ବାଦ୍ୟନାଦ କରି ପୁରୁଷସୂକ୍ତ ମନ୍ତ୍ରରେ ଗରୁଡ଼ ଧ୍ୱଜକୁ ରଥର ଉପରି ଭାଗରେ ସ୍ଥାପନ କରିବେ । ପୂର୍ବସ୍ଥାପିତ ସେହି କୁମ୍ଭଜଳ ଦ୍ୱାରା ବ୍ରହ୍ମାଙ୍କ ସହିତ ପ୍ରଧାନ ବିଷ୍ଣୁମନ୍ତ୍ର ତିନିବାର ଉଚ୍ଚାରଣ ପୂର୍ବକ ଏହି ରଥର ଉପରୁ ଚତୁର୍ଦ୍ଦିଗ ସେହି କୁମ୍ଭଜଳରେ ପ୍ଲାବିତ କରିବେ । ଏହାର ପରେ ପୂର୍ଣ୍ଣାହୁତି ଶେଷ କରି ବ୍ରହ୍ମାଙ୍କୁ ଦକ୍ଷିଣା ଦାନ କରିବେ । ଆଗ୍ରହୀ ଯହିଁରେ ସନ୍ତୁଷ୍ଟ ହେବେ, ସେହିପରି ଦକ୍ଷିଣା ଦେବେ । ୩୭ । ପରିଶେଷରେ ବ୍ରାହ୍ମଣ-ମାନଙ୍କୁ ମଧୁଘୃତ ମିଶ୍ରିତ ପାୟସ ଭୋଜନ କରାଇବେ । ଏହାପରେ ଦ୍ୱାଦଶାକ୍ଷର ମନ୍ତ୍ରରେ ବଳଦେବଙ୍କ ରଥ ପ୍ରତିଷ୍ଠା କରିବେ । ତହିଁପୂ ଲାଙ୍ଗଳ ଧ୍ୱଜକୁ 'ଲାଙ୍ଗଳଂ ତତ୍' ଇତ୍ୟାଦି ମନ୍ତ୍ରରେ ପୂଜନ କରିବେ ଏବଂ ତହିଁରେ ମୂଳ ମନ୍ତ୍ରଦ୍ୱାରା ବଳଦେବଙ୍କୁ ଅର୍ଚ୍ଚନା କରିବେ । ୩୯ ।

ଲକ୍ଷ୍ମୀସୂକ୍ତେନ ଭଦ୍ରାୟାଃ ପ୍ରତିଷ୍ଠାପ୍ୟୋ ରଥସ୍ତୁ ସଃ ।
ନାଭିହ୍ରଦାନ୍ମୁରରିପୋର୍ୟ୍ୟଂ ବ୍ରହ୍ମାଣ୍ଡାଦ୍ ବଳରୂପଧୃକ୍ ।
ଆସନଞ୍ଚତୁରାସ୍ୟସ୍ୟ ଶ୍ରିୟୋବାସେ ସ୍ଥିତୋ ।୩୯।
ଇତି ମନ୍ତ୍ରଂ ସମୁଚ୍ଚାର୍ଯ୍ୟ ଧ୍ୱଜପଦ୍ମଂ ସମୁଚ୍ଛ୍ରୟେତ୍ ।୪୦।
ଇୟାନ୍ ବିଶେଷୋଽତ୍ର ହରେସ୍ତସ୍ମାଣାନ୍ତୁ ପୃଥକ୍ ପୃଥକ୍ ।
ପଞ୍ଚଭିଃ ପଞ୍ଚହୋତବ୍ୟମେକୈକନ୍ତୁ ବିଭାଗଶଃ ।୪୧।
ଏବଂ ରଥାନ୍ ପ୍ରତିଷ୍ଠାପ୍ୟ ସୁବର୍ଣ୍ଣଂ ଗାଞ୍ଚ ବସ୍ତ୍ରକମ୍ ।
ଧାନ୍ୟଞ୍ଚ ଦକ୍ଷିଣାଂ ଦଦ୍ୟାତ୍ ସମ୍ୟଗ୍ ଦେବସ୍ୟ ଭକ୍ତିତଃ ।୪୨।
ଏବଂ ପ୍ରତିଷ୍ଠିତେ ତତ୍ର ସ୍ୟନ୍ଦନେଽଥ ସୁଭୂଷିତେ ।
ଆରୋପ୍ୟ ଦେବଂ ବିଧିବଦ୍ ବ୍ରହ୍ମଘୋଷ ପୁରଃସରମ୍ ।୪୩।
ଜୟମଙ୍ଗଳଘୋଷୈଶ୍ଚ ନାନାବାଦ୍ୟପୁରଃସରୈଃ ।
ଚାମରାନ୍ଦୋଳନୈର୍ଧୂପୈଃ ପୁଷ୍ପବୃଷ୍ଟିଭିରେବ ଚ ।୪୪।

---

ସୁଭଦ୍ରାଙ୍କ ରଥକୁ ଲକ୍ଷ୍ମୀସୂକ୍ତ ମନ୍ତ୍ରରେ ପ୍ରତିଷ୍ଠା କରିବେ । ତୁମ୍ଭେ ମୁରରିପୁ ବିଷ୍ଣୁଙ୍କର ବ୍ରହ୍ମାଣ୍ଡ ରୂପ ନାଭି ହ୍ରଦରୁ ଉତ୍ପନ୍ନ ହୋଇ ରୂପ, ବଳ ଧାରଣ ପୂର୍ବକ ଚତୁରାନନଙ୍କ ଆସନ ହୋଇଅଛ । ବର୍ତ୍ତମାନ ସେହି ବିଷ୍ଣୁପ୍ରିୟା ଲକ୍ଷ୍ମୀଙ୍କର ବାସସ୍ଥାନରେ ସ୍ଥିତ ହୁଅ- ଏହି ମନ୍ତ୍ର ଉଚ୍ଚାରଣ କରି ପଦ୍ମଧ୍ୱଜ ସ୍ଥାପନ କରିବେ ।୪୦। ହରିଦେବଙ୍କର ଉକ୍ତ ବିଷୟରେ ଏତିକିମାତ୍ର ବିଶେଷ ଯେ, ମୂର୍ତ୍ତି ତ୍ରୟର ହୋମନିମିତ୍ତ ଏକ ଏକ ପୃଥକ୍ ପୃଥକ୍ ବିଭାଗ କ୍ରମରେ ପାଞ୍ଚ ପାଞ୍ଚ ଆହୁତି ଦ୍ୱାରା ସଂପନ୍ନ କରିବେ । ଏହି ପ୍ରକାରେ ରଥ ପ୍ରତିଷ୍ଠା କରି ସୁବର୍ଣ୍ଣ, ଗୋ ତଥା ବସ୍ତ୍ର ସକଳ ଏବଂ ଧାନ୍ୟ ଦକ୍ଷିଣା ସ୍ୱରୂପ ଦେବଙ୍କ ପ୍ରତି ସଂପୂର୍ଣ୍ଣ ଭକ୍ତି ରଖି ପ୍ରଦାନ କରିବେ ।୪୨। ସେହି ରଥ ପ୍ରତିଷ୍ଠିତ ସୁଭୂଷିତ ହେବା ପରେ ତହିଁରେ ଦେବଙ୍କୁ ଆରୋପଣ କରିବେ (ବସାଇବେ) । ସେହି ସମୟରେ ବେଦଧ୍ୱନି, ଜୟଧ୍ୱନି, ମଙ୍ଗଳଧ୍ୱନି ଓ ବିବିଧ ବାଦ୍ୟ ବାଦନ କରିବେ ଏବଂ ଚାମର ବୀଜନ, ଧୂପ ଧୂପନ ଓ

ବ୍ରାହ୍ମଣୈଃ କ୍ଷତ୍ରିୟୈର୍ବୈଶ୍ୟୈର୍ନୀୟତେ ସ୍ମ ରଥଂ ପ୍ରତି ।
ହୟୈଃ ସୁଲକ୍ଷଣୈର୍ଦାନ୍ତୈର୍ବଲୀବର୍ଦୈରଥାପି ବା ।
ପୁରୁଷୈର୍ବିଷ୍ଣୁଭକ୍ତୈର୍ବା ନେତବ୍ୟା ବିପ୍ରଦାନତଃ ।୪୫।
ପ୍ରୀଣୟିତ୍ୱା ଜନଂ ସର୍ବଂ ଭକ୍ଷ୍ୟଭୋଜ୍ୟାନୁଲେପନୈଃ ।
ରଥସ୍ୟୋପରି ଦେବସ୍ୟ ବଳିମନ୍ତ୍ରେଣ ବୈ ଦ୍ୱିଜାଃ ।୪୬।
ବଳିଂ ଗୃହ୍ଣନ୍ତୁ ମେ ଦେବା ଆଦିତ୍ୟା ବସବସ୍ତଥା ।
ମରୁତଶ୍ଚାଶ୍ୱିନୌ ରୁଦ୍ରାଃ ସୁପର୍ଣ୍ଣାଃ ପନ୍ନଗା ଗ୍ରହାଃ ।
ଅସୁରା ଯାତୁଧାନାଶ୍ଚ ରଥସ୍ଥାଶ୍ଚୈବ ଦେବତାଃ ।
ଦିକ୍ପାଲା ଲୋକପାଲାଶ୍ଚ ଯେ ଚ ବିଘ୍ନବିନାୟକାଃ ।
ଜଗତଃ ସ୍ୱସ୍ତି କୁର୍ବନ୍ତୁ ଦିବ୍ୟା ମହର୍ଷୟସ୍ତଥା ।
ଅବିଘ୍ନମାଚରନ୍ତ୍ୱେତେ ମା ସନ୍ତୁ ପରିପନ୍ଥିନଃ ।
ସୌମ୍ୟା ଭବନ୍ତୁ ତୃପ୍ତାଶ୍ଚ ଦୈତ୍ୟାଭୂତଗଣାସ୍ତଥା ।୪୭।

---

ପୁଷ୍ପବର୍ଷଣ ସହକାରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଗଣ, ରଥ ଉପରକୁ ଦେବତାମାନଙ୍କୁ ଆନୟନ କରିବେ । ବ୍ରାହ୍ମଣମାନଙ୍କୁ ଧନ ଦାନ କରି ସୁଲକ୍ଷଣାକ୍ରାନ୍ତ ଘୋଟକ ଅଥବା ଶାନ୍ତଶୀଳ ବଳୀବର୍ଦ୍ଦମାନଙ୍କୁ ଯୋଜନା କରି କିମ୍ବା ବିଷ୍ଣୁଭକ୍ତ ପୁରୁଷମାନେ ସ୍ୱୟଂ ଏହି ରଥ ଚାଳନା କରିବେ ।୪୫। ସୁସ୍ୱାଦୁ ଭକ୍ଷ୍ୟ, ଭୋଜ୍ୟ ଓ ସୁଗନ୍ଧି ବିଲେପନ ଦ୍ୱାରା ଭକ୍ତଜନମାନଙ୍କୁ ପ୍ରୀତ କରିବେ । ରଥର ଉପରି ଭାଗରେ ବଳି ମନ୍ତ୍ର ଦ୍ୱାରା ଦେବଗଣଙ୍କୁ ଏହି ପ୍ରକାରେ ବଳି (ପୂଜୋପହାର) ପ୍ରଦାନ କରିବେ ।୪୬। ହେ ଦେବଗଣ ! ଆମ୍ଭ ପ୍ରଦତ୍ତ ବଳି ଆପଣମାନେ ଗ୍ରହଣ କରନ୍ତୁ । ହେ ଆଦିତ୍ୟଗଣ ! ବସୁଗଣ ! ମରୁଦ୍ଗଣ ! ହେ ଅଶ୍ୱିନୀକୁମାରଦ୍ୱୟ ! ହେ ରୁଦ୍ରଗଣ ! ସୁପର୍ଣ୍ଣ ପନ୍ନଗ ଓ ଗ୍ରହ-ସମୂହ ! ହେ ଅସୁରବର୍ଗ ! ହେ ଯାତୁଧାନ ନିଚୟ ! ହେ ରଥସ୍ଥିତ ଦେବତା ସମୂହ ! ହେ ଦିଗପାଳ ! ହେ ଲୋକପାଳ ସକଳ ! ହେ ବିଘ୍ନ ବିନାୟକ ଗଣ ! ହେ ଦେବର୍ଷି ମହର୍ଷି ଗଣ ! ଆପଣମାନେ ଜଗତର ମଙ୍ଗଳ ବିଧାନ କରନ୍ତୁ ।

ତତସ୍ତୁ ମାସ୍ତଳେ ଦେବାଃ ସମଭୂମୌ ସମୁଚ୍ଚରନ୍ ।
ମନ୍ତ୍ରଂ ବୈଷ୍ଣବଗାୟତ୍ରୀଂ ବିଷ୍ଣୋଃ ସୂକ୍ତଂ ପବିତ୍ରକମ୍ ।୪୮।
ବାମଦେବୈଃ ପବିତ୍ରୈଶ୍ଚ ମାନସ୍ତେ ଦ୍ୟା ରଥାନ୍ତରୈଃ ।
ତତଃ ପୁଣ୍ୟାହଶବ୍ଦେନ କୃତ୍ୱା ବାଦିତ୍ରନିସ୍ୱନମ୍ ।
ଶନୈଃ ଶନୈ ରଥାସ୍ତନ୍ତ ରଥାଃ ସେନ୍ଦ୍ରାକ୍ତଚକ୍ରିଣଃ ।୪୯।
ଅତୋତ୍ପାତାନ୍ ପ୍ରବକ୍ଷ୍ୟାମି ରଥେଷୁ ଦ୍ୱିଜସତ୍ତମାଃ ।
ଈଷାଭଙ୍ଗେ ଦ୍ୱିଜଭୟଂ ଭଗ୍ନେଽକ୍ଷେ କ୍ଷତ୍ରିୟକ୍ଷୟମ୍ ।
ତୁଳାଭଙ୍ଗେ ବୈଶ୍ୟନାଶଃ ଶମ୍ୟାଃ ଶୂଦ୍ରଭୟଂ ଭବେତ୍ ।୫୦।
ଧ୍ୱଜଭଙ୍ଗେ ତ୍ୱନାବୃଷ୍ଟିଃ ପୀଠଭଙ୍ଗେ ପ୍ରଜାଭୟମ୍ ।
ପରଚକ୍ରାଗମଂ ବିଦ୍ୟାଚ୍ଛତ୍ରଭଙ୍ଗେ ରଥସ୍ୟ ତୁ ।୫୧।

---

ଆପଣମାନେ ଏ ବିଷୟରେ ବିଘ୍ନ କରନ୍ତୁ ନାହିଁ ।ଆପଣମାନେ ଏହି କାର୍ଯ୍ୟରେ ପ୍ରତିକୂଳ ହେବେ ନାହିଁ । ହେ ଦେବଗଣ ! ହେ ଦୈତ୍ୟଗଣ ! ହେ ଭୂତଗଣ ! ଆମ୍ଭ ପ୍ରଦତ୍ତ ବଳି ଭୋଜନରେ ଆପଣମାନେ ପରିତୃପ୍ତ ହୋଇ ସୌମ୍ୟଭାବ ଧାରଣ କରନ୍ତୁ ।୪୭। ଅନନ୍ତର ବୈଷ୍ଣବୀ ଗାୟତ୍ରୀ ଓ ପରମ ପବିତ୍ର ବିଷ୍ଣୁ ସୂକ୍ତ ମନ୍ତ୍ର ଉଚ୍ଚାରଣ କରି କରି ଦେବଗଣଙ୍କୁ ସମତଳ କ୍ଷେତ୍ରରେ ରଥ ଆକର୍ଷଣ ପୂର୍ବକ ଆନୟନ କରିବେ । ସେହି କାଳରେ ସୁପବିତ୍ର ବାମଦେବାଦି ମନ୍ତ୍ର ଉଚ୍ଚାରଣ ଓ ପୁଣ୍ୟାହ ଶବ୍ଦ ଏବଂ ବହୁବିଧ ବୈଧବାଦ୍ୟ ଧ୍ୱନି ପୂର୍ବକ, ସେନ୍ଦ୍ରାକ୍ତ ରଥ ଚକ୍ରଗୁଡ଼ିକୁ ମୃଦୁ ମୃଦୁ ଗୃଳନା କରିବେ ।୪୯। ହେ ଦ୍ୱିଜ-ସତ୍ତମଗଣ ! ଏହି ସମୟରେ ରଥୋପରି ଯେଉଁ ଯେଉଁ ସକଳ ଉତ୍ପାତ ଘଟିବାର ସମ୍ଭାବନା, ତାହା ବର୍ଣ୍ଣନ କରୁଛି । ଯଦି ରଥର ଈଷା ଭଗ୍ନ ହେବ, ତେବେ ବ୍ରାହ୍ମଣ କୁଳର ଭୟ ଜନ୍ମେ । ଯଦି ତାହାର ଅକ୍ଷ ଭଗ୍ନ ହୁଏ ତହିଁରେ କ୍ଷତ୍ରିୟ କ୍ଷୟ ହୋଇପାରେ । ରଥର ଯଦି ତୁଳା ଭଗ୍ନ ହେବ ବୈଶ୍ୟ ବିନାଶ ହେବେ । ଶମୀ ଭଙ୍ଗ ହେଲେ ଶୂଦ୍ରର ଭୟ ଜନ୍ମେ ।୫୦। ରଥର ଧ୍ୱଜ ଭଗ୍ନରେ ଅନାବୃଷ୍ଟି, ପୀଠ ଭଙ୍ଗରେ ପ୍ରଜାଭୟ, ଚକ୍ର

ଧ୍ୱଜସ୍ୟ ପତନେନ ବିପ୍ରା ନୃପୋଽନ୍ୟୋ ଜାୟତେ ଧ୍ରୁବମ୍ ।
ପ୍ରତିମାବ୍ୟଙ୍ଗତାୟାନ୍ତୁ ରାଜ୍ଞୋ ମରଣମାଦିଶେତ୍ ।
ପର୍ଯ୍ୟସ୍ତେ ତୁ ରଥେ ବିପ୍ରାଃ ସର୍ବଜାନପଦକ୍ଷୟଃ ।୫୨।
ଉତ୍ପନ୍ନେଷ୍ୱେବମାଦ୍ୟେଷୁ ଉତ୍ପାତେଷ୍ୱଶୁଭେଷୁ ଚ ।
ବଳିକର୍ମ ପୁନଃ କୁର୍ଯ୍ୟାଚ୍ଛାନ୍ତିହୋମକ୍ରିୟୈବ ଚ ।୫୩।
ବ୍ରାହ୍ମଣାନ୍ ଭୋଜୟେଦ୍ ଭୂୟୋ ଦଦ୍ୟାଦ୍ଧନାନି ଚୈବ ହି ।୫୪।
ପୂର୍ବୋତ୍ତରେ ତୁ ଦିଗ୍‌ଭାଗେ ରଥସ୍ୟାଗ୍ନିଂ ପ୍ରକଳ୍ପୟେତ୍ ।
ସମିଦ୍ଭିର୍ଘୃତମଧ୍ୱାକ୍ତୈର୍ମୂଲାଗ୍ରାଦିଷ୍ଟ ହୋମୟେତ୍ ।
ପାଲାଶୀଭିର୍ଦ୍ୱିଜଶ୍ରେଷ୍ଠା ମନ୍ତ୍ରରାଜେନ ଦୀକ୍ଷିତଃ ।୫୫।
ସୋମାୟାଗ୍ନୟେ ପ୍ରଜାଭ୍ୟଃ ପ୍ରଜାନାଂ ପତୟେ ତଥା ।
ଗ୍ରହେଭ୍ୟଶ୍ଚ ବ୍ରହ୍ମଣେ ଚ ଦିକ୍‌ପାଲେଭ୍ୟସ୍ତଦନନ୍ତରଃ ।
ଯତ୍ର ଯତ୍ର ରଥେ ଦୋଷସ୍ତତ୍ର ତତ୍ର ଚ ଦୀକ୍ଷିତଃ ।
ଜୁହୁୟାତ୍ ପ୍ରଥମନ୍ତ୍ରେଣ ବିଶେଷଃ ସର୍ବତୋ ଭବେତ୍ ।୫୬।

---

ଭଙ୍ଗରେ ଚରଚକ୍ର ଗତି ପ୍ରଭୃତି ଭୟ ଜନ୍ମେ । ଯଦି ରଥର ଧ୍ୱଜ ପତନ ହୁଏ, ତେବେ ରାଜାର ରାଜ୍ୟ ଅନ୍ୟଦ୍ୱାରା ଅଧିକୃତ ହେବ । ଯଦ୍ୟପି ପ୍ରତିମାମାନଙ୍କର କୌଣସି ପ୍ରକାର ଅଙ୍ଗ ଭଙ୍ଗ ଘଟଣା ଘଟେ ତେବେ ରାଜାର ମୃତ୍ୟୁ ହୁଏ । ହେ ବିପ୍ରଗଣ ! ଯଦି ରଥ ବିନଷ୍ଟ ହୋଇଯାଏ, ଫଳରେ ସମସ୍ତ ଜନପଦ ଉଚ୍ଛନ୍ନ ହୋଇଯାଏ ହେ ନୃପ ! ଏହି ପ୍ରକାରେ ଅଶୁଭ ଉତ୍‌ପାତ ଉତ୍ପନ୍ନ ହେଲେ ପୁନରାୟ ବଳିକର୍ମ, ଶାନ୍ତି ଓ ହୋମ କରିବେ ଏବଂ ପୁନର୍ବାର ବ୍ରାହ୍ମଣ ଭୋଜନ ତଥା ଧନ-ଦାନ କାର୍ଯ୍ୟ ସମାହିତ କରିବେ ।୫୩। ଦୀକ୍ଷିତ ବ୍ୟକ୍ତି ରଥର ପୂର୍ବ-ଉତ୍ତର ଦିଗରେ ଅଗ୍ନି ସ୍ଥାପନ କରି ଘୃତ ମଧୁଯୁକ୍ତ ପଲାସ ସମିଧ (କାଷ୍ଠ) ମୂଳ ଓ ଅଗ୍ରଭାଗଦ୍ୱାରା ପ୍ରଧାନ ବୈଷ୍ଣବ ମନ୍ତ୍ରରେ ହୋମ କରିବେ । ସୋମ, ଅଗ୍ନି, ପ୍ରଜାଗଣ, ପ୍ରଜାପତି ଗ୍ରହଗଣ, ବ୍ରହ୍ମା ଓ ଦିଗପାଳମାନଙ୍କୁ ଉଦ୍ଦେଶ୍ୟ ପୂର୍ବକ ଯେଉଁ ଯେଉଁ ସ୍ଥାନରେ ରଥର ଦୋଷ ଘଟିବ, ସେହି ସ୍ଥଳରେ ଦୀକ୍ଷିତ ବ୍ୟକ୍ତି ପ୍ରତ୍ୟେକ ଦେବତାଙ୍କର ମନ୍ତ୍ର ଉଚ୍ଚାରଣ କରି ହୋମ କରିବେ । ଉଲ୍ଲିଖିତ ସମସ୍ତ ଦେବତାଙ୍କର ହିଁ ହୋମ ସର୍ବସ୍ୱ କର୍ତ୍ତବ୍ୟ ।୬୫।

ବ୍ରାହ୍ମଣୈଃ ସହିତଃ କୁର୍ଯ୍ୟାତ୍ ହୋମାନ୍ତେ ଶାନ୍ତିବାଚନମ୍ । ୫୭ ।
ସ୍ୱସ୍ତି ଭବତୁ ବିପ୍ରେଭ୍ୟଃ ସ୍ୱସ୍ତି ରାଜ୍ଞେଽସ୍ତୁ ନିତ୍ୟଶଃ ।
ଗୋଭ୍ୟଃ ସ୍ୱସ୍ତି ପ୍ରଜାଭ୍ୟସ୍ତୁ ଜଗତଃ ଶାନ୍ତିରସ୍ତୁ ବୈ । ୫୮ ।
ସ୍ୱସ୍ତ୍ୟସ୍ତୁ ଦ୍ୱିପଦେ ନିତ୍ୟଂ ଶାନ୍ତିରସ୍ତୁ ଚତୁଷ୍ପଦେ ।
ଶଂ ପ୍ରଜାଭ୍ୟସ୍ତଥୈବାସ୍ତୁ ଶଂ ତଥାତ୍ମନି ଚାସ୍ତୁ ନଃ । ୫୯ ।
ଶାନ୍ତିରସ୍ତୁ ଚ ଦେବସ୍ୟ ଭୂର୍ଭୁବଃ ସ୍ୱଃ ଶିବଂ ତଥା ।
ଶାନ୍ତିରସ୍ତୁ ଶିବଞ୍ଚାସ୍ତୁ ସର୍ବତଃ ସ୍ୱସ୍ତିରସ୍ତୁ ନଃ । ୬୦ ।
ତ୍ୱଂ ଦେବ ଜଗତଃ ସ୍ରଷ୍ଟା ପୋଷ୍ଟା ଚୈବ ତ୍ୱମେବ ହି ।
ପ୍ରଜାଃ ପାଳୟ ଦେବେଶ ଶାନ୍ତିଂ କୁରୁ ଜଗତ୍ପତେ । ୬୧ ।
ଯାତ୍ରାକାରଣଭୂତସ୍ୟ ପୁରୁଷସ୍ୟ ଚ ଭୂପତେଃ ।
ଦୃଷ୍ଟାନ୍ ଗ୍ରହାଂସ୍ତୁ ବିଜ୍ଞାୟ ଗ୍ରହଶାନ୍ତିଂ ସମାଚରେତ୍ । ୬୨ ।
ଇତି ଶ୍ରୀ ସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନସ୍ୟ ଭଗବଦ୍ରଥନିମ୍ନପ୍ରତିଷ୍ଠାବିଧାନଂ
ନାମ ପଞ୍ଚବିଂଶୋଽଧ୍ୟାୟଃ । ୨୫ ।

---

ହୋମ ଶେଷରେ ବ୍ରାହ୍ମଣମାନଙ୍କର ଶାନ୍ତି କାର୍ଯ୍ୟ କରିବେ । ବ୍ରାହ୍ମଣ ମାନଙ୍କର ମଙ୍ଗଳ ହେଉ, ସର୍ବଦା ରାଜାଙ୍କର ଶୁଭ ହେଉ । ସ୍ୱଜାତିର ମଙ୍ଗଳ ହେଉ, ପ୍ରଜାମାନଙ୍କର ମଙ୍ଗଳ ହେଉ, ଜଗତର ଶାନ୍ତି ହେଉ, ଦ୍ୱିପଦ ମନୁଷ୍ୟର ମଙ୍ଗଳ ହେଉ, ଚତୁଷ୍ପଦ ଜନ୍ତୁ ନିତ୍ୟ ଶାନ୍ତି ଲାଭ କରନ୍ତୁ । ପ୍ରଜାମାନଙ୍କର ଓ ଆମ୍ଭମାନଙ୍କର ମଙ୍ଗଳ ହେଉ । ଦେବତାଙ୍କର ଶାନ୍ତି, ଭୂଲୋକ, ଭୁବର୍ଲୋକ, ଏବଂ ସ୍ୱର୍ଲୋକର ଶୁଭ ହେଉ । ସର୍ବତ୍ର ହିଁ ଶାନ୍ତି ଓ ମଙ୍ଗଳ ବିରାଜମାନ ରହୁ । ୬୦ । ହେ ଦେବ ! ଆପଣ ଜଗତର ସୃଷ୍ଟିକର୍ତ୍ତା ଓ ପାଳନକର୍ତ୍ତା, ହେ ଦେବେଶ ! ଆପଣ ପ୍ରଜାପାଳନ କରନ୍ତୁ । ହେ ଜଗତ୍ପତେ ! ଆପଣ ଶାନ୍ତି ବିସ୍ତାର କରନ୍ତୁ । ଯାତ୍ରା ଉଦ୍ୟମୀ ରାଜା ତଥା ଅନ୍ୟାନ୍ୟ ଲୋକମାନେ ଦୁଷ୍ଟ ଗ୍ରହ ବିଚାର ପୂର୍ବକ ଗ୍ରହ ଶାନ୍ତି କରିବେ । ୬୨ ।

॥ ପଞ୍ଚବିଂଶ ଅଧ୍ୟାୟ ସମାପ୍ତ ॥

## ଷଡ଼୍‌ବିଂଶୋଽଧ୍ୟାୟଃ

ଜୈମିନିରୁବାଚ

ନିରୂପ୍ୟାଥ ସମେ ଦେଶେ ବଧିବଦ୍ଭୂମୟାପି ଚ ।
ପାସାଦନିକଟଂ ଦେବାଃ ପାପିତାଃ ସୁମୁହୂର୍ତ୍ତକେ । ୧ ।

ତତଃ ଶାଳା ସୁମହତୀ ସ୍ୱର୍ଣ୍ଣରତ୍ନବିନିର୍ମିତା ।
ନିଦେଶାଦିନ୍ଦ୍ରଦ୍ୟୁମ୍ନସ୍ୟ ନିର୍ମିତା ବିଶ୍ୱକର୍ମଣା । ୨ ।

ସମ୍ଭର୍ତ୍ତ୍ୟାୟାଂ ବସ୍ତୂନି ହବୀଂଷି ଚ ସମିତ୍କୁଶାଃ ।
ଭୋଜ୍ୟଂ ନାନାବିଧଂ ଗୀତ-ସମ୍ଭାରାନ୍ ବହୁଶସ୍ତଥା । ୩ ।

ସାମ୍ରାଜ୍ୟେ ଯାଦୃଶୀ ମୃଦ୍ଧଂ ସମୃଦ୍ଧିରଭବନ୍ନୃପତୌ ।
ତତଃ ଶ୍ରେଷ୍ଠତରା ବିପ୍ରାଃ ପ୍ରତିଷ୍ଠାୟାଂ ତଭୂବ ହ । ୪ ।

---

## ଷଡ଼ବିଂଶ ଅଧ୍ୟାୟ

ଜୈମିନି କହିଲେ, ହେ ବିପ୍ରଗଣ ! ତଦନନ୍ତର ମୁଁ ଦେବଗଣଙ୍କୁ ଶୁଭ ମୁହୂର୍ତ୍ତରେ ନିରୁପଦ୍ରବ ସମତଳ ପ୍ରଦେଶକୁ, ସେହି ପ୍ରାସାଦ ନିକଟ ଆନୟନ କଲି । ଅତଃ ପର ନୃପବର ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ଦ୍ଦେଶାନୁସାରେ ଦେବଶିଳ୍ପୀ ବିଶ୍ୱକର୍ମା ସ୍ୱର୍ଣ୍ଣ ଓ ବିବିଧ ମଣି-ମାଣିକ୍ୟ ଦ୍ୱାରା ଏକ ବିଶାଳ ଦେବଶାଳା ନିର୍ମାଣ କଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ସେହି ଦେବାଳୟ ପ୍ରତିଷ୍ଠା ନିମନ୍ତେ ପ୍ରଭୂତ ଘୃତ, ସମିଧ ଓ କୁଶାଦି ବସ୍ତୁ ସକଳ ଏବଂ ବିବିଧ ଭୋଜ୍ୟ ଦ୍ରବ୍ୟ ସଂଗ୍ରହ କରାଇଲେ । ତଥା ବିବିଧ ଗୀତ ବାଦ୍ୟାଦି ମଧ୍ୟ କରାଇଲେ । ୩ । ହେ ବିପ୍ରଗଣ ! ଅଧିକ କ'ଣ କହିବି, ପୂର୍ବେ ତାହାଙ୍କ ସାମ୍ରାଜ୍ୟରେ ଯେପରି ସଂପଦ ହୋଇଥିଲା, ଉକ୍ତ ମହାଯଜ୍ଞରେ ତଦପେକ୍ଷା ସମଧିକ ସଂପଦ ପ୍ରକାଶ ପାଇଥିଲା ।

ଗାଲୋ ନାମ ମହୀପାଲସ୍ତଦା କ୍ଷିତିତଲେଽଭବତ୍ ।
ସୋଽପ୍ୟତ୍ର ପ୍ରତିମାଂ କୃତ୍ୱା ମାଧବାଖ୍ୟାଂ ଦୃଷନ୍ମୟୀମ୍ ।
ସ୍ଥାପୟିତ୍ୱାତ୍ର ପ୍ରାସାଦେ ପୂଜୟାମାସ ଋଦ୍ଧିମତ୍ । ୫ ।
କନୀୟାଂସଞ୍ଚ ପ୍ରାସାଦଂ ନିର୍ମାୟ ନୃପସତ୍ତମଃ ।
ତତ୍ର ତାଂ ସ୍ଥାପୟାମାସ ତତୋ ନିଷ୍କ୍ରମ୍ୟ ସାଦରମ୍ । ୬ ।
ତତଃ ସ ନୃପତେର୍ଦୂତମୁଖାଚ୍ଛ୍ରୁତ୍ୱାସ୍ୟ କର୍ମ ତତ୍ ।
ଗାଲୋଽଭ୍ୟାଗାତ୍ ସସୈନ୍ୟଃ ସନ୍ ନିରୁଦ୍ଧୁଂ ନୀଳପର୍ବତମ୍ । ୭ ।
ଦୃଷ୍ଟ୍ୱା ପ୍ରତିଷ୍ଠାସମ୍ଭାରଂ ମର୍ତ୍ତ୍ୟୈଃ ସ୍ୱପ୍ନେଽପି ଦୁର୍ଲଭମ୍ ।
ବିସ୍ମୟାକ୍ରାନ୍ତଚେତାଃ ସ ଗାଲସ୍ତସ୍ଥୌ ନରାଧିପଃ । ୮ ।
କିମେତଦଦ୍ଭୁତ ବୃତ୍ତାନ୍ତଂ କୋ ବା କାରୟିତାଦୃଶମ୍ ।
ଯଦାଦେବ ସ ରାଜ୍ଞାସ୍ତୁ ଇନ୍ଦ୍ରଦ୍ୟୁମ୍ନଂ ନରାଧିପମ୍ । ୯ ।

---

ଏହି ସମୟରେ ପୃଥିବୀସ୍ଥ ଗାଲ ନାମକ ରାଜା ରାଜତ୍ୱ କରୁଥିଲେ । ଏହି ନୃପବର ଗାଲ ଏଥି ପୂର୍ବେ ସେଠାରେ ( ନୀଳପର୍ବତରେ ) ଶ୍ରୀମାଧବ ନାମକ ଦାରୁମୟୀ ବିଷ୍ଣୁ ପ୍ରତିମା ନିର୍ମାଣ କରି ଉକ୍ତ ମନ୍ଦିରରେ ମହାସମାରୋହ ସହିତ ପ୍ରତିଷ୍ଠା ପୂର୍ବକ ପୂଜା କରୁଥିଲେ । ପରେ ନୃପସତ୍ତମ ଇନ୍ଦ୍ରଦ୍ୟୁମ୍ନ ଅନ୍ୟ ଗୋଟିଏ କ୍ଷୁଦ୍ର ପ୍ରାସାଦ ନିର୍ମାଣ କରି ସେହି ମାଧବ ମୂର୍ତ୍ତିଙ୍କୁ ପୁରୁଷୋତ୍ତମ ମନ୍ଦିରରୁ ନେଇ ସେଠାରେ ସ୍ଥାପନ କଲେ । ଅନନ୍ତର ନୃପବର ଗାଲ ଦୂତମୁଖରୁ ଇନ୍ଦ୍ରଦ୍ୟୁମ୍ନଙ୍କର ଈଦୃଶ କାର୍ଯ୍ୟ ଶ୍ରବଣ କରି କ୍ରୋଧର ସହିତ ସୈନ୍ୟ ସାମନ୍ତଙ୍କୁ ନେଇ ନୀଳଗିରିରେ ଉପସ୍ଥିତ ହେଲେ । ୭ । କିନ୍ତୁ ମନୁଷ୍ୟମାନଙ୍କର ସ୍ୱପ୍ନରେ ଯାହା ଦୁର୍ଲଭ, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ପୁରୁଷୋତ୍ତମ ପ୍ରତିଷ୍ଠା ସମ୍ଭାର ଦେଖି ଅତିଶୟ ବିସ୍ମିତ ହୋଇ ଭାବିଲେ, ଏ କି ଅଦ୍ଭୁତ ବ୍ୟାପାର ! କେଉଁ ବ୍ୟକ୍ତି ଏ ଅତ୍ୟାଶ୍ଚର୍ଯ୍ୟ କରି ଅଛନ୍ତି ? କିନ୍ତୁ ଯତ୍ନସହକାରେ ଯେତେବେଳେ ଜାଣିଲେ ଯେ, ନୃପବର ଇନ୍ଦ୍ରଦ୍ୟୁମ୍ନ ଏହିପରି

ବ୍ରହ୍ମଲୋକାଦାଗତଂ ତଂ କର୍ତ୍ତାରଂ ଦେବବେଶ୍ମନଃ ।
ପ୍ରତିଷ୍ଠାପୟିତୁଂ ଦେବୈଃ ସାର୍ଦ୍ଧଂ ସମ୍ଭାରକାରଣମ୍ ॥ ୧୦ ॥
ସହିତଃ ପଦ୍ମନିଧିନା ଗୁରୁଣା ନାରଦେନ ଚ ।
ବ୍ରହ୍ମାଣଞ୍ଚାଗମିଷ୍ୟନ୍ତଂ ପ୍ରତିଷ୍ଠାୟୈ ସୁରୋତ୍ତମମ୍ ॥ ୧୧ ॥
ଶ୍ରୁତ୍ୱା ସ ସର୍ବବୃତ୍ତାନ୍ତଂ ତଦ୍ରାଜା ହୃଦୟେଚେଷ୍ଟିତମ୍ ।
ମେନେ କୃତାର୍ଥମାତ୍ମାନଂ ତଦ୍ରାଜ୍ୟୋ ପରମାଦ୍ଭୁତମ୍ ॥ ୧୨ ॥
ଇତଃ ଶ୍ରେୟସ୍କରତମଂ କର୍ମ ନ ଭୂତଂ ନ ଭବିଷ୍ୟତି ।
ତଦସ୍ୟ ନିକଟେ ସ୍ଥିତ୍ୱା ଜ୍ଞାତ୍ୱା କର୍ମନିୟମଂ ବିଧିମ୍ ।
ଉତ୍ସବାଂଶ୍ଚାପି ବିଜ୍ଞାୟ କରିଷ୍ୟେ ପ୍ରତିବତ୍ସରମ୍ ॥ ୧୩ ॥
ଅମୁଂ ଦାରୁମୟଂ ସାକ୍ଷାଦ ବ୍ରହ୍ମରୂପଂ ଜନାର୍ଦ୍ଦନମ୍ ।
ଅଭାଗ୍ୟୋପଚୟାଦେତାବନ୍ତଂ କାଳଂ ନ ଜାନତା ।
ଅସେବମାନେନ କୃତଂ ଜନ୍ମୈବ ବିଫଳଂ ମମ ॥ ୧୪ ॥

---

କାର୍ଯ୍ୟରେ ପ୍ରବୃତ୍ତ ହୋଇ ଅଦ୍ଭୁତ ଦେବ ମନ୍ଦିର ନିର୍ମାଣ ତଥା ପ୍ରତିଷ୍ଠା ନିମିତ୍ତ ଦ୍ରବ୍ୟ ସମ୍ଭାର ସଂଗ୍ରହ କରିଅଛନ୍ତି, ଏବଂ ଶୁଣିଲେ ଯେ, ସେ ଭଗବାନଙ୍କୁ ପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ବ୍ରହ୍ମଲୋକରୁ ଆଗମନ କରିଅଛନ୍ତି ପୁନଶ୍ଚ ଉକ୍ତ କାର୍ଯ୍ୟ ସମ୍ପାଦନ ପାଇଁ, ସୁରସତ୍ତମ ଭଗବାନ ବ୍ରହ୍ମା ଓ ଦେବଗଣ, ଦେବର୍ଷି ତଥା ଇନ୍ଦ୍ରଦ୍ୟୁମ୍ନଙ୍କ ଗୁରୁ ନାରଦଙ୍କ ସହିତ ଅନତି-ବିଳମ୍ବରେ ଆଗମନ କରିବେ । ୧୧ । ନୃପବର ରାଜା ଏ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି, ନିଜକୁ କୃତାର୍ଥ ଓ ସେହି ରାଜ୍ୟକୁ ଅତ୍ୟାଶ୍ଚର୍ଯ୍ୟ ଭାବି ମନେ ମନେ ଚିନ୍ତା କଲେ, ଏହା ଅପେକ୍ଷା ଶ୍ରେଷ୍ଠତମ କାର୍ଯ୍ୟ କେବେ ହୋଇନାହିଁ । ଅତଏବ ଏହାଙ୍କ ନିକଟରେ ରହି କର୍ମ ବିଧିବିଧାନ ଏବଂ ମହୋତ୍ସବ ବିଷୟ ଜାଣି ମୁଁ ମଧ୍ୟ ପ୍ରତିବର୍ଷ ମହୋତ୍ସବର ବିଧି ପାଳନ କରିବି । ୧୩ । ଅଭାଗ୍ୟ ବଶତଃ ଏତେକାଳ ପର୍ଯ୍ୟନ୍ତ ଏହି ଦାରୁମୟ ବ୍ରହ୍ମରୂପୀ ଜନାର୍ଦ୍ଦନଙ୍କୁ ଜାଣି ନ ପାରି ଏବଂ ଏହାଙ୍କର ସେବା ନକରି ମାନବ ଜନ୍ମକୁ ବିଫଳ କରିଅଛି । ୧୪ ।

ତଦେବମିନ୍ଦ୍ରଦ୍ୟୁମ୍ନଂ ବୈ ପ୍ରଣିପତ୍ୟ ଜଗଦ୍‌ଗୁରୁମ୍ ।
ମହାଭାଗବତଂ ଶ୍ରେଷ୍ଠଂ ବ୍ରହ୍ମଲୋକଗତଂ ବିଭୁମ୍ । ୧୫ ।
ଉପେତ୍ୟ କାରଣଂ ସାକ୍ଷାଦ୍ଦୃଷ୍ଟ୍ୱା ନାରାୟଣଂ ବିଭୁମ୍ ।
ପ୍ରତିଷ୍ଠିତଂ ବୈ ପ୍ରାସାଦେ ମୁକ୍ତିମେଷ୍ୟାମି ନିଶ୍ଚିତମ୍ । ୧୬ ।
ବୈକୁଣ୍ଠଂ ସ ପ୍ରତିଷ୍ଠାପ୍ୟ ମଯ୍ୟେବାରୋପୟିଷ୍ୟତି ।
ବ୍ରହ୍ମଲୋକଂ ଗତୋ ଯୋ ବୈ କଂ କୌ ଯୋଽବତିଷ୍ଠତେ । ୧୭ ।
ଉପସ୍ଥିତାନ୍ ସମାଦିଶ୍ୟ କୋଷଂ ସନ୍ତ୍ୟଜ୍ୟ ଚ ସର୍ବଶଃ ।
ବ୍ରହ୍ମଣା ସହିତୋଽବଶ୍ୟଂ ପୁନର୍ଯାସ୍ୟତି ତତ୍କ୍ଷୟମ୍ । ୧୮ ।
ବିଗୃହ୍ୟ ମନ୍ତ୍ରିଭିଃ ସାର୍ଦ୍ଧଂ ବହ୍ୱାନ୍ ଗାଳୋଽପି ବେଷ୍ଟିତଃ ।
ଇନ୍ଦ୍ରଦ୍ୟୁମ୍ନସ୍ୟ ନିକଟଂ ବିନୀତଃ ସସ୍ମିତୌ ମୁଦା । ୧୯ ।

ବ୍ରହ୍ମଲୋକାଗତ, ମହାଭାଗବତ ସର୍ବଶ୍ରେଷ୍ଠ ବିଭୁ ଜଗଦ୍‌ଗୁରୁ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟକୁ ବର୍ତ୍ତମାନ ମୁଁ ଯାଇ ପ୍ରଣିପାତ ପୂର୍ବକ ସର୍ବକାରଣ ଭଗବାନ ନାରାୟଣଙ୍କୁ ପ୍ରାସାଦରେ ପ୍ରତିଷ୍ଠିତ ଦେଖି ନିଶ୍ଚୟ ମୁକ୍ତିଲାଭ କରିବି । ମହାତ୍ମା ଇନ୍ଦ୍ରଦ୍ୟୁମ୍ନ ଭଗବାନ ବୈକୁଣ୍ଠଙ୍କୁ ପ୍ରତିଷ୍ଠା କରି ଅବଶ୍ୟ ମୋ ଉପରେ ସେବାଭାର ଅର୍ପଣ କରିବେ । କାରଣ ସେ ସର୍ବକାଳବ୍ୟାପୀ ବ୍ରହ୍ମଲୋକକୁ ଯାଇ ଅବସ୍ଥାନ କରି ଅଛନ୍ତି, ଆଉ କାହିଁକି ବା ଏ ପୃଥିବୀରେ ରହିବେ । ନିଶ୍ଚୟ ହିଁ ପ୍ରଭୁଙ୍କ ସେବା ନିମନ୍ତେ ବହୁ ଧନରତ୍ନାଦି ସ୍ଥାପନ ପୂର୍ବକ ଉପସ୍ଥିତ ବିଷୟ ନିର୍ଦ୍ଦେଶ କରି ଭଗବାନ ବ୍ରହ୍ମାଙ୍କ ସହିତ ପୁନରାୟ ବ୍ରହ୍ମ ଲୋକକୁ ପ୍ରତିଗମନ କରିବେ ।୧୮। ବିଷ୍ଣୁପରାୟଣ, ପରମଜ୍ଞାନୀ ନୃପବର ଗାଳ, ମନ୍ତ୍ରୀବର୍ଗ ସହିତ ବହୁ ବିସ୍ମିତ ପୂର୍ବକ ହର୍ଷାନ୍ୱିତ ହୋଇ ବିନୀତ ଭାବରେ ଶ୍ରୀ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ପ୍ରବେଶ ହେଲେ । ନୃପବର ଗାଳ, କିଛିଦୂର ଯାଇ ଇନ୍ଦ୍ରଦ୍ୟୁମ୍ନଙ୍କୁ ନିରୀକ୍ଷଣ କରି ପ୍ରଣିପାତ ପୂର୍ବକ ମସ୍ତକରେ ଅଞ୍ଜଳି ବନ୍ଧନ କରି ଭୟର ସହିତ ମୃଦୁଭାବରେ

ଗତ୍ୱା ତଂ ଦୂରତୋ ଦୃଷ୍ଟ୍ୱା ପ୍ରଣିପାତପୁରଃସରମ୍ ।
ବଦ୍ଧାଞ୍ଜଳିପୁଟୋ ରାଜା ମୂର୍ଦ୍ଧ୍ନା ସାକ୍ଷନ୍ ସସାଧ୍ୱସମ୍ ।
ଶନୈଃ ଶନୈ ର୍ଯଯୌ ତସ୍ୟ ନିକଟଂ ଗାଲପାର୍ଥିବଃ । ୧୦ ।

ଗାଲ ଉବାଚ

ଦେବ ତ୍ୱଂ ରାଜରାଜୋଽପି ମର୍ତ୍ତ୍ୟୋଽପି ବ୍ରହ୍ମଲୋକଗଃ ।
କଂ ସ୍ତୌମି ନୃପକୀଟୋଽହଂ ତ୍ୱାଂ ଜଗନ୍ନୁକ୍ରମୀଶ୍ୱରମ୍ । ୧୧ ।
ଅଜ୍ଞାତ୍ୱା ମହିମାନଂ ତେ ସଚିବୈର୍ମନ୍ତ୍ରସ୍ୱନ୍ନୁତଃ ।
ଯୋଦ୍ଧୁମଭ୍ୟାଗତୋ ଦେବ ଦୃଷ୍ଟ୍ୱା ତେ ପୌରୁଷଂ ମହତ୍ । ୧୨ ।
ଅତମାନୁଷମାଶ୍ଚର୍ଯଂ ପଦଶ୍ଚାପି ଶଚୀପତେଃ ।
ଦୃଷ୍ଟ୍ୱୈବ ନିଶ୍ଚିତଂ ଦେବ ବ୍ରହ୍ମଲୋକଗତସ୍ୟ ହି । ୧୩ ।
ଈଦୃଶଂ ହି ଭବେତ୍ କର୍ମ ଯଦାଜ୍ଞାକୃନ୍ମହାନିଧିଃ ।
ତେତଃ ପ୍ରସାଦପ୍ରବଣଂ ମହ୍ୟଂ ଦେହି ସୁରୋତ୍ତମ । ୧୪ ।
ତ୍ରୈଲୋକ୍ୟବାସିନୋ ଦେବା ଯଦାଜ୍ଞାବଶବର୍ତ୍ତିନଃ । ୧୫ ।

---

କହିଲେ—ହେ ଦେବ ! ଆପଣ ରାଜରାଜ ଅଟନ୍ତି । ଆପଣ ମନୁଷ୍ୟ ହୋଇ ମଧ୍ୟ ସ୍ୱଶରୀରରେ ବ୍ରହ୍ମଲୋକକୁ ଯାଇ ପାରିଛନ୍ତି, ଏଣୁ ଆପଣ ଅସୀମ ଶକ୍ତିସମ୍ପନ୍ନ, ଜଗନ୍ନିୟନ୍ତା, ଅତଏବ ହେ ନୃପ ! ମୁଁ ସାମାନ୍ୟ କୀଟହୋଇ ଆପଣଙ୍କର କି ସ୍ତବ କରିବି ? ହେ ଦେବ ! ଆପଣଙ୍କର ମହିମା ନ ଜାଣି ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣା କରି ଆପଣଙ୍କ ସାଙ୍ଗରେ ଯୁଦ୍ଧ କରିବା ନିମନ୍ତେ ଆସିଥିଲି । କିନ୍ତୁ ଆସି ଦେଖିଲି, ଆପଣଙ୍କର ଅମାନୁଷିକ ଅତ୍ୟ-ଦ୍ଭୁତ ପୌରୁଷ ଏବଂ ଇନ୍ଦ୍ରତୁଲ୍ୟ ଅଲୌକିକ ଐଶ୍ୱର୍ଯ୍ୟ ଦର୍ଶନରେ ନିଶ୍ଚୟ କରିଅଛି ଯେ, ତ୍ରୈଲୋକ୍ୟବାସୀ ଦେବଗଣ, ମହାନିଧି ପର୍ଯ୍ୟନ୍ତ ଯାହାଙ୍କ ଆଜ୍ଞାକାରୀ, ସେହି ବ୍ରହ୍ମଲୋକ ଆଗତ ଆପଣଙ୍କ ପକ୍ଷରେ ଏପରି କାର୍ଯ୍ୟ ସମ୍ଭବ । ହେ ସୁରୋତ୍ତମ ! ସମ୍ପ୍ରତି କୃପା କରି ଆପଣ ମୋ ପ୍ରତି ପ୍ରସନ୍ନଚିତ୍ତ ହୁଅନ୍ତୁ ।୧୫। ଜୈମିନି

ଜୈମିନିରୁବାଚ

ଇତ୍ଥଂ ବିଜ୍ଞାପ୍ୟମାନ୍ସ୍ତୁ ଗାଲଂ ନୃପତିକୁଞ୍ଜରମ୍ ।
ସ୍ମୟମାନ ଉବାଚେଦଂ ରାଜନ୍ କିଂ ବହୁ ଭାଷସେ । ୧୬ ।
ଭବାନପି ହରେର୍ଭକ୍ତଃ ସାର୍ବଭୌମୋ ମହୀପତିଃ ।
ସାମାନ୍ୟମେତଦ୍ରାଜ୍ଞାଂ ବୈ ସ୍ୱାମିତ୍ୱଂ ଭୁବି ବର୍ତ୍ତତେ । ୧୭ ।
ସାମ୍ପ୍ରତଂ ହି ଭବାନେକ ପୃଥିବ୍ୟାମେକପାର୍ଥିବଃ ।
ନୃପାଃ ସୃଷ୍ଟାଃ କିଂ ସ୍ୱୟଂ ସର୍ବା ମର୍ତ୍ତ୍ୟାନାଂ ମହତାମପି । ୧୮ ।
ଅଷ୍ଟଦିକ୍ପାଳକାଂଶୈସ୍ତୁ ବ୍ରହ୍ମଣା ନିର୍ମିତୋ ନୃପଃ ।
ନ ହ୍ୟଳ୍ପପୁଣ୍ୟକୃଦ୍ରାଜା ପ୍ରଜାପାଳନତତ୍ପରଃ । ୧୯ ।
ଇହ କୀର୍ତ୍ତିଞ୍ଚ ଧର୍ମଞ୍ଚ ଅମୁତ୍ରଗତିମୁତ୍ତମାମ୍ ।
ପ୍ରାପ୍ନୋତି ରାଜଶାର୍ଦ୍ଦୂଳ ବିଶେଷାତ୍ତ୍ୱଞ୍ଚ ବୈଷ୍ଣବଃ । ୨୦ ।

---

କହିଲେ—ଗାଲ ନାମକ ନୃପତି କୁଞ୍ଜର ଏହିପରି ନିବେଦନ କରନ୍ତେ, ରାଜା ଇନ୍ଦ୍ରଦ୍ୟୁମ୍ନ ସହାସ୍ୟ ମୁଖରେ କହିଲେ, ହେ ରାଜନ୍ ! ଆପଣଙ୍କର ଏବଂବିଧ ବିନୟପୂର୍ଣ୍ଣ ବଚନର ପ୍ରୟୋଜନ ନାହିଁ । କାରଣ ଆପଣ ମଧ୍ୟ ଜଣେ ହରିଭକ୍ତ ସାର୍ବଭୌମ ମହୀପତି । ପୃଥିବୀରେ ରାଜାମାନଙ୍କର ପ୍ରଭୁତ୍ୱ ସାମାନ୍ୟ ବୋଲି ଜାଣିବେ । ଏଣୁ ଏହି ସାମାନ୍ୟ ବ୍ୟକ୍ତିକୁ କି ନିମନ୍ତେ ଏପରି ବିନୟ କରୁଅଛନ୍ତି ? ବର୍ତ୍ତମାନ ଆପଣ ପୃଥିବୀର ଅଦ୍ୱିତୀୟ ନୃପତି ଏବଂ ମାନବଗଣ ଅତି ମହାନ୍ ହେଲେ ମଧ୍ୟ ସେମାନଙ୍କର ସମସ୍ତ କାର୍ଯ୍ୟ ହିଁ ରାଜାଙ୍କର ଅଧୀନ ବୋଲି, ବ୍ରହ୍ମା ଅଷ୍ଟଦିଗପାଳଙ୍କ ଅଂଶରେ ରାଜାଙ୍କୁ ସୃଷ୍ଟି କରି ଅଛନ୍ତି । ଯେଉଁ ରାଜାଙ୍କର ପୁଣ୍ୟବଳ ଅତି ଅଳ୍ପ, ସେ ପ୍ରଜା ପାଳନ ପାଇଁ ତତ୍ପର ନୁହନ୍ତି । ହେ ରାଜ ଶାର୍ଦ୍ଦୂଳ ! ଯେଉଁ ରାଜା ପରମ ପୁଣ୍ୟଶାଳୀ, ସେ ଏହି ଲୋକରେ ପ୍ରଜାପାଳନ ହେତୁ ଅତୁଳ୍ୟ ଧର୍ମ ସଞ୍ଚୟ କରି ଚିର କୀର୍ତ୍ତି ସ୍ଥାପନ ପୂର୍ବକ ପରଲୋକରେ ଉତ୍ତମ ସଦ୍‌ଗତି ପ୍ରାପ୍ତ ହୁଏ । ବିଶେଷତଃ ଆପଣ ଯେତେବେଳେ ପରମ ବୈଷ୍ଣବ, ସେତେବେଳେ ଆପଣଙ୍କର ସଦ୍‌ଗତି ଲାଭ ବିଷୟରେ ସନ୍ଦେହ କ'ଣ ? ।୩୦।

ପ୍ରାସାଦେ ସ୍ଥାପୟେଦ୍ ଯସ୍ତୁ ହରେରର୍ଚ୍ଚାଂ ବିଧାନତଃ ।
ନ ଦେହବନ୍ଧମାପ୍ନୋତି ଯାତି ବିଷ୍ଣୋଃ ପରଂ ପଦମ୍ । ୩୧ ।
ମାଧବପ୍ରତିମା ମେତାଂ ଦାର୍ବୀଂ ଶୁଭଲକ୍ଷଣାମ୍ ।
ସାକ୍ଷାନ୍ମୁକ୍ତିପ୍ରଦାଂ ଭୂପ ସ୍ୱୟଂ ସ୍ଥାପିତବାନସି । ୩୨ ।
ନିର୍ବିଘ୍ନଂ କର୍ମ ତେ ଜାତଂ ମମ ମନ୍ୱନ୍ତରଂ ଗତମ୍ ।
ଭବେଦ୍ ବା ସଂଶୟୋ ମେଽତ୍ର ନ ସ୍ୱତନ୍ତ୍ରଶ୍ଚତୁର୍ମୁଖଃ । ୩୩ ।
ପ୍ରତିଷ୍ଠାୟୈ ପ୍ରାର୍ଥିତୋଽୟଂ ତଦନ୍ୟଃ ସ୍ଥାପୟେତ୍ କଥମ୍ ।
ସାକ୍ଷାଦ୍ଦେବାବତାରସ୍ୟ ପ୍ରାସାଦସ୍ୟ ନୃପୋତ୍ତମ । ୩୪ ।
ସ ବିଧାନେନ ଚେଦତ୍ର ବିଧାତାନୁଗ୍ରହୀଷ୍ୟତି ।
ତଦେନଂ ସ୍ଥାପୟିତ୍ୱା ତୁ ତତ୍ତ୍ୱରୂପଂ ଜନାର୍ଦ୍ଦନମ୍ ।
ସମର୍ପ୍ୟ ତ୍ୱାଂ ଗମିଷ୍ୟାମି ଅଂଶେନୋପଚରିଷ୍ୟସି । ୩୫ ।

---

ଆପଣ ନିଶ୍ଚୟ ଜାଣନ୍ତୁ, ଯେଉଁ ବ୍ୟକ୍ତି ପ୍ରାସାଦରେ ବିଧି ବିଧାନ ପୂର୍ବକ ବିଷ୍ଣୁ ପ୍ରତିମା ସ୍ଥାପନ କରନ୍ତି ସେମାନଙ୍କୁ ଦେହ ବନ୍ଧନ ପ୍ରାପ୍ତ ହୁଏ ନାହିଁ, ନିଃସନ୍ଦେହରେ ବିଷ୍ଣୁଙ୍କର ପରମପଦ ଲାଭ କରନ୍ତି । ହେ ଭୂପ ! ଆପଣ ସ୍ୱୟଂ ସାକ୍ଷାତ୍ ମୁକ୍ତିପ୍ରଦା ଶୁଭ ଲକ୍ଷଣା ଦାରୁମୟୀ ମାଧବ ପ୍ରତିମା ସ୍ଥାପନ କରିଅଛନ୍ତି ।୩୨। ଆପଣଙ୍କର କର୍ମ ନିର୍ବିଘ୍ନରେ ସମାଧାନ ହୋଇଅଛି । ମୋର ମନ୍ୱନ୍ତର ଗତ ହୋଇଛି, ତଥାପି କାର୍ଯ୍ୟ ସିଦ୍ଧି ହେଇନାହିଁ । ଏଣୁ ମୋର ସଂଶୟ ହେଉଅଛି ଯେ, ଏହା ସଂପୂର୍ଣ୍ଣ ହେବ କି ନା ଜାଣେନା । ଭଗବାନ ଚତୁର୍ମୁଖ ମଧ୍ୟ ସ୍ୱାଧୀନ ନୁହଁନ୍ତି ଏବଂ ସାକ୍ଷାତ୍ ଦେବତା ସ୍ୱରୂପ ପ୍ରାସାଦ ପ୍ରତିଷ୍ଠା ନିମନ୍ତେ ଯେତେବେଳେ ତାଙ୍କ ନିକଟ ପ୍ରାର୍ଥନା କରିଅଛି, ଯେତେବେଳେ ଅନ୍ୟ ବ୍ୟକ୍ତି ଦ୍ୱାରା କି ପ୍ରକାରେ ସ୍ଥାପନ କରିବ ? ହେ ନୃପୋତ୍ତମ ! ବର୍ତ୍ତମାନ ସେ (ବ୍ରହ୍ମା) ଯଦି ଯଥାବିଧି କାର୍ଯ୍ୟକରି ମୋତେ ଅନୁଗୃହୀତ କରନ୍ତି, ତାହାହେଲେ ତତ୍ତ୍ୱରୂପୀ ଭଗବାନ ଜନାର୍ଦ୍ଦନଙ୍କୁ ମୁଁ

ନିତ୍ୟାମର୍ଚ୍ଚରଂ ଯାତ୍ରାଶ୍ଚ ଉତ୍ସବାଂଶ୍ଚ ଜଗତ୍ପତେଃ ।
ଯେନୈବୋପଦିଶେଦ୍ଦେବଃ ସ୍ୱୟଂ ବା ପ୍ରପିତାମହଃ । ୩୬ ।
ତାଂସ୍ତାନ୍ ପ୍ରଯତ୍ନାତ୍ କୁର୍ବୀଥା ରାଜା ବୈ ଧର୍ମପାଳକଃ । ୩୭ ।
ତତଃ ସ ରାଜେ ନୃପତ ଶ୍ରୁତ୍ୱା ଯଚ୍ଚିନ୍ତିତଂ ସ୍ୱୟମ୍ ।
ଇନ୍ଦ୍ରଦ୍ୟୁମ୍ନାଦିଷ୍ଟମେତଦତ୍ର ପ୍ରାପ ପରଂ ମୁଦମ୍ । ୩୮ ।
ତସ୍ମୈ ତସ୍ୟାନ୍ତିକେ ରାଜ ଆଜ୍ଞାକର ଇବ ସ୍ୱୟମ୍ ।
ତତ୍ପଦାଂଶ୍ଚ କରୋତ୍ୟେବ ଇନ୍ଦ୍ରଦ୍ୟୁମ୍ନୋ ଯଥାଦିଶତ୍ । ୩୯ ।
ଏବଂ ସମ୍ଭୃତସମ୍ଭାରଃ ସିଂହାସନଗତଃ ପ୍ରଭୁଃ ।
ଦେବୈଃ ପରିବୃତ ଇନ୍ଦ୍ରଦ୍ୟୁମ୍ନଃ ଶକ୍ର ଇବାବଭୌ । ୪୦ ।
ତତୋଽଶ୍ରୂୟନ୍ତ ନିନଦା ଦିବ୍ୟଦୁନ୍ଦୁଭିଜାଃ ଶୁଭାଃ ।
ମୁରଜଂ ବେଣୁବୀଣାଦି ତାଳକାହାଳନିଃସ୍ୱନାଃ ।
ଐରାବତାଦିକରିଣାଂ କିଙ୍କିଣୀଜାଳନିଃସ୍ୱନାଃ । ୪୧ ।

---

ସ୍ଥାପନ ପୂର୍ବକ ଆପଣଙ୍କୁ ହିଁ ସମର୍ପଣ କରି ବ୍ରହ୍ମଲୋକକୁ ଯାତ୍ରା କରିବି । ଆପଣ ଯଥା ବିଧାନ ଓ ଯଥା ଉପଚାରାଦି ଦ୍ୱାରା ଜଗତ୍‌ପତିଙ୍କ ସେବା କରିବେ । କିମ୍ବା ସ୍ୱୟଂ ପିତାମହ ଭଗବାନଙ୍କର ଯେପରି ନିତ୍ୟ ଉପଚାର ତଥା ଯାତ୍ରା ମହୋତ୍ସବ ବିଧିରେ ଉପଦେଶ ଦେବେ, ଆପଣ ତଦନୁସାରେ କାର୍ଯ୍ୟ କରିବେ । କାରଣ ରାଜା ହିଁ ଧର୍ମପାଳକ । ନୃପତି ରାଜା ସ୍ୱୟଂ ମନେ ମନେ ଯେଉଁ ବିଷୟ ଚିନ୍ତା କରିଥିଲେ, ରାଜା ଇନ୍ଦ୍ରଦ୍ୟୁମ୍ନ ତଦନୁରୂପ ଆଦେଶ କଲେ । ଏହା ଶ୍ରବଣ କରି ରାଜା ଗାଳ ଆନନ୍ଦ ଲାଭ କଲେ ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ସର୍ବଦା ଅବସ୍ଥାନ ପୂର୍ବକ ତାଙ୍କ ଆଦେଶ ମାନେ କିଙ୍କର ତୁଲ୍ୟ ତତ୍‌କ୍ଷଣାତ୍ ତାହା ସମ୍ପାଦନ କରିବାକୁ ଲାଗିଲେ । ଇନ୍ଦ୍ରଦ୍ୟୁମ୍ନ ପ୍ରଭୁ ପ୍ରତିଷ୍ଠା ଦ୍ରବ୍ୟ ସମ୍ଭାର ଆୟୋଜନ କରି ଦେବତାମାନଙ୍କ ଦ୍ୱାରା ପରିବୃତ ଓ ସିଂହାସନ ଅଧିଷ୍ଠିତ ହୋଇ ଦେବରାଜ ଇନ୍ଦ୍ରଙ୍କ ତୁଲ୍ୟ ଶୋଭା ପାଇବାକୁ ଲାଗିଲେ ।୪୦। ତଦନନ୍ତର ଦିବ୍ୟ ଦୁନ୍ଦୁଭି, ମୁରଜ, ବେଣୁ, କାହାଳ ଏବଂ ବୀଣାଦି ତାଳ-ଲୟ ସମନ୍ୱିତ ମନୋହର ନିନାଦ ଏବଂ ଐରାବତ ଆଦି ଦିବ୍ୟ ହସ୍ତିଗଣଙ୍କ କଣ୍ଠଲଗ୍ନ କିଙ୍କିଣି ମାଳାର ମନୋମୁଗ୍ଧକର ଧ୍ୱନି ଶ୍ରୁତିଗୋଚର ହେବାକୁ ଲାଗିଲା ।

ତତସ୍ତୁ ତେଜସାଂ ରାଶୀ ରୋଦସ୍ୟମଧ୍ୟପୂରକଃ ।
ଆବିରାସୀତ୍ କ୍ଷିତିଗତନୟନାଚ୍ଛାଦକୋ ଦ୍ୱିଜାଃ । ୪୨ ।
ଉନ୍ମୀଲିତାକ୍ଷମାଳାଢ୍ୟଃ ପ୍ରଜାଭିର୍ବୀକ୍ଷିତଃ ପୁରଃ । ୪୩ ।
ତତଃ କ୍ରମାତ୍ ସନ୍ଦୃଶେ ବିମାନାଗ୍ରେ ପ୍ରଜାପତିଃ ।
ସ୍ୱର୍ଣ୍ଣହଂସଶତୈଃ ସ୍କନ୍ଧୈର୍ବୋହ୍ୟମାନଃ ସମନ୍ତତଃ । ୪୪ ।
ଦିକ୍ପାଳିକାଭିରମରବ୍ୟଗ୍ରକରୈର୍ନିଷେବିତଃ ପୁରଃ ।
ଜାହ୍ନବୀଯମୁନାନୀରପ୍ରକୀର୍ଣ୍ଣିତକଳେବରଃ । ୪୫ ।
ପାର୍ଶ୍ୱୟୋଶ୍ଚନ୍ଦ୍ର ସୂର୍ଯ୍ୟାଭ୍ୟାମୁଭାଭ୍ୟାମାତପତ୍ରକେ ।
ଧାର୍ଯ୍ୟମାଣେ ଶନୈର୍ବାୟୁଚାଳିତାଞ୍ଚଳଗ୍ଲେଳକେ । ୪୬ ।
ବ୍ରହ୍ମର୍ଷିଭିର୍ଗୌତମାଦ୍ୟୈଃ ସ୍ତୂୟମାନୋ ରହସ୍ୟକୈଃ ।
ତନ୍ମଧ୍ୟସ୍ଥଃ ପ୍ରଜାନାଥ ଇନ୍ଦ୍ରଦ୍ୟୁମ୍ନାଦିଭିଃ ସ୍ତୁତଃ । ୪୭ ।

---

ହେ ଦ୍ୱିଜଗଣ ! ତାହାପରେ ସ୍ୱର୍ଗ ମର୍ତ୍ତ୍ୟ ମଧ୍ୟଭାଗ ପରିପୂର୍ଣ୍ଣ କରି ଏପରି ଏକ ତେଜରାଶି ଆବିର୍ଭୂତ ହେଲା ଯେ ପୃଥିବୀରେ କୌଣସି ବ୍ୟକ୍ତି ଦୃଷ୍ଟି ନିକ୍ଷେପ କରି ପାରିଲେ ନାହିଁ । ଅର୍ଥାତ୍ ସମସ୍ତଙ୍କ ନେତ୍ର ନିମୀଳିତ ହୋଇଗଲା । ପରେ ତତ୍ସ୍ଥ ପ୍ରଜାବର୍ଗ ଧୀର ସହକାରେ ନେତ୍ର ଉନ୍ମୀଳନ କରି ସମ୍ମୁଖବର୍ତ୍ତୀ ସେହି ତେଜରାଶିକୁ ସତ୍ତ୍ୱର୍କଣ୍ଠିତ ଭାବରେ ନିରୀକ୍ଷଣ କରିବାକୁ ଲାଗିଲେ । ।୪୨। କ୍ରମଶଃ ଉକ୍ତ ତେଜରାଶି ଭିତରେ ବିମାନ ଅଧିଷ୍ଠିତ ଭଗବାନ ପ୍ରଜାପତି ଦୃଷ୍ଟିଗୋଚର ହେଲେ । ଚାରି ଦିଗ ର ଶହ ଶହ ସ୍ୱର୍ଣ୍ଣହଂସ ସ୍କନ୍ଧ ଭାଗରେ ସେହି ବିମାନ ବାହିତ ଏବଂ ଦିଗପାଳବୃନ୍ଦ ବ୍ୟଗ୍ରହସ୍ତରେ ଚାମର ବ୍ୟଜନ କରୁଅଛନ୍ତି । ଉଭୟ ପାର୍ଶ୍ୱରେ ଜାହ୍ନବୀ ଓ ଯମୁନାର ପବିତ୍ର ଜଳରେ ତତ୍ପୂର୍ବ କଳେବର ଅଭିଷିକ୍ତ ହେଉଅଛି । ଚନ୍ଦ୍ର-ସୂର୍ଯ୍ୟ ତାଙ୍କ ଦୁଇ ପାର୍ଶ୍ୱରେ ଯେଉଁ ଶ୍ୱେତଛତ୍ର ଦ୍ୱୟ ଧାରଣ କରିଥିଲେ, ମନ୍ଦ ମନ୍ଦ ସମୀରଣ ସଞ୍ଚାରଣ ଦ୍ୱାରା ସେହି ଛତ୍ରଦ୍ୱୟ ପ୍ରାନ୍ତ ଭାଗରେ ବିଲମ୍ବୀ ଆକୁଞ୍ଚିତ ବସ୍ତ୍ରାବଳୀ ( ଝାଲର ) ଦୋଦୁଲ୍ୟମାନ ହେଉଥାଏ । ୪୬ । ଗୌତମ ପ୍ରଭୃତି ବ୍ରହ୍ମର୍ଷିବୃନ୍ଦ ବେଦ ରହସ୍ୟ ମନ୍ତ୍ର ଉଚ୍ଚାରଣ ପୂର୍ବକ ତାହାଙ୍କ ସ୍ତବ କରୁଥିଲେ ଏବଂ ସେହି କାଳରେ ଇନ୍ଦ୍ରଦ୍ୟୁମ୍ନାଦି ରାଜର୍ଷିଗଣ ତଥା ଦେବତାମାନଙ୍କ ମଧ୍ୟବର୍ତ୍ତୀ ବିମାନ ଅଧିରୂଢ଼ ସେହି ପ୍ରଜାନାଥ ବ୍ରହ୍ମାଙ୍କୁ ସ୍ତୁତିବାଦ କରୁଥିଲେ । ୪୭ ।

ଆଲୁଲୋକେ ଦେବଗଣୈର୍ଜୟଶବ୍ଦୈରଭିଷ୍ଟୁତଃ ।
ରମ୍ଭାଦିକାଭିର୍ବେଶ୍ୟାଭିର୍ନୃତ୍ୟତେ ସ୍ମ ସଦାଧିପମ୍ ।୪୮।
ହାହା ହୁହୁ ପ୍ରଭୃତିଭିର୍ଗୀୟମାନଶ୍ଚ ଗାୟନୈଃ ।
ସିଦ୍ଧ ବିଦ୍ୟାଧରଗଣୈଃ ସାଦରଞ୍ଚୋପବୀଣିତଃ ।୪୯।
କୃତାଞ୍ଜଳିପୁଟୈର୍ଦୂରାତ୍ ତପସ୍ୱିଭିରୁପାସିତଃ ।
ସାବିତ୍ରୀ-ଶାରଦେ ତସ୍ୟ ବାକ୍ପ୍ରବନ୍ଧୈ ର୍ବିଶଦ୍ରୁତୈଃ ।
ତୋଷମାପାଦୟନ୍ତ୍ୟୌ ଚ କୋଽନ୍ୟସ୍ତୁ ତୋଷଣେ କ୍ଷମଃ ।୫୦।
ଯେ ଚ ଗନ୍ଧର୍ବସିଦ୍ଧାଦ୍ୟା ନାରଦପ୍ରମୁଖା ଦ୍ୱିଜାଃ ।
ବେତ୍ରହସ୍ତାଃ ସବନସ୍ଥଂ ଦିବ୍ୟସୋପାନଦର୍ଶକାଃ ।୫୧।
ସମ୍ମର୍ଦଶ୍ଚ ମହାନାସୀଦ୍ଦେବାନାଂ ଦିବି ଗଚ୍ଛତାମ୍ ।
ନ କୋଽପି ଗଣ୍ୟତେ ଦେବଃ କୋ ବା କେନ ପଥା ବ୍ରଜେତ ।୫୨।
ଅହମ୍ପୂର୍ବିକୟା ତେଷାଂ ବ୍ରଜତାଂ ତ୍ରିଦିବୌକସାମ୍ ।
ସମ୍ମର୍ଦାଧିଶପ୍ୟୁଦେଷାଂ ବିଭ୍ରଂଶୋଽଭୂତ ସ୍ୱବାହନୈଃ ।୫୩।

---

ତାଙ୍କ ଗୃହ ଦ୍ୱାରରେ ଦେବତାମାନେ ଜୟଧ୍ୱନି ମଧ୍ୟ କରୁଥିଲେ । ରମ୍ଭାଦି ସ୍ୱର୍ଗୀୟ ବେଶ୍ୟାବୃନ୍ଦ ସଭପୁରେ ନୃତ୍ୟ କରୁଥିଲେ । ହାହା ହୁହୁ ପ୍ରଭୃତି ସଙ୍ଗୀତ ନିପୁଣ ଗନ୍ଧର୍ବଗଣ ସୁମଧୁର ସଙ୍ଗୀତ କରୁଥିଲେ । ସିଦ୍ଧ ଓ ବିଦ୍ୟାଧରଗଣ ସାଦରେ ମନୋହର ବୀଣା ବାଦନ କରୁଥିଲେ । ତପସ୍ୱୀଗଣ ଦୂରରୁ କୃତାଞ୍ଜଳି ପୂର୍ବରେ ଉପାସନା କରୁଥିଲେ । ଦେବୀ ସାବିତ୍ରୀ ଓ ସରସ୍ୱତୀ ବିଚିତ୍ର ବାକ୍ୟ ପ୍ରବନ୍ଧରେ ତାଙ୍କର ସନ୍ତୋଷ ଉତ୍ପାଦନ କରୁଥିଲେ । ତଦ୍ଭିନ୍ନ ତଦୀୟ ସନ୍ତୋଷ ସାଧନରେ ଅନ୍ୟ କିଏ ବା ସମର୍ଥ ହେବ ? ।୫୦। ହେ ଦ୍ୱିଜଗଣ ! ସେହି ସମୟରେ ନାରଦ ପ୍ରମୁଖ ଦେବର୍ଷି ଏବଂ ପ୍ରଧାନ ପ୍ରଧାନ ସିଦ୍ଧ-ଗନ୍ଧର୍ବଗଣ ବେତ୍ର-ଧାରଣ ପୂର୍ବକ ସବନପୁରେ ଦିବ୍ୟ ସୋପାନ ଶ୍ରେଣୀ ପ୍ରଦର୍ଶନ କରାଉଥିଲେ । ଏହି ସମୟରେ ଗଗନ ମାର୍ଗରେ ଦେବତା-ମାନଙ୍କର ସମବେତ ଗମନ ନିବନ୍ଧନ ପରମ ବ୍ୟାକୁଳତା ଉପସ୍ଥିତ ହେଲା । ସେତେବେଳେ କିଏ କେଉଁ ମାର୍ଗରେ ଯିବେ, ତହିଁର କିଛି ସ୍ଥିରତା ରହିଲା ନାହିଁ ।୫୨। କୌଣସି ଦେବତା ଅନ୍ୟ ଦେବତାଙ୍କୁ ଗଣନା କଲେ ନାହିଁ । ନିଖିଲ ଦେବବୃନ୍ଦ 'ଆଗ

ସ୍ରଷ୍ଟା ପାତା ଚ ସଂହର୍ତ୍ତା ଜଗତାଂ ଯୋ ଜଗନ୍ମୟଃ ।
ସାକ୍ଷାଦ୍ ବ୍ରଜତି ତତ୍ରୈଷାଂ ସୁରାଣାଂ ମହିମା କୁତଃ । ୫୪ ।
ତଂ ଦୃଷ୍ଟ୍ୱା ସାଧ୍ୱସାନ୍ନମ୍ରୋ ଭକ୍ତ୍ୟା ବଦ୍ଧାଞ୍ଜଳିର୍ନୃପଃ ।
ତୈସ୍ତୈର୍ଦେବୈର୍ଗାଲଦ୍ୱିଜେନ ନାରଦପ୍ରମୁଖେନ ଚ ।
ସହିତୋ ଧରଣୀଂ ପ୍ରାପ୍ୟାତ୍ ସାଷ୍ଟାଙ୍ଗଂ ପ୍ରାସ୍ତୁବନ୍ମୁହୁଃ । ୫୫ ।
ଉତ୍ଥାୟ ପରୟା ଭକ୍ତ୍ୟା ପ୍ରହୃଷ୍ଟେନାନ୍ତରାତ୍ମନା ।
ପୁଲକାଞ୍ଚିତସର୍ବାଙ୍ଗଃ ସ୍ୱଂ ମନ୍ୟାନଃ କୃତାର୍ଥକମ୍ । ୫୬ ।
ପୁରତୋ ଜଗଦୀଶସ୍ୟ ପଶ୍ୟନ୍ ଶୁଦ୍ଧଂ ପିତାମହମ୍ ।
କୃତାଞ୍ଜଳିପୁଟୋ ବିପ୍ରା ମମଜ୍ଜାନନ୍ଦସାଗରେ । ୫୭ ।
ଇତି ଶ୍ରୀସ୍କାନ୍ଦେ ଇନ୍ଦ୍ରଦ୍ୟୁମ୍ନସ୍ୟ ଭଗବତ୍ପ୍ରତିଷ୍ଠାପ୍ରୟୋଜନଂ
ନାମ ଷଡ୍ ବିଂଶୋଽଧ୍ୟାୟଃ । ୨୬ ।

---

ମୁଁ ଯିବି ଏହିପରି ବିବେଚନାରେ ଅଶାନ୍ତ ସଙ୍କୁଳ ଭାବାପନ୍ନ ହୋଇ ଗମନ କରିବାରୁ ନିଜ ନିଜ ଯାନବାହନ ବିଷୟକ ବିଭ୍ରାଟ ଉପସ୍ଥିତ ହେଲା । ଏପରି ହେବା ବିଚିତ୍ର ନୁହେଁ । କାରଣ ନିଖିଳ ଜଗତର ସୃଷ୍ଟି, ସ୍ଥିତି, ସଂହାର କର୍ତ୍ତା ଜଗନ୍ମୟ ସାକ୍ଷାତ୍ ଭଗବାନ୍ ଯେଉଁ ସ୍ଥାନକୁ ଗମନ କରିବେ, ଅନ୍ୟାନ୍ୟ ଦେବତାମାନଙ୍କ ମହିମା କିପରି ପ୍ରକାଶ ହେବ ? ନୃପବର ଇନ୍ଦ୍ରଦ୍ୟୁମ୍ନ ଭଗବାନ କମଳଯୋନିଙ୍କୁ ଏହିପ୍ରକାର ଉପସ୍ଥିତ ଦେଖି ସଭୟ ଓ ବିନମ୍ର ଭାବରେ ଭକ୍ତି ସହିତ ବଦ୍ଧାଞ୍ଜଳି ହୋଇ ନାରଦ ପ୍ରଭୃତି ମହର୍ଷିଗଣ, ସମାଗତ ସୁରଗଣ ଏବଂ ଗାଲ ରାଜାଙ୍କ ସହିତ ସାଷ୍ଟାଙ୍ଗ ଧରଣୀତଳେ ବିଲୁଣ୍ଠିତ ହୋଇ ବାରମ୍ବାର ସ୍ତବ କରିବାକୁ ଲାଗିଲେ । ୫୫ । ହେ ବିପ୍ରଗଣ ! ପରେ ସେହି ମହାତ୍ମା ଇନ୍ଦ୍ରଦ୍ୟୁମ୍ନ ଭକ୍ତି ସହକାରେ ହୃଷ୍ଟାନ୍ତଃକରଣ ହୋଇ ଗାତ୍ରୋତ୍ଥାନ ପୂର୍ବକ ନିଜକୁ କୃତାର୍ଥବୋଧ ଏବଂ ପୁଲକାଞ୍ଚିତ ଶରୀର ହେଲେ । ନିର୍ମଳ ଆତ୍ମା ଭଗବାନ୍ ପିତାମହଙ୍କୁ ନିରୀକ୍ଷଣ କରି ସେହି ଜଗଦୀଶ୍ୱରଙ୍କ ସମ୍ମୁଖ ଭାଗରେ କୃତାଞ୍ଜଳିପୁଟେ ଦଣ୍ଡାୟମାନ ହୋଇ ଆନନ୍ଦ ସାଗରରେ ନିମଗ୍ନ ହେଲେ । ୫୭ ।

॥ ଷଡ଼ ବିଂଶ ଅଧ୍ୟାୟ ସମାପ୍ତ ॥

—ଃ*ଃ—